# ସାର୍ ବାସୁଦେବ ସୁଢ଼ଳଦେବ

ଶ୍ରୀ ରାମଚନ୍ଦ୍ର ବ୍ରହ୍ମା



ଓଡ଼ିଶା ସାହିତ୍ୟ ଏକାଡେମୀ

# ସାର୍ ବାସୁଦେବ ସୁଢ଼ଳଦେବ

ଶ୍ରୀ ରାମଚନ୍ଦ୍ର ବ୍ରହ୍ମା



ଓଡ଼ିଶା ସାହିତ୍ୟ ଏକାଡେମୀ

ସାର୍ ବାସୁଦେବ ସୁଢ଼ଳଦେବ

ଲେଖକ :

ଶ୍ରୀ ରାମଚନ୍ଦ୍ର ବ୍ରହ୍ମା

ପ୍ରକାଶକ :

ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର - ୭୫୧୦୧୪

ମୁଦ୍ରଣ :

ଶ୍ରୀଅରବିନ୍ଦ ପ୍ରିଣ୍ଟିଂ ପ୍ରେସ୍

ରାଜାବଗିଚ୍ଚା, କଟକ-୯

ପ୍ରଥମ ପ୍ରକାଶ : ୧୯୯୩

ମୂଲ୍ୟ : ପଚିଶ ଟଙ୍କା

# SIR BASUDEVA SUDHALADEVA

*Written by* :

**Shri Ramachandra Brahma**

*Published by* :

**Orissa Sahitya Akademi**

Bhubaneswar-751014

Printed at :

**Sri Aurovindo Printing Press**

Rajabagicha, Cuttack-9

First Edition : 1993

**Price : Rupees Twenty-Five**

# ସୂଚୀପତ୍ର


ପୃଷ୍ଠାଙ୍କ

**ପ୍ରଥମ ପରିଚ୍ଛେଦ**

ବାମଣ୍ଡାର ରାଜନୈତିକ ପୃଷ୍ଠଭୂମି
ଓ ରାଜା ବାସୁଦେବ ସୁଢ଼ଳଦେବ ୧

**ଦ୍ୱିତୀୟ ପରିଚ୍ଛେଦ**

ପ୍ରଶାସକ ରାଜା ସାର୍ ବାସୁଦେବ ଓ ବାମଣ୍ଡା— ୩୫

**ତୃତୀୟ ପରିଚ୍ଛେଦ**

ବାମଣ୍ଡାରେ ଶିକ୍ଷା ଓ ସାହିତ୍ୟର ଭିତ୍ତିଭୂମି
ଓ ରାଜା ବାସୁଦେବ ୫୬

**ଚତୁର୍ଥ ପରିଚ୍ଛେଦ**

ସାହିତ୍ୟକ-ପଣ୍ଡିତ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ
କୃତ-ସମ୍ପଦର ସୂକ୍ଷ୍ମ ପର୍ଯ୍ୟାଲୋଚନା ୮୦

**ପଞ୍ଚମ ପରିଚ୍ଛେଦ**

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବ୍ୟକ୍ତିତ୍ୱ
ଓ ସାଧାରଣ ଘଟଣାବଳୀ ୧୨୪

**ଷଷ୍ଠ ପରିଚ୍ଛେଦ**

ସାର୍ ବାସୁଦେବ ସୁଢ଼ଳଦେବ K. C. I. E.—
ଏକ ଅନନ୍ୟସାଧାରଣ ପ୍ରତିଭା ୧୩୭

ପରିଶିଷ୍ଟ : ସହାୟକ ଗ୍ରନ୍ଥସୂଚୀ ୧୫୪




## ପ୍ରଥମ ପରିଚ୍ଛେଦ

# ବାମଣ୍ଡାର ରାଜନୈତିକ ପୃଷ୍ଠଭୂମି ଓ ରାଜା ବାସୁଦେବ ସୁଢ଼ଳଦେବ

### ବାମଣ୍ଡା ଗଡ଼ଜାତ ଓ ଗଙ୍ଗବଂଶ

ଏକଦା ଓଡ଼ିଶାରେ ଏକାଦଶ ଶତାବ୍ଦୀର ଶେଷଭାଗରେ ଚୋଳଗଙ୍ଗଦେବ ନାମକ ଜନୈକ ରାଜା ରାଜତ୍ୱ କରୁଥିଲେ । ପ୍ରଥମେ ଚୋଳବଂଶୀୟ ରାଜା ପ୍ରଥମ ରାଜେନ୍ଦ୍ର ଚୋଳ ସ୍ୱରାଜ୍ୟ ତ୍ୟାଗ କରି ବେଙ୍ଗୀକୁ ଆସି ଏକ ବୃହତ୍ତର ରାଜ୍ୟ ପ୍ରତିଷ୍ଠା କଲେ । ଚାଲୁକ୍ୟବଂଶୀୟ ଏକ ଦୌହିତ୍ର ପରବର୍ତ୍ତୀ କାଳରେ ଦ୍ୱିତୀୟ ରାଜେନ୍ଦ୍ର ଚୋଳ ନାମ ଗ୍ରହଣକରି ରାଜସିଂହାସନ ଆରୋହଣ କଲେ । କୋଲାହଳପୁରରୁ ସମାଗତ ଗଙ୍ଗବଂଶୀୟ ରାଜରାଜଦେବଙ୍କର ଦ୍ୱିତୀୟ ରାଜେନ୍ଦ୍ର ଚୋଳଙ୍କର କନ୍ୟା ରାଜସୁନ୍ଦରୀଙ୍କ ସହିତ ପରିଣୟ ସମ୍ବନ୍ଧ ହେଲା । ତାଙ୍କର ପୁତ୍ର ଚୋଳଗଙ୍ଗଦେବ ପିତୃ-ମାତୃ ବଂଶର ନାମ ଧାରଣ କରି କେଶରୀବଂଶର ଶେଷରାଜା ସୁବର୍ଣ୍ଣକେଶରୀଙ୍କ ସଙ୍ଗେ ଯୁଦ୍ଧ କରି ଓଡ଼ିଶା ସିଂହାସନ ଅଧିକାର କଲେ । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଓଡ଼ିଶା ଓ ମଧ୍ୟପ୍ରଦେଶର ଜଳବାୟୁ, କୃଷିକ୍ଷେତ୍ର, ବାଣିଜ୍ୟକାରବାର ତଥା ଅରଣ୍ୟ ସମ୍ପଦ ସମଧର୍ମାକ୍ରାନ୍ତ । ତେଣୁ ଗଙ୍ଗବଂଶର କେତେକ ଶାଖା-ପ୍ରଶାଖା ଓଡ଼ିଶାର ଓ ମଧ୍ୟପ୍ରଦେଶର ପୂର୍ବୋତ୍ତର ଅଞ୍ଚଳରେ ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠା କରି ରାଜତ୍ୱ କଲେ । ଏଗୁଡ଼ିକ ସ୍ୱାଧୀନ ରାଜ୍ୟ ଥିଲେ ।

୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେଲା । ଫଳତଃ ପୂର୍ବର କେତେକ ସ୍ୱାଧୀନ ଦେଶୀୟ ରାଜ୍ୟ ଗଡ଼ଜାତ ରୂପେ ପରିଚିତ ହେଲେ । ଏହି ସମୟରେ ଏହା ମୋଗଲବନ୍ଦୀ ଓ ଗଡ଼ଜାତ ଦୁଇ ଭାଗରେ ବିଭକ୍ତ ହେଲା । ଓଡ଼ିଶାର ଗଡ଼ଜାତ ମଧ୍ୟପ୍ରଦେଶର ଉତ୍ତର-ପୂର୍ବାଞ୍ଚଳ ପର୍ଯ୍ୟନ୍ତ ପ୍ରସାରିତ ଥିଲା; ଯାହାକି ଛତିଶଗଡ଼ ନାମରେ ଅଭିହିତ । ଏହା ବ୍ୟତୀତ ଓଡ଼ିଶାରେ ୨୬ଟି ଦେଶୀୟ ରାଜ୍ୟ ଥିଲା; ସେମାନଙ୍କ ମଧ୍ୟରେ କେତେକ ସାମନ୍ତ ରାଜ୍ୟ (Feudatory State) ଓ କେତେକ କରଦରାଜ୍ୟ (Tributory)

ରୂପେ ସ୍ୱୀକୃତ ହେଉଥିଲେ । ସେହି ଗଙ୍ଗବଂଶର ଏକ ଶାଖା ପାଟଣାରେ ରାଜତ୍ୱ କଲେ । ଆବାହନ (ରାଜକବି ସଚ୍ଚିଦାନନ୍ଦ କର୍ତ୍ତୃକ)ରୁ ଜଣାଯାଏ ଯେ, "ଏହି ଗାଙ୍ଗେୟମାନେ ବହୁ ଶାଖାରେ ବିଭକ୍ତ ହୋଇ କଳାହାଣ୍ଡି, ପାଟଣା, କାଙ୍କେର ଏବଂ ଧମ୍ତରୀର ଅଞ୍ଚଳର କେତେକ ସ୍ଥାନରେ ରାଜତ୍ୱ କରୁଥିଲେ । × × × । ଚୋଡ଼ଗଙ୍ଗଦେବ ଯେଉଁ କାଳରେ ଓଡ଼ିଶାକୁ ଆସି ବିଜୟପତାକା ଉତ୍ତୋଳନ କଲେ, ସେହି ସମୟରେ ତାହାଙ୍କର ଭ୍ରାତା ଦାକ୍ଷିଣାତ୍ୟରେ ରାଜତ୍ୱ କରୁଥିଲେ । ବଡ଼ଖେମଣ୍ଡୀ ମହାରାଜାଙ୍କ ବଂଶ ତାଲିକାରୁ ଜଣାଯାଏ ଯେ ନୀଳକଣ୍ଠ, ଅନଙ୍ଗଭୀମଦେବ କଳାହାଣ୍ଡି ପ୍ରଭୃତି ରାଜ୍ୟ ଜୟ କରି କଳାହାଣ୍ଡିରେ ମାଣିକେଶ୍ୱରୀ ମନ୍ଦିର ସ୍ଥାପନ ଓ ଗୋଟିଏ ବୃହତ୍ ପୁଷ୍କରିଣୀ ଖନନ କରାଇଥିଲେ । ତାହାଙ୍କର ସନ୍ତାନ ପ୍ରଭୃତି ନ ଥିବାରୁ ପାଟଣାର ପାଟକେଶ୍ୱରୀ ଦେବୀଙ୍କୁ ଉପାସନା କରି 'କଳଶେଖର' ନାମଧେୟ ପୁତ୍ରକୁ ଅପର କେତୋଟି ପୁତ୍ର ସହ ଲାଭ କରିଥିଲେ । × × × । କଳାହାଣ୍ଡିର ଗାଙ୍ଗେୟ ରାଜା ଏକ ଜଣ ନାଗବଂଶୀୟ ବ୍ୟକ୍ତିଙ୍କୁ ଜାମାତା ଭାବରେ ଗ୍ରହଣ କରି ତାହାଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ତୀର୍ଥାଟନ ନିମନ୍ତେ ଗମନ କଲେ । ପ୍ରତ୍ୟାବୃତ୍ତ ହେବା କାଳେ ତାହାଙ୍କର ଉକ୍ତ ଜାମାତା ତାଙ୍କୁ ରାଜ୍ୟରେ ପ୍ରବେଶ କରିବାକୁ ନ ଦେଇ ନିରାଶ୍ରୟ ଅବସ୍ଥାପନ୍ନ ଉକ୍ତ ରାଜାଙ୍କୁ ତଡ଼ି ଦେଇଥିଲେ । × × × । ଯେଉଁ ରାଜା ପାଟନାରେ ରାଜତ୍ୱ କରୁଥିଲେ ତାଙ୍କର ବଂଶାନୁକ୍ରମେ ୫/୬ ଜଣ ରାଜାଙ୍କ ପରେ ହଟ୍ଟହମୀରଦେବଙ୍କ କାଳରେ ରମାଇଦେବ ନାମକ ଜନୈକ ଚୌହାନବଂଶୀୟ ରାଜା ତାଙ୍କୁ ପରାସ୍ତ କରି ନିହତ କରିଥିଲେ । ଉକ୍ତ ହଟ୍ଟହମୀରଦେବଙ୍କ ପୁତ୍ର ସରଯୁଦେବ ବାମଣ୍ଡା ରାଜବଂଶର ସ୍ଥାପନକର୍ତ୍ତା ଅଟନ୍ତି ।"

ରମାଇଦେବ ହଟ୍ଟହମୀରଦେବଙ୍କୁ ଯୁଦ୍ଧରେ ପରାସ୍ତ ଓ ନିହତ କରିବା ପରେ ବାମଣ୍ଡାର କଟଙ୍ଗପାଣି ଗ୍ରାମର ସୁନା ନାମଧେୟ କନ୍ଧ ଓ କୈଳପଦର ଗ୍ରାମର ଜଣ୍ଟାର ନାମଧେୟ ଭୂୟାଁ ପାଟଣାରୁ ତାଙ୍କ ଶିଶୁପୁତ୍ରଙ୍କୁ ଆଣି ଏହି ଜିଲ୍ଲା ଅନ୍ତର୍ଗତ ଟିକଲିପଡ଼ା ଗ୍ରାମସ୍ଥିତ କାଣ୍ଡସର ନାମକ ମୁହାଣରେ ଶରଗଛ ମୂଳରେ ଅଭିଷେକୋତ୍ସବ ପାଳନ କରିଥିବାରୁ ତାଙ୍କର ନାମ ସରଯୁଦେବ ହେଲା । ଅଭିଷେକ ପରେ ସରଯୁଦେବଙ୍କ ରାଜଧାନୀ ପ୍ରଥମେ ବାମଣ୍ଡା ଗ୍ରାମରେ ଥିବାରୁ ସେ ଗ୍ରାମ ବାମଣ୍ଡାଗଡ଼ ଓ ଶାସିତ ଭୂଖଣ୍ଡ ବାମଣ୍ଡା ରାଜ୍ୟ ରୂପେ ଅଭିହିତ ହେଲା । ସରଯୁଦେବ ଉକ୍ତ କନ୍ଧ ଓ ଭୂୟାଁଙ୍କୁ ପାଟଣା ପଠାଇ ତାଙ୍କର କୁଳପୁରୋହିତ ଦେବାନନ୍ଦ ମହାପାତ୍ରଙ୍କୁ ପାଟଣାରୁ ଅଣାଇ କରବ (କୁଚିଣ୍ଡା ଅନ୍ତର୍ଗତ) ଗ୍ରାମ ପ୍ରଦାନ କରି ପୌରୋହିତ୍ୟରେ ନିଯୁକ୍ତ କଲେ ।

ଏହାଙ୍କ ପରେ ୧୯୪୮ ଜାନୁୟାରୀ ପର୍ଯ୍ୟନ୍ତ (କ୍ଷମତା ହସ୍ତାନ୍ତର) ଏହି ଗଙ୍ଗବଂଶର ୨୯ ଜଣ ରାଜା ରାଜତ୍ୱ କରିଛନ୍ତି ଯଥା :—

| | | | | | |
|---|---|---|---|---|---|
| ୨ | ରାଜା | ରାଜନାରାୟଣ ଦେବ | ୩ | ରାଜା | ଜଗନ୍ନାଥ ଦେବ |
| ୪ | ,, | ଗଙ୍ଗାଧର ଦେବ | ୫ | ,, | ଜଗଜ୍ୟୋତି ତ୍ରିଭୁବନ ଦେବ |
| ୬ | ,, | ରୁଦ୍ରନାରାୟଣ ଦେବ | ୭ | ,, | କାନଫୋଡ଼ା ସୁଢ଼ଳଦେବ |
| ୮ | ,, | ରଘୁନାଥ ଦେବ | ୯ | ,, | କସ୍ତୁରୀ ଦେବ |
| ୧୦ | ,, | ରାମଚନ୍ଦ୍ର ଦେବ | ୧୧ | ,, | ଦୁହ୍ଲା ଦେବ |
| ୧୨ | ,, | ମୁକ୍ତି ଦେବ | ୧୩ | ,, | ବିଶ୍ୱନାଥ ଦେବ |
| ୧୪ | ,, | ସଦାନନ୍ଦ ଦେବ | ୧୫ | ,, | ବିକ୍ରମ ଦେବ |
| ୧୬ | ,, | ରଘୁନାଥ ଦେବ | ୧୭ | ,, | ବିଭୂତି ଦେବ |
| ୧୮ | ,, | ଭାଗୀରଥି ଦେବ | ୧୯ | ,, | ହାଡ଼ୁ ଦେବ |
| ୨୦ | ,, | ଚନ୍ଦ୍ରଶେଖର ଦେବ | ୨୧ | ,, | ପ୍ରତାପରୁଦ୍ର ଦେବ |
| ୨୨ | ,, | ସର୍ବେଶ୍ୱର ଦେବ | ୨୩ | ,, | ଅର୍ଜୁନ ଦେବ |
| ୨୪ | ,, | ବାଲୁଙ୍କା ବୃଷଭ ଦେବ | ୨୫ | ,, | ଖଗେଶ୍ୱର ଦେବ |
| ୨୬ | ,, | ବ୍ରଜସୁନ୍ଦର ତ୍ରିଭୁବନଦେବ | ୨୭ | ,, | ବାସୁଦେବ ସୁଢ଼ଳ ଦେବ |
| ୨୮ | ,, | ସଚ୍ଚିଦାନନ୍ଦ ତ୍ରିଭୁବନଦେବ | ୨୯ | ,, | ଦିବ୍ୟଶଙ୍କର ସୁଢ଼ଳ ଦେବ |
| ୩୦ | ,, | ଭାନୁଗଙ୍ଗ ତ୍ରିଭୁବନ ଦେବ | | | |

ବାମଣ୍ଡା ଗଙ୍ଗବଂଶର ୨୭ତମ ରାଜା ସାର୍ ବାସୁଦେବ ସୁଢ଼ଳ ଦେବ। ସରଯୁଦେବଙ୍କଠାରୁ ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବଙ୍କ ପର୍ଯ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଶେଷ କିଛି ରାଜନୈତିକ ତଥା ଐତିହାସିକ ବିବରଣୀ ମିଳେନାହିଁ ଅର୍ଥାତ୍ ବାମଣ୍ଡାର ଅର୍ଥନୈତିକ, ସାଂସ୍କୃତିକ ତଥା ସାମାଜିକ ଚିତ୍ରର ସ୍ପଷ୍ଟ ଆଭାସ ରାଜା ବାସୁଦେବ ସୁଢ଼ଳ ଦେବଙ୍କ ରାଜତ୍ୱକାଳରୁ ହିଁ ମିଳିଥାଏ।

ବାମଣ୍ଡା ନାମକରଣର ଏକ ସୂଚନା ପଞ୍ଚସଖା କବି ବଳରାମଦାସଙ୍କ (୧୫୦୪-୬୨) ବିରଚିତ ଜଗମୋହନ ରାମାୟଣରୁ ମିଳିଥାଏ। ରାମଚନ୍ଦ୍ରଙ୍କ ବାନରସେନା ପ୍ରବେଶ ପ୍ରସଙ୍ଗରେ ଉଲ୍ଲେଖ ଅଛି।

"ବଣା ହୋଇଯାଇ ଯେଣୁ ରହିଲେକ ଥାଟ
ବଣାହିଁ ନାମରେ ସେହୁ ହୋଇଲାକ ରାଷ୍ଟ୍ର।
ବାମ ଅଡ଼େ ଯାଇ ତହୁଁ ବାଟ ନ ପାଇଲେ
'ବାମଡ଼ା' ବୋଲିଣ ସେ ତହିଁର ନାମ ଦେଲେ।"

ଏହି ବାମଣ୍ଡା କାଳକ୍ରମେ ବାମଣ୍ଡା ନାମରେ ନାମିତ । ଏହା ଘନ ଅରଣ୍ୟାନୀ ପରିବେଷ୍ଟିତ ହୋଇଥିଲା । ଅଖୋଜ ବାମଣ୍ଡା ତଥା ଅଖୋଜ ବାମଣ୍ଡା' ନାମରେ ବହୁଦିନ ପର୍ଯ୍ୟନ୍ତ ପରିଚିତ ଥିଲା ।

ଏହି ବାମଣ୍ଡା ଗଙ୍ଗବଂଶର ପଞ୍ଚମ ରାଜା ଜଗଜ୍ଜ୍ୟୋତି ଦେବ ତ୍ରିଭୁବନ ଆଖ୍ୟା ଧାରଣ କରି ରାଜତ୍ୱ କଲେ । ଷଷ୍ଠ ରାଜା ରୁଦ୍ରନାରାୟଣ ଦେବ ସମ୍ବଲପୁର ଅନ୍ତର୍ଗତ ଜୟପୁରର ରାଜା ବିଶ୍ୱନାଥ ଦେବଙ୍କୁ ପରାସ୍ତ କରି ଭୂଖଣ୍ଡ ଅଧିକାର କଲେ । ସେ ବ୍ରାହ୍ମଣ ପୁରୋହିତଙ୍କର ସଂସ୍କାର ବିଧାନ କଲେ । କନୌଜରୁ ତ୍ରିଲୋଚନ ଚୌବେ ନାମକ ଜନୈକ ବ୍ରାହ୍ମଣ ଆଣି କେନ୍ଦୁବେରଣୀ ଓ ଝଣ୍ଡିବନ୍ଧ ଗ୍ରାମ ଦାନ କଲେ । ସପ୍ତମ ରାଜା ସୁଢ଼ଳଦେବ ଆଖ୍ୟା ଧାରଣ କରି କାନଫୋଡ଼ା ସୁଢ଼ଳଦେବ ନାମରେ ପରିଚିତ ହୋଇ ରାଜତ୍ୱ କଲେ । ଅଷ୍ଟମ ରାଜା ରଘୁନାଥ ଦେବ ସୁରୁଡ଼ା ଗ୍ରାମକୁ ରାଜଧାନୀ କଲେ । ମାତ୍ର ଦଶମ ରାଜା ରାମଚନ୍ଦ୍ର ଦେବ ସୁରୁଡ଼ାରୁ ରାଜଧାନୀ ସ୍ଥାନାନ୍ତର କରି ଦେଓଁ ନାମକ ଗ୍ରାମକୁ ରାଜଧାନୀ କଲେ । ସେହି ଦେଓଁ କାଳକ୍ରମେ ଦେବଦୁର୍ଗ ବା ଦେବଗଡ଼ ନାମରେ ପରିଚିତ ହେଲା । ଏକାଦଶ ରାଜା ଦୁର୍ଲ୍ଲଭ ଦେବ ବଣାଇ ରାଜା ଜଗବନ୍ଧୁ ଦେବଙ୍କ ସଙ୍ଗେ ଯୁଦ୍ଧ କରି ତାଙ୍କୁ ପରାସ୍ତ କଲେ ଓ ତାଙ୍କ କନ୍ୟାର ପାଣିଗ୍ରହଣ କଲେ ।

ବାମଣ୍ଡାର ଦ୍ୱାଦଶ ରାଜା ମୁକ୍ତିଦେବ ରେଢ଼ାଖୋଲ ରାଜା ଭଗବାନ ଜେନାମଣିଙ୍କ ସଙ୍ଗେ ଯୁଦ୍ଧ କରି ପରାସ୍ତ କଲେ ଓ ବର୍ଷକରେ ଦୁଇଥର ବାମଣ୍ଡା ଆସି ତାଙ୍କୁ ସାକ୍ଷାତ କରିବାର ସର୍ତ୍ତ କଲେ । ତା'ପରେ ସେ ପାଳଲହଡ଼ାର ରାଜା ରଘୁନାଥ ପାଲଙ୍କ ସଙ୍ଗେ ଯୁଦ୍ଧ କରି ତାଙ୍କୁ ପରାସ୍ତ କଲେ ଓ ବାମଣ୍ଡାରାଜାଙ୍କୁ କନ୍ୟାଦାନ ପୂର୍ବକ ମିତ୍ରରାଜା ରୂପେ ଗୃହୀତ ହେଲେ ।

ଚତୁର୍ଦ୍ଦଶ ରାଜା ସଦାନନ୍ଦଦେବଙ୍କ ରାଜତ୍ୱକାଳରେ ହରିଶରଣ ଦ୍ୱିବେଦୀ ଓ ହରିହର ଦାଶ ଦୁଇଜଣ ବ୍ରାହ୍ମଣଙ୍କୁ କଣ୍ଡାଗୋଲା ବ୍ରାହ୍ମଣଶାସନର ମୋକଦ୍ଦମ ରୂପେ ଦାୟିତ୍ୱ ଅର୍ପଣ କଲେ ।

ଏକୋନବିଂଶତିତମ ରାଜା ହାଡ଼ୁଦେବ ଜମିଦାରମାନଙ୍କ ଉପରେ ପ୍ରବଳ ଅତ୍ୟାଚାର କରିବାରୁ ଲୁଠା ଠାକୁର ଓ ବରଜୁ ଦେହୁରୀ ନାମକ ଦୁଇଜଣ ଜମିଦାର ତାଙ୍କୁ ରାଜ୍ୟଚ୍ୟୁତ କରି ଭ୍ରାତୃଷ୍ପୁତ୍ର ଚନ୍ଦ୍ରଶେଖର ଦେବଙ୍କୁ ରାଜା କଲେ । ହାଡ଼ୁଦେବ କୁଲେଇଗଡ଼ ନାମକ ସ୍ଥାନରେ ରାଜତ୍ୱ କଲେ । ଏକବିଂଶତିତମ ରାଜା ପ୍ରତାପରୁଦ୍ର ଦେବ ପୁରାତନ ଦୁର୍ଗ ଦେବଗଡ଼ରେ

ଜଗନ୍ନାଥ ମନ୍ଦିର ନିର୍ମାଣ ଓ ଦେବତା ପ୍ରତିଷ୍ଠା କଲେ । ଏହି ବଂଶର ଅଷ୍ଟମ ରାଜା ରଘୁନାଥ ଦେବଙ୍କ ସମୟରୁ ଯେଉଁ ମରହଟ୍ଟା ଶକ୍ତି ଶାସନାଧୀନ ଥିଲ, ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ ୧୮୦୨ ଖ୍ରୀ:ରେ ସେହି ମରହଟ୍ଟା ଶାସନର ଅବସାନ ଘଟିଲ । East India Companyର Governor General Marquis of Welsleyଙ୍କ ନିର୍ଦ୍ଦେଶକ୍ରମେ ଓଡ଼ିଶା ଓ ଛତିଶଗଡ଼ର ସ୍ୱାଧୀନ ରାଜାମାନେ ସନ୍ଧିସୂତ୍ର ଅନୁସାରେ ସାମନ୍ତରାଜା ରୂପେ ସ୍ୱୀକାର ପୂର୍ବକ ସନନ୍ଦ ଦାନ କଲେ । ଏହି ସୂତ୍ରରେ ପ୍ରତାପରୁଦ୍ରଦେବ ବାର୍ଷିକ ୫୧୦୦/- କର (Tribute) ଦାନ କରିବା ପାଇଁ ସମ୍ମତ ହେଲେ । ରାଜା ପ୍ରତାପରୁଦ୍ରଙ୍କ ତିରୋଧାନରେ ରାଣୀ ଚନ୍ଦ୍ରକୁମାରୀ ରାଜାଙ୍କ ଅନୁଗମନ କଲେ । ଏହି ସମୟରେ ଭାରତର ଉତ୍ତର-ପଶ୍ଚିମ ପଟେ ସତୀଦାହ ପ୍ରଥା ପ୍ରବଳ ଥିଲ । ତେଣୁ ପୁରାତନ ଦେବଗଡ଼ (ପୁରୁଣାଗଡ଼)ର ଅନତିଦୂରରେ ପ୍ରବାହିତ ନଦୀତଟରେ ଚିତାଗ୍ନିରେ ଝାସ ଦେଲେ । ତାହା ସତୀଘାଟ ନାମରେ ନାମିତ ହେଲ । ଯେଉଁ ସ୍ଥାନରେ ଚିତାଗ୍ନି ପ୍ରତିଷ୍ଠିତ ହେଲା, ତାହା କୋରଡକୋଟ ନାମରେ ଓ ତନ୍ନିକଟରେ ଥିବା କୁଣ୍ଡ ସତୀକୁଣ୍ଡ ନାମରେ ଅଭିହିତ ।

ରେଢ଼ାଖୋଲର ଜନୈକ ଗୁପ୍ତଚର ଆସି ତାଙ୍କ ପୁତ୍ର ସର୍ବେଶ୍ୱର ଦେବଙ୍କୁ ହତ୍ୟା କଲ ।

ଚତୁର୍ବିଂଶତିତମ ରାଜା ବାଲୁଙ୍କା ବୃଷଭଦେବଙ୍କ ଛଅପୁତ୍ର ଯଥାକ୍ରମେ ଖଗେଶ୍ୱର, ବ୍ରଜସୁନ୍ଦର, ହରିହର, ଦେବଦୁର୍ଲଭ, ନନ୍ଦକିଶୋର ଓ ଗୋବିନ୍ଦରାୟ । ରାଜା ଖଗେଶ୍ୱର ଦେବ ମାତ୍ର ୧୮ ଦିନ ରାଜତ୍ୱ କରି ସମ୍ବଲପୁରରେ ପ୍ରାଣତ୍ୟାଗ କରିବାରୁ ଦ୍ୱିତୀୟଭ୍ରାତା ବ୍ରଜସୁନ୍ଦର ତ୍ରିଭୁବନ ଦେବ ସିଂହାସନ ଆରୋହଣ କଲେ ।

ରାଜା ବ୍ରଜସୁନ୍ଦରଦେବଙ୍କ ରାଜତ୍ୱ ବିଘ୍ନ ଓ ପ୍ରମାଦପୂର୍ଣ୍ଣ ଥିଲ । ଊନବିଂଶ ଶତକର ମଧ୍ୟଭାଗରେ ବଙ୍ଗ, ବିହାର ଓ ଓଡ଼ିଶାରେ ସୁଶାସନ ପ୍ରତିଷ୍ଠିତ ଥିଲେ ହେଁ ଦକ୍ଷିଣ-ପଶ୍ଚିମାଞ୍ଚଳରେ ବିଦ୍ରୋହ ଲାଗି ରହିଥିଲ । ସେହି ବିଦ୍ରୋହ ଦମନ ନିମିତ୍ତ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ବହୁ କଷ୍ଟସ୍ୱୀକାର କରିବାକୁ ପଡ଼ିଲ । ବ୍ରଜସୁନ୍ଦରଦେବଙ୍କ ସମୟରେ ଅନୁଗୋଳରେ ଯେଉଁ ବିଦ୍ରୋହ ସୃଷ୍ଟି ହେଲା, ତାହା ଦମନ କରିବା ପାଇଁ ସରକାରଙ୍କୁ ସେ ସାହାଯ୍ୟ କଲେ । ଫଳତଃ ସରକାର ସେଥିରେ ଜୟଯୁକ୍ତ ହେଲେ । କୃତଜ୍ଞତାର ନିଦର୍ଶନ ସ୍ୱରୂପ ରାଜା ବ୍ରଜସୁନ୍ଦରଙ୍କୁ ଏକ ପିତ୍ତଳ କମାଣ, ଗୋଟାଏ ହସ୍ତୀ ଓ 'ରାଜବାହାଦୁର' ଉପାଧି ପ୍ରଦାନ କରାଗଲ ।

ରାଜା ବ୍ରଜସୁନ୍ଦର ଦେବଙ୍କ ରାଜତ୍ୱକାଳରେ ଆଉ ଏକ ବିଶିଷ୍ଟ ଘଟଣା— ସମ୍ବଲପୁର ରାଜସିଂହାସନ ଆରୋହଣ ନିମିତ୍ତ ବୀର ସୁରେନ୍ଦ୍ର ସାଏଙ୍କ ଆକ୍ରମଣ । ବ୍ରଜସୁନ୍ଦର ଦେବ ତାଙ୍କ ସଙ୍ଗେ ଯୁଦ୍ଧ ପାଇଁ ଅଗ୍ରସର ହେବା ସମୟରେ ସେ କପଟତା ପ୍ରକାଶ କରି ବ୍ରଜସୁନ୍ଦରଙ୍କୁ ସ୍ୱଶିବିରରେ ଆବଦ୍ଧ କରି ରଖିଥିଲେ । ବ୍ରିଟିଶ ସରକାର ଏ ଖବର ପାଇ ସୈନ୍ୟ ପ୍ରେରଣ କଲେ । ମାତ୍ର ବ୍ରଜସୁନ୍ଦର ଦେବ ଶିବିରରୁ ପଳାୟନ କରି ସମ୍ବଲପୁର ସୈନ୍ୟ ତଥା ସରକାରଙ୍କ ପକ୍ଷେ ସହାୟତା କଲେ ।

ତାଙ୍କ ଶାସନ କାଳରେ କେତେକ ବ୍ୟକ୍ତି ଷଡ଼ଯନ୍ତ୍ର କରି ବିଦ୍ରୋହ ଘୋଷଣା କଲେ । ମାତ୍ର ରାଜା ବ୍ରଜସୁନ୍ଦର ଦେବ ବିଚକ୍ଷଣ ବୁଦ୍ଧି କୌଶଳରେ ଏ ସମସ୍ତ ଦମନ କଲେ । ସେ ପ୍ରତାପରୁଦ୍ରଙ୍କ ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିର ଓ ଦେବମୂର୍ତ୍ତିର ସଂସ୍କାରବିଧାନ କଲେ । ସେ ନିଜେ ମଧ୍ୟ ଦେବଗଡ଼ର ବିଭିନ୍ନ ସ୍ଥାନରେ ଦେବମନ୍ଦିର ନିର୍ମାଣ ତଥା ଦେବମୂର୍ତ୍ତି ପ୍ରତିଷ୍ଠା କରି ଅଶେଷ ସମ୍ମାନ ଲାଭ କଲେ । ବ୍ରଜବିହାରୀପୁରର ଗୋକର୍ଣ୍ଣେଶ୍ୱର ମନ୍ଦିର ତାହାର ଜ୍ୱଳନ୍ତ ନିଦର୍ଶନ । ଏତଦ୍‌ବ୍ୟତୀତ ପୁରୁଣାଗଡ଼ର ପାପହରଣ କୁଣ୍ଡ ଓ ପ୍ରଧାନପାଟ ନିକଟରେ ଗିରିଗୋବର୍ଦ୍ଧନ ମନ୍ଦିର ତାଙ୍କର ଗଭୀର ଦେବଭକ୍ତି ତଥା ଧର୍ମଭାବର ଶ୍ରେଷ୍ଠ ପରିଚାୟକ । ସଂସ୍କୃତ ବିଦ୍ୟାଳୟ ତାଙ୍କର ଏକ ବିରାଟ କୀର୍ତ୍ତି । ରାଜା ବ୍ରଜସୁନ୍ଦର ଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାରେ ବିବିଧ ଉନ୍ନତିର ସୂତ୍ରପାତ ହେଲା । ସେ ଯଦିଓ ନୂତନ ପଦ୍ଧତିରେ ସଦନୁଷ୍ଠାନ ନିର୍ମାଣର ସୁଯୋଗ ପାଇପାରି ନ ଥିଲେ ତଥାପି ୧୮୬୮ ଖ୍ରୀ: ପର୍ଯ୍ୟନ୍ତ ସୁଖଶାନ୍ତିରେ ରାଜତ୍ୱ ସମ୍ପାଦନ କରି ବିପୁଳ ଯଶର ଅଧିକାରୀ ହୋଇପାରି ଥିଲେ । ବ୍ରିଟିଶ ସରକାର ତାଙ୍କର କ୍ରିୟାକଳାପରେ ସନ୍ତୁଷ୍ଟ ହୋଇ ନୂତନ ସନନ୍ଦରେ Feudatory Chief ବୋଲି ସ୍ୱୀକାର ପୂର୍ବକ ଅଧିକ କ୍ଷମତା ପ୍ରଦାନ କଲେ । କହିବା ବାହୁଲ୍ୟ ଯେ, ଷଡ଼ବିଂଶତିତମ ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବ ବାମଣ୍ଡାର ସର୍ବବିଧ ଉନ୍ନତିର ଯେଉଁ ମଶାଲ ଜାଳିଦେଇ ଗଲେ, ସପ୍ତବିଂଶତିତମ ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ରାଜତ୍ୱ କାଳରେ ତାହା ପ୍ରଖର ବେଗରେ ପ୍ରଜ୍ୱଳିତ ହୋଇ ନୂତନ ଉଜ୍ଜ୍ୱଳ ଆଲୋକରେ ଜଗତକୁ ଉଦ୍ଭାସିତ କଲା । ତେଣୁ ପଣ୍ଡିତ ଦାମୋଦର ମିଶ୍ର ବିଦ୍ୟାଳଙ୍କାରଙ୍କ ଭାଷାରେ—

"କେନ୍ଦୁ ଜନ୍ମେ ମନେ ଦୁଃଖ ଘୋରତର
କାହିଁ ଗଲେ ଆହା ! ଶ୍ରୀ ବ୍ରଜସୁନ୍ଦର ।"

## ରାଜା ବାସୁଦେବ ସୁଢ଼ଳ ଦେବ ଓ ବାମଣ୍ଡା

୧୮୫୦ ମସିହା ମେ ମାସ ୧୭ ତାରିଖ (ବୈଶାଖ) ଦିନ ବାମଣ୍ଡା ରାଜପରିବାରରେ ରାଜା ବ୍ରଜସୁନ୍ଦର ଦେବଙ୍କ କନିଷ୍ଠ ଭ୍ରାତା ହରିହର ଦେବଙ୍କ ଔରସରୁ ବାସୁଦେବ ଆବିର୍ଭୂତ ହେଲେ । ମାତା ବିଜୟକୁମାରୀଙ୍କ ସନ୍ତାନ ଲାଳନପାଳନ ଦାୟିତ୍ୱରେ ଚନ୍ଦ୍ରକଳା ସଦୃଶ ତେଜ ବିକିରଣ କଲେ । ଯେହେତୁ ରାଜା ବ୍ରଜସୁନ୍ଦର ଦେବଙ୍କ ପୁତ୍ରସନ୍ତାନ ନ ଥିଲେ, ତେଣୁ ବଂଶର ଜ୍ୟେଷ୍ଠପୁତ୍ର ବାସୁଦେବଙ୍କୁ ଉପଯୁକ୍ତ ଉତ୍ତରାଧିକାରୀ ଭାବେ ଗ୍ରହଣ କଲେ । ତଦାନୀନ୍ତନ ସମ୍ବଲପୁରର ରାଜପ୍ରତିନିଧି ( Political Agent )ଙ୍କ ନିକଟରୁ ଏ ସମ୍ବନ୍ଧରେ ପତ୍ରାଳାପ କଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ୫ ବର୍ଷ ।

ସେ ସମୟରେ ପାଠଶାଳାରେ ଗ୍ରାମ୍ୟଶିକ୍ଷା ପଦ୍ଧତି ପ୍ରଚଳିତ ଥିଲା । ତେଣୁ ଖଡ଼ିପାଠ ସଙ୍ଗେ ଖେଳ, ନାନାବିଧ କୁସ୍ତି କସରତ୍ ସମ୍ପର୍କୀୟ ଶିକ୍ଷାଲାଭ କଲେ । ଏହି କ୍ରମରେ ଆଠବର୍ଷ ଅତିକ୍ରାନ୍ତ ହେଲା; ନବବର୍ଷରେ କ୍ଷତ୍ରିୟୋଚିତ ଉପନୟନ ସଂସ୍କାର ହେଲା । ରାଜକୁମାର ବାସୁଦେବଙ୍କ ଅସାଧାରଣ ପ୍ରତିଭାର ପରିଚୟ ତାଙ୍କ ବାଲ୍ୟକାଳରୁ ହିଁ ପ୍ରକଟିତ ହୋଇଥିଲା । ଉପନୟନ ପରେ ବ୍ରଜସୁନ୍ଦର ଦେବ ତାଙ୍କର ଉପଯୁକ୍ତ ସଂସ୍କୃତ ଓ ବ୍ୟାକରଣ ଶିକ୍ଷା ନିମନ୍ତେ ପଣ୍ଡିତ ଆନନ୍ଦ ବ୍ରହ୍ମାଙ୍କୁ ନିଯୁକ୍ତ କଲେ । ତାପରେ ପଣ୍ଡିତ ପୁରୁଷୋତ୍ତମ ତର୍କାଲଙ୍କାର ଓ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ବିଭିନ୍ନ କାବ୍ୟ, ନାଟକ, ଅଲଙ୍କାର, ନ୍ୟାୟ; ବେଦ ବେଦାନ୍ତ ପ୍ରଭୃତି ଶିକ୍ଷାଦାନ କଲେ । ପରେ ପରେ ଆତ୍ମଚେଷ୍ଟା ବଳରେ ପରାଶର ସଂହିତା, ଭୃଗୁ ସଂହିତା, ଶୁକ୍ରନୀତି ପ୍ରଭୃତି ଆୟତ୍ତକଲେ । ବିଦ୍ୟାଶିକ୍ଷା ପରେ ଅଧୀତ ଧର୍ମଶାସ୍ତ୍ର, ରାଜନୀତି, ସମାଜନୀତି ପ୍ରଭୃତିର ଯଥାଯଥ ଅନୁଶୀଳନ ତଥା ପରିଶୀଳନ ନିମିତ୍ତ ରାଜା ବ୍ରଜସୁନ୍ଦରଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କଲେ । ରାଜକୁମାର ବାସୁଦେବ ସୁସ୍ଥ, ସବଳ ଶରୀର; ପ୍ରଫୁଲ୍ଲମନା, ଚଞ୍ଚଳ ପ୍ରକୃତି ତଥା ସ୍ଫୂର୍ତ୍ତି ସମ୍ପନ୍ନ ଯୁବକ ଥିଲେ । ପରେ ପରେ ଏହାର ରୂପାନ୍ତର କର୍ମ ପଟୁତା, ଅସାଧାରଣ ଜ୍ଞାନର ପରିପ୍ରକାଶ ତାଙ୍କ କର୍ମ ଜୀବନରେ ପରିଲକ୍ଷିତ ହେଲା ।

ରାଜଧାନୀ ଦେବଗଡ଼ର ଉତ୍ତର ଦିଗର ଅନତିଦୂରରେ ପ୍ରଧାନପାଟ ପ୍ରପାତ ଏକ ନିସର୍ଗ ପ୍ରାକୃତିକ ସୌନ୍ଦର୍ଯ୍ୟର ଲୀଳାସ୍ଥଳୀ । ସନ୍ଧ୍ୟା ସମୟରେ ବିଶେଷତଃ ଗ୍ରୀଷ୍ମକାଳରେ ରାଜା ବ୍ରଜସୁନ୍ଦର ପ୍ରତ୍ୟେକ ଦିନ ସାନ୍ଧ୍ୟ ଭ୍ରମଣ

ଉଦ୍ଦେଶ୍ୟରେ ଯାଅନ୍ତି । ଦିନେ ଏକ ବିଷଧର ନାଗସର୍ପ ଜନୈକ ବ୍ୟକ୍ତିଙ୍କୁ ଦଂଶନ କରିବାର ସମ୍ବାଦ ପାଇ ରାଜା ନିଜେ ଯାଇ ତାକୁ ହସ୍ତରେ ଧରିବାରୁ ତାହା ଦଂଶନ କଲା । ଫଳତଃ ନାଗସର୍ପର ବିଷଜ୍ୱାଳାରେ ରାଜା ପ୍ରାଣତ୍ୟାଗ କଲେ । ଏହାର ଅବ୍ୟବହିତ ପୂର୍ବରୁ ସେ ବାସୁଦେବଙ୍କୁ ଉତ୍ତରାଧିକାରୀ ରୂପେ ଘୋଷଣା କରିଥିଲେ ।

ରାଜକୁମାର ବାସୁଦେବ ୧୮୬୯ ଖ୍ରୀଷ୍ଟାବ୍ଦରେ ରାଜା ବାସୁଦେବ ସୁଢ଼ଳ ଦେବ ନାମରେ ଅଭିହିତ ହୋଇ ବାମଣ୍ଡା ରାଜସିଂହାସନ ଆରୋହଣ କଲେ । ରାଜା ବ୍ରଜସୁନ୍ଦର ଦେବଙ୍କ ବୃନ୍ଦାବନଚନ୍ଦ୍ର ଦେବ ନାମକ ଏକ ପୁତ୍ର ଥିଲେ, ସେ ମହାଭାରତର ମହାତ୍ମା ବିଦୁର ସଦୃଶ । ମାତ୍ର ତାଙ୍କୁ ରାଜସିଂହାସନ ନ ଦେଇ ଦତ୍ତକପୁତ୍ର ରୂପେ ବାସୁଦେବଙ୍କୁ ସହୋଦର ବଡ଼କୁମାର ହରିହର ଦେବଙ୍କଠାରୁ ଗ୍ରହଣ କରି ଉତ୍ତରାଧିକାରୀ କଲେ । ଏଥିରେ ଅବଶ୍ୟ ଚତୁର୍ଥ ଭ୍ରାତା ଦେବଦର୍ଲ୍ଲଭ ବାଧା ସୃଷ୍ଟି କଲେ, ମାତ୍ର ତାହା ବ୍ୟର୍ଥ ହେଲା । ସେ ବୃନ୍ଦାବନଚନ୍ଦ୍ରଙ୍କୁ ସଙ୍ଗରେ ନେଇ ସମ୍ବଲପୁରର ରାଜପ୍ରତିନିଧି କର୍ଣ୍ଣେଲ ବ୍ରୁଇ ସାହେବଙ୍କ ନିକଟକୁ ଯାଇ ଅଭିଯୋଗପତ୍ର ପ୍ରଦାନ କଲେ । ମାତ୍ର କର୍ଣ୍ଣେଲ ବ୍ରୁଇ ଥରେ ବ୍ରଜସୁନ୍ଦର ଦେବଙ୍କ ରାଜତ୍ୱ କାଳରେ ବାମଣ୍ଡା ଆସି ସମସ୍ତ ବିଷୟ ଅବଗତ ହୋଇଥିବାରୁ ଏଥିରେ ରାଜି ନ ହୋଇ ବାସୁଦେବଙ୍କ ସିଂହାସନ ପ୍ରାପ୍ତି ପ୍ରସ୍ତାବ ଅନୁମୋଦନ କଲେ ।

ରାଜା ବ୍ରଜସୁନ୍ଦର ଦେବଙ୍କ ତିରୋଧାନ ସମୟରେ ବାସୁଦେବଙ୍କର ବୟସ ୧୮ ବର୍ଷ ମାତ୍ର । ତେଣୁ କର୍ଣ୍ଣେଲ ବ୍ରୁଇ ପିତା ହରିହର ଦେବଙ୍କୁ ବାସୁଦେବ ବୟଃପ୍ରାପ୍ତ ହେବା ପର୍ଯ୍ୟନ୍ତ ରାଜକାର୍ଯ୍ୟରେ ସହାୟତା ପାଇଁ ନିର୍ଦ୍ଦେଶ ଦେଲେ । ମାତ୍ର ହରିହର ଦେବଙ୍କ ଶାସନ ନୀତି ଓ ବାସୁଦେବଙ୍କ ଶାସନ ନୀତି ଅମେଳ ହେବାରୁ କଳହଦ୍ୱନ୍ଦ ପରେ ମତାନ୍ତର ଘଟିଲା । ତେଣୁ କଳହଦ୍ୱନ୍ଦ ପାଇଁ ପିତା ହରିହର ଦେବ ସ୍ଥାନାନ୍ତର ଗମନ କଲେ ଓ ପରେ ପ୍ରତ୍ୟାବର୍ତ୍ତନ କଲେ ।

## ରାଜା ବାସୁଦେବ ଓ ବାମଣ୍ଡାର ଆର୍ଥିକ ଅବସ୍ଥା

### କୃଷିର ଉନ୍ନତି ବିଧାନ—

ରାଜା ବାସୁଦେବ ରାଜସିଂହାସନ ଆରୋହଣ କରିବା ପୂର୍ବେ ବାମଣ୍ଡାର ଆର୍ଥିକ ଅବସ୍ଥା ସ୍ବଚ୍ଛଳ ନ ଥିଲା। ବାର୍ଷିକ ଆୟ ଅତ୍ୟଳ୍ପ ଥିଲା। ପୂର୍ବରଜା ସନ୍ଦ୍ରଓ ୧୮୦୩ ଖ୍ରୀ ଅ ରେ ଇଂରେଜ ସରକାରଙ୍କ ସଙ୍ଗେ ସନ୍ଧି ସୂତ୍ରରେ ଆବଦ୍ଧ ହୋଇ ବଶତା ସ୍ବୀକାର କଲେ, ତଥାପି ବାମଣ୍ଡାର ଅଭ୍ୟନ୍ତରୀଣ ଉନ୍ନତି ଆଶାନୁରୂପ ସାଧିତ ହୋଇ ପାରି ନ ଥିଲା। ତେଣୁ ବାମଣ୍ଡାର ଆର୍ଥିକ ଅବସ୍ଥାର ଉନ୍ନତି କଲେ ପ୍ରଥମେ କୃଷିର ଉନ୍ନତି ବିଧାନରେ ଗଭୀର ମନୋନିବେଶ କଲେ।

୧୯୮୮ ବର୍ଗ ମାଇଲ ଆୟତନ ବିଶିଷ୍ଟ ବାମଣ୍ଡା ରାଜ୍ୟର ଲୋକସଂଖ୍ୟା ଥିଲା ୮୧,୨୮୭। ଏହାର ବାର୍ଷିକ ଆୟ ପରିମାଣ ଥିଲା ମାତ୍ର ୫୬୦୦୦/- (ଛଅହଜାରଟଙ୍କା)।

ପ୍ରଜାସାଧାରଣଙ୍କର ଅବସ୍ଥା ଭଲ ନ ଥିଲା। ନିର୍ଜନ ବିସ୍ତୀର୍ଣ୍ଣ ପାର୍ବତ୍ୟ ଅଞ୍ଚଳରେ ରାଜକୀୟ ଅର୍ଥର ଅଭାବ ନ ଥିଲେ ମଧ୍ୟ ପ୍ରାଚୁର୍ଯ୍ୟ ନ ଥିଲା। ଫଳତଃ ରାଜ୍ୟର ଉନ୍ନତି ବିଧାନରେ ଅର୍ଥବ୍ୟୟ ବା ପ୍ରଚୁର ଅର୍ଥ ସଞ୍ଚୟ ସମ୍ଭବପର ନ ଥିଲା।

ଏହି ରାଜ୍ୟର ତଥା ନିକଟବର୍ତ୍ତୀ ରାଜ୍ୟମାନଙ୍କର ରାଜାମାନେ ଶିକ୍ଷାପ୍ରତି ଅତ୍ୟନ୍ତ ଉଦାସୀନ ଥିଲେ। କେବଳ କ୍ଷତ୍ରିୟୋଚିତ ରାଜଧର୍ମପାଳନ (ମୃଗୟା, ଯୁଦ୍ଧାଦି)ରେ ପ୍ରବୃତ୍ତ ଥିଲେ। ମାତ୍ର ରାଜା ବାସୁଦେବ ସର୍ବପ୍ରଥମେ କୃଷିର ଉନ୍ନତି ପ୍ରତି ଦୃକ୍‌ପାତ ପୂର୍ବକ ରାଜଧାନୀ ଦେବଗଡ଼ର ପୂର୍ବଦିଗରେ ୧୦ମାଇଲ ଦୂରସ୍ଥ ବଲମ୍ ଗ୍ରାମରେ ୨୦୦୦ ଏକର ପରିମିତ ଜମିରେ ଧାନ, ଆଖୁ, ଗହମ ପ୍ରଭୃତି ଖରଫ ଓ ରବି, ସୋରିଷ, ବୁଟ ପ୍ରଭୃତି ରବିଫସଲ ଚାଷର ଉନ୍ନତ କୃଷି ପ୍ରଣାଳୀ ଅବଲମ୍ବନ ପୂର୍ବକ କୃଷିର ଉନ୍ନତି ବିଧାନ କଲେ।

ଜମିର ଉପଯୁକ୍ତ ରାଜସ୍ବ ଆଦାୟ ନିମିତ୍ତ ତଥା ନୂତନ ପଦ୍ଧତିରେ ରାଜକାର୍ଯ୍ୟ ପରିଚାଳନା ନିମିତ୍ତ ସ୍ବତନ୍ତ୍ର ବିଭାଗମାନ ପ୍ରତିଷ୍ଠିତ ହେଲା। କୃଷିକାର୍ଯ୍ୟ ଉପଯୋଗୀ ଜମି ୩ ଭାଗରେ ବିଭକ୍ତ ହେଲା। (କ) ଅସ୍ବଂ ବା ଔଲ (ଖ) ଦ୍ବୟମ୍ ଓ (ଗ) ସ୍ବସ୍ବଂ ସରଦର ତଦନୁସାରେ ୩ ପ୍ରକାର କର ଧାର୍ଯ୍ୟ ହେଲା।

ସ୍ଥାୟୀ ଅସ୍ଥାୟୀ ଭେଦରେ ୫ ପ୍ରକାର ସ୍ବତ୍ବ ଯଥା :—(i) ଜେରାତ (ii) ତସ୍ଥାବନ୍ (iii) ଏକପଦୀ (iv) ଉକଦା (v) ରୟତ। ତେଣୁ ପ୍ରଥମେ ଜମି ଜରିବ—(Land Settlement) ଓ ରାଜସ୍ବ ବିଭାଗ (Revenue Department) ସ୍ଥାପନ ପୂର୍ବକ ରାଜସ୍ବର ପରିମାଣ ବୃଦ୍ଧି କଲେ। 1873 ମସିହା ପରେ ପ୍ରତ୍ୟକ୍ଷ ପରିଚାଳନାରେ ଅଂଶ ଗ୍ରହଣ କରି ପୂର୍ବ ଆୟର ୩ ଗୁଣ

ଆୟ ପରିମାଣ ବୃଦ୍ଧି କରିପାରିଥିଲେ । ଅର୍ଥାତ୍ ୧୮୭୪-୭୫ ବେଳକୁ ଆୟ ପରିମାଣ ଟ୧୮,୦୦୦/କୁ (ଅଠରହଜାରଟଙ୍କା) ବୃଦ୍ଧି ଲାଭ କରି ତାଙ୍କର ଅସାଧାରଣ ପ୍ରଶାସନିକ ଦକ୍ଷତାର ପରିଚୟ ପ୍ରଦାନ କରିଯାଇଥିଲା ।

ପ୍ରଶାସନ ପ୍ରଣାଳୀର ଉନ୍ନତି ବିଧାନ—

ଏତଦ୍ ବ୍ୟତୀତ ବିଚାର ବିଭାଗ ଓ ପୋଲିସ ବିଭାଗର ସଂସ୍କାରର ବିଧାନ କରି ସୁନାମ ଅର୍ଜନ କଲେ । ଯଦିଓ ତାଙ୍କର ଇଂରେଜୀ ଶିକ୍ଷାରେ ପ୍ରବେଶ ଲାଭ କରିବାର ସୁଯୋଗ ଓ ସୁବିଧା ନ ଥିଲା । ତଥାପି ପରିମାର୍ଜିତ ଶାସନ ପ୍ରଣାଳୀ ଅବଲମ୍ବନ ପୂର୍ବକ ପୁବର ଆର୍ଥିକ ଅବସ୍ଥାର ଉନ୍ନତି ବିଧାନ ପ୍ରତି ତୀକ୍ଷ୍ଣ ଦୃଷ୍ଟିପାତ ପୂର୍ବକ ଏହାର ପରିମାର୍ଜନରେ ସତତ ଚେଷ୍ଟିତ ହେଲେ । ବ୍ରଜସୁନ୍ଦରଦେବଙ୍କ ରାଜତ୍ୱ କାଳରେ ଇଂରେଜୀ ଶିକ୍ଷା ବ୍ୟବସ୍ଥା ନ ଥିଲା ପ୍ରାୟ । ତଥାପି ବାସୁଦେବ ଏହି ସମୟରେ ସଂସ୍କୃତ ଶିକ୍ଷାର ସୁବିଧା ଓ ସୁଯୋଗ ଲାଭକରି ସମଗ୍ର ଭାରତରେ ଜଣେ ଉଚ୍ଚକୋଟୀର ସଂସ୍କୃତଜ୍ଞ ପଣ୍ଡିତ ଓ କବି ରୂପେ ପଣ୍ଡିତ ସମାଜରେ ସମ୍ମାନିତ ହେଲେ । ତାଙ୍କର ପ୍ରଶାସନ ପ୍ରଣାଳୀ ଅତ୍ୟନ୍ତ ଉନ୍ନତ ଓ ଆଦର୍ଶ ସ୍ଥାନୀୟ ।

ପୂର୍ବେ ରାଜକାର୍ଯ୍ୟରେ ଆୟବ୍ୟୟର ହିସାବପତ୍ର ସଠିକ ରୂପେ ସୁରକ୍ଷିତ ହେଉ ନ ଥିଲା । ରାଜା ରାଜକର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଇ ନୂତନ ପଦ୍ଧତିରେ ଆୟବ୍ୟୟର ହିସାବ ରକ୍ଷା କଲେ । କର୍ମଚାରୀଙ୍କ ସର୍ବୋଚ୍ଚ ବେତନ ଥିଲା ମାସକୁ ଟ୧୮/- । କର୍ତ୍ତବ୍ୟରେ ଶୃଙ୍ଖଳା, ଗୀତ ନାଟ, ତଥା ଭଲ ମନ୍ଦ ଜନେ ରାଜା ପ୍ରତିଦିନ ପରିଦର୍ଶନ କରନ୍ତି ।

ବ୍ୟବସାୟ ବାଣିଜ୍ୟର ଉନ୍ନତି ବିଧାନ—

ଭୌଗଳିକ ଦୃଷ୍ଟିରୁ ବାମଣ୍ଡା ବାସୁଦେବଙ୍କ ରାଜତ୍ୱ କାଳରେ ବିଭିନ୍ନ ଉଦ୍ଭିଜ୍ଜ, ପ୍ରାଣିଜ ଓ ଖଣିଜ ସମ୍ପଦରେ ପୂର୍ଣ୍ଣ ଥିଲା । ଚୂନପଥର, ଲୌହପଥର ଖଣିମାନ ହୀରକୁଦର ହୀରାଖଣି ସଦୃଶ ବିଦ୍ୟମାନ ଥିଲା । ଉଦ୍ଭିଜ୍ଜ ସମ୍ପଦ ୨ ପ୍ରକାରରେ ଯଥା ଆରଣ୍ୟ ସମ୍ପଦ ଓ ଗ୍ରାମ୍ୟ ସମ୍ପଦ ରୂପେ ସୁଲଭ ଥିଲା । ଅରଣ୍ୟ ସମ୍ପଦ ଶାଳ, ପିଆଶାଳ, ଶିଶୁ ପ୍ରଭୃତି କାଠ, ବାଉଁଶ, ବହୁବିଧ ଲତା, ଗୁଳ୍ମ, ପୁଷ୍ପ, ଫଳ, ଘାସ ପ୍ରଭୃତିରେ ବାମଣ୍ଡା ପରିପୂର୍ଣ୍ଣ ଥିଲା ।

ଏତଦ୍‌ବ୍ୟତୀତ ଧାନ, ଯବ, ମକା, ଗହମ, ରାଶି, ସୋରିଷ, ମୁଗ, ବିରି ହରଡ଼ ପ୍ରଭୃତି କୃଷିଜାତ ଦ୍ରବ୍ୟ ଗ୍ରାମ୍ୟ ସମ୍ପଦ ରୂପେ ମହଜୁଦ୍ ଥିଲା । ଅରଣ୍ୟରେ ହସ୍ତୀ, ମହିଷ, ବ୍ୟାଘ୍ର, ସିଂହ, ବରାହ, ହରିଣ, ଠେକୁଆ ଏବଂ ବିଭିନ୍ନ ପକ୍ଷୀ ଶୋଭା

ପାଉଥିଲେ । ସେମାନଙ୍କର ଦନ୍ତ, ଶିଙ୍ଗ, ନଖ, ବାଳ, ଲୋମ, ଚର୍ମ ପ୍ରଭୃତି ପ୍ରାଣିଜ ସମ୍ପଦ ମଧ୍ୟ ସୁଲଭ ଥିଲା । ଏତଦ୍‌ବ୍ୟତୀତ ଗାଈ, ଗୋରୁ, ଛେଳି, ମେଣ୍ଢା, କୁକୁର ପ୍ରଭୃତି ଗୃହପାଳିତ ପଶୁ ବହୁ ପରିମାଣରେ ଥିଲେ । ଏ ସମସ୍ତ ପ୍ରାଣୀର ଯତ୍ନ ସଙ୍ଗେ ସଙ୍ଗେ ସେହିସବୁ ପଦାର୍ଥର ସଦ୍‌ବିନିଯୋଗ ନିମନ୍ତେ ରାଜା ବାସୁଦେବ ତୀକ୍ଷ୍ଣ ଦୃଷ୍ଟିପାତ କଲେ । ରାଜ୍ୟର ଆର୍ଥିକ ଅବସ୍ଥାର ଉନ୍ନତି କଲେ ସେ ସେଥିର ମନୋନିବେଶ କଲେ ।

ସେ ସମୟରେ ଓଡ଼ିଶାର ରାଜଧାନୀ କଟକ ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ ଦୃଷ୍ଟିକୋଣରୁ ଶୀର୍ଷସ୍ଥାନ ଲାଭ କରିଥିଲା । ତେଣୁ ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ କଟକରେ ବିକ୍ରୟ ପୂର୍ବକ ଅର୍ଥଲାଭର ଉପାୟ ସ୍ଥିର କରି ଏକ ବାଣିଜ୍ୟ କୋଠି ସ୍ଥାପନ କଲେ । ସେତେବେଳେ କଟକରୁ ଗମନାଗମନର ବିଶେଷ କିଛି ସୁବିଧା ନ ଥିଲା । ତେଣୁ ଜଳପଥରେ ସେ ପ୍ରଥମେ ଯାତ୍ରା ଆରମ୍ଭ କଲେ । ବ୍ରାହ୍ମଣୀ ନଦୀରେ ନୌକାରେ ଜଳପଥ ଆବିଷ୍କାର କରି କଟକ ସହିତ ବାଣିଜ୍ୟ ସମ୍ପର୍କ ସ୍ଥାପନ କଲେ । ସେଠାରେ ଧର୍ମସାହୁ ନାମକ ଜନୈକ ବ୍ୟବସାୟୀଙ୍କୁ ଏ ଭାର ଅର୍ପଣ କଲେ । ପ୍ରଥମେ ଶାଳକାଠ, ପରେ ପରେ ଋବିଶସ୍ୟ ଜାତୀୟ ଦ୍ରବ୍ୟ ନୌକାରେ ପ୍ରେରିତ ହେଲା । ନଦୀତୀରସ୍ଥ ଗୋଗୁଆ, ନୈକୂଳ, ରେଙ୍ଗାଳି ସ୍ଥାନରେ ଗୋଦାମ ଘର ପ୍ରସ୍ତୁତ ହେଲା । କଟକରୁ କପଡ଼ା, ଲବଣ ଓ ଅନ୍ୟ ଆବଶ୍ୟକୀୟ ପଦାର୍ଥ ଆମଦାନୀ କଲେ । ତାଳଚେରରେ ଏକ ବାଣିଜ୍ୟ କେନ୍ଦ୍ର ସ୍ଥାପନ କଲେ ।

ଏ ସୁବୃହତ୍ ବ୍ୟବସାୟ ପାଇଁ ଧର୍ମ ସାହୁର ଅପାରଗତାକୁ ଲକ୍ଷ୍ୟ କରି ତାଙ୍କର ଘନିଷ୍ଠ ବିଶ୍ୱାସୀ ଈଶ୍ୱର ଚନ୍ଦ୍ର ମିଶ୍ର (ପ୍ରାଥମିକ ଶିକ୍ଷକ)ଙ୍କୁ ନ୍ୟସ୍ତ କଲେ । ମାତ୍ର ସେ ସେଠାରେ ରାଜାଙ୍କ ପ୍ରତିପତ୍ତି ଓ ପ୍ରତିଷ୍ଠାର ବ୍ୟପଦେଶରେ ବହୁ ଅର୍ଥ ଅପବ୍ୟୟ କରିବାରେ ଲାଗିଲେ, ଫଳତଃ ବ୍ୟବସାୟଟି କ୍ଷତିଗ୍ରସ୍ତ ହେଲା । ମାତ୍ର କଲିକତାର ନିମତଲଘାଟ ସହିତ ଅନ୍ୟ ଏକ କାଠ ବ୍ୟବସାୟ ପ୍ରଚଳିତ ଥିଲା । ପରେ ଲୋକ ଅଭାବରୁ ଏହା ମଧ୍ୟ ବନ୍ଦ ହୋଇଗଲା । Administration Report (1891) ଅନୁସାରେ ତାଙ୍କର ଅର୍ଥାଗମର ସୂଚନା ନିମ୍ନୋକ୍ତ ପଂକ୍ତିରୁ ଜଣାପଡ଼େ ।

"The Raja is a Shrewd and Capable financier. He does a good deal of profitable trade by river with Cuttack.

କାଠପଟା ବ୍ୟବସାୟ :

କଲିକତାର କାଳଘାଟ ନିବାସୀ ଯଜ୍ଞେଶ୍ୱର ମୁଖୋପାଧ୍ୟାୟ ନାମକ ଜନୈକ ଭଦ୍ରଲୋକ East India Railway Company ସହିତ କାଠପଟା ସରବରାହ ଓ ଅଂଶୀଦାର ରୂପେ କାର୍ଯ୍ୟ ସମ୍ପାଦନ ନିମିତ୍ତ ବାମଣ୍ଡା ଆଗମନ କଲେ । ସେହି ସମୟରେ ରାଜାଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଥିଲେ ରେବତୀ ମୋହନ ଦାସଗୁପ୍ତ (ରାଜକୁମାର ହାଇସ୍କୁଲର ପ୍ରଧାନ ଶିକ୍ଷକ) ଓ ଷ୍ଟେଟ୍ କାଉନ୍‌ସିଲ୍‌ର ସେକ୍ରେଟେରୀ ଥିଲେ ଯୋଗେଶ ଚନ୍ଦ୍ର ଦାସ (ହାଇସ୍କୁଲର ୨ୟ ଶିକ୍ଷକ) ସେମାନେ ଏ ସମ୍ପର୍କରେ ପରାମର୍ଶ କରି ସହାୟତା କଲେ । ପରେ ରାଜା ଉପଲବ୍ଧି କଲେ ଯେ ବାମଣ୍ଡାର ପ୍ରଚୁର ଅରଣ୍ୟ ସମ୍ପଦ କେବଳ ଏହି ଏକ ବ୍ୟବସାୟରେ ନିୟୁକ୍ତ ହେବା ପର୍ଯ୍ୟାପ୍ତ ନୁହେଁ, ତେଣୁ ସେ ପରେ Eastern Bengal Estate Railway ଏବଂ ନିକଟବର୍ତ୍ତୀ Bengal-Nagpur-Railway ସହିତ ଶଂସିତ କାରବାର ପ୍ରଚଳନ କଲେ । ଏଥିରେ ଅଦ୍ଭିଜ୍ଞ ଯଜ୍ଞେଶ୍ୱର ବାବୁଙ୍କ ବିଶେଷ ସହାୟତାରେ ପ୍ରଚୁର ଅର୍ଥାଗମ ହେତୁ ରାଜା ତାଙ୍କୁ ପୁରସ୍କୃତ କରି ପରମ ଆନନ୍ଦ ଲାଭ କଲେ ।

Administration Report (1899) ଅନୁସାରେ ରାଜା ବାସୁଦେବଙ୍କ କାଠପଟା ବ୍ୟବସାୟର ସୂଚନା ନିମ୍ନୋକ୍ତ ପଂକ୍ତିରୁ ଜଣାପଡ଼େ । A large quantity of sleepers is supplied to Railways and a timber-depot is maintained at Calcutta at which a considerable business is done. The state account thus exclude one of the largests scuroes of income. This business has been vigorously and successfully managed by the Chief himself.

କରତକଳ ପ୍ରତିଷ୍ଠା :

ରାଜା ବାସୁଦେବ ଉପଲବ୍ଧି କଲେ ଯେ ଏ ପ୍ରକାର ବ୍ୟବସାୟ ନିମିତ୍ତ ଆଧୁନିକ ଧରଣର କରତକଳ (Saw Mill) ଆବଶ୍ୟକ । ନଚେତ୍ ଶୀଘ୍ର କାର୍ଯ୍ୟ ସମ୍ପାଦନ ଅସମ୍ଭବ । କାରଣ ସାଧାରଣ ସ୍ତରର ବୃକ୍ଷଚ୍ଛେଦନ ଓ କାଠପଟା ନିର୍ମାଣ ସମୟ ସାପେକ୍ଷ । ତେଣୁ ଇଂଲଣ୍ଡରୁ କରତକଳ ଓ କରତକଳ ପରିଚାଳନା ନିମିତ୍ତ ମେକାନିକ୍ (Mechanic) ଅଣାଇଲେ । ପ୍ରଥମେ ଦୁଇଜଣ ମେକାନିକ୍ ଆସି ଫେରିଗଲେ । ପରେ ଜଣେ ଯନ୍ତ୍ରୀ (Mechanical Engineer) ଫ୍ରାନ୍‌ସରୁ ଆସି ଏହା ପରିଚାଳନା କଲେ । ରାଜାଙ୍କ ନିର୍ଦ୍ଦେଶ କ୍ରମେ ସେ ଦେଶୀୟ ମିସ୍ତ୍ରୀ-

ମାନଙ୍କୁ ମେସିନ୍ ସମ୍ପର୍କୀୟ ଯାବତୀୟ ଶିକ୍ଷା ପ୍ରଦାନ କଲେ । ଏଥିପାଇଁ ଭଲ ବେତନ ଦେଇ ତାଙ୍କୁ ରଖିଥିଲେ ।

## କାଠ ବ୍ୟବସାୟ ଓ ବାମଣ୍ଡାର ଆର୍ଥିକ ସ୍ୱଚ୍ଛଳତା :

ରାଜା ବାସୁଦେବ ଏହି ବ୍ୟବସାୟ ପାଇଁ ନିଜର ବ୍ୟକ୍ତିଗତ ସମ୍ପତ୍ତି ଯାହା କିଛି ଥିଲା ତାକୁ ବିନିଯୋଗ କରିଥିଲେ । ଯେହେତୁ ବାସୁଦେବ ଜଣେ ଅତ୍ୟନ୍ତ ବିଚକ୍ଷଣ ବୁଦ୍ଧିସମ୍ପନ୍ନ ଦୂରଦର୍ଶୀ ରାଜା ଥିଲେ, ତେଣୁ ନିଜ ପରିବାରର ସନ୍ତାନ-ମାନଙ୍କ ଉଜ୍ଜ୍ୱଳ ଭବିଷ୍ୟତ ନିମନ୍ତେ ଉପଯୁକ୍ତ ଅର୍ଥ ସଞ୍ଚାନ ନିମିତ୍ତ ତାର ନାମ୍ ଦେଲେ । ରାଜକୁମାର ସିନ୍ଥପାର ବ୍ୟବସାୟ ଏଥିପାଇଁ ବେଳେ ବେଳେ ରୟାଲ୍‌ଟି ଆକାରରେ ପ୍ରଚୁର ଅର୍ଥ ରାଜକୋଷକୁ ଆସୁଥିଲା । ଏ ପ୍ରକାର ବ୍ୟବସାୟରୁ ରାଜା ପ୍ରଚୁର ଅର୍ଥ ଲାଭ କଲେ । ତେଣୁ ରାଜ୍ୟର ବାର୍ଷିକ ଆୟ ବୃଦ୍ଧିପ୍ରାପ୍ତ ଘଟିଲା । ମାତ୍ର ତଦାନୀନ୍ତନ ରାଜପ୍ରତିନିଧି ଏବଂ ମଧ୍ୟପ୍ରଦେଶର ଶାସନକର୍ତ୍ତା ବାମଣ୍ଡାର ବାର୍ଷିକ ଆୟ ପ୍ରକୃତ ଆୟ ତୁଳନାରେ କମ୍ ଥିବାର ଦର୍ଶାଇଲେ। Administration Report 1893 ଅନୁସାରେ "It is surprising to see the amount of good and permanent work, which, with his limited means, he has already been able to do for the improvement of the State" ରାଜପ୍ରତିନିଧି ତଥା ପ୍ରାଦେଶିକ ଶାସନକର୍ତ୍ତାମାନେ ଏହା ସାମନ୍ତ ରାଜାମାନଙ୍କର ସ୍ୱତନ୍ତ୍ର କାରବାର ଭାବି ଏଥିରେ ହସ୍ତକ୍ଷେପ କରି ନ ଥିଲେ । ଏହି ବ୍ୟବସାୟ ଫଳରେ ରାଜ୍ୟର ଆୟ ପରିମାଣ ଅପ୍ରତ୍ୟାଶିତ ଭାବେ ବୃଦ୍ଧି ଲାଭକଲା, ତାହା ନିମ୍ନୋକ୍ତ ବିବରଣୀରୁ ସହଜରେ ପ୍ରତିପନ୍ନ ହୋଇଥାଏ ।

| ବର୍ଷ— | ଆୟ ପରିମାଣ— | ବ୍ୟବଧାନ | ବୃଦ୍ଧିର ପରିମାଣ |
|---|---|---|---|
| ୧ । ୧୮୬୮ (ରାଜତ୍ୱ ବର୍ଷ ଆରମ୍ଭ) | ଟ ୬୦୦୦/- | | |
| ୨ । ୧୮୭୪ (ପ୍ରକୃତ ଶାସନ ସ୍ୱତନ୍ତ୍ର କ୍ଷମତା) | ଟ ୧୮,୦୦୦/- | ୫ ବର୍ଷ | ଟ ୧୨,୦୦୦/- |
| ୩ । ୧୮୯୨ | ଟ ୫୨,୦୦୦/- | ୧୮ ବର୍ଷ | ଟ ୩୪,୦୦୦/- |
| ୪ । ୧୮୯୩ | ଟ ୬୧,୭୬୯/- | ୧ ବର୍ଷ | ଟ ୯,୭୬୯/- |
| ୫ । ୧୮୯୪ | ଟ ୬୬,୫୪୮/- | ୧ ବର୍ଷ | ଟ ୪,୭୮୯/- |
| ୬ । ୧୯୦୧ | ଟ ୧,୩୨,୪୭୩/- | ୭ ବର୍ଷ | ଟ ୬୫,୯୧୫/- |
| ୭ । ୧୯୦୩ (ରାଜତ୍ୱ ଶେଷ ବର୍ଷ) | ଟ ୧,୭୨,୩୧୦/- | ୨ ବର୍ଷ | ଟ ୩୯,୮୩୭-/ |

ଅର୍ଥାତ୍ ରାଜସିଂହାସନ ଆରୋହଣ କାଳରେ ଟ ୭୦୦୦/ରୁ ଶାସନ ପରିସମାପ୍ତ କାଳରେ (୧୮୬୮-୧୯୦୩) ଅର୍ଥାତ୍ ରାଜତ୍ୱର ୩୫ ବର୍ଷ କାଳ ମଧ୍ୟରେ ଆୟ ପରିମାଣ ଟ ୧,୭୬,୩୧୦ (ବୃଦ୍ଧି ପରିମାଣ ଟ ୧,୬୭,୩୧୦) ଏହା ଏକ ଉଚ୍ଚକୋଟୀର ସ୍ୱଚ୍ଛଳ ଆର୍ଥିକ ଅବସ୍ଥାର ପରିଚାୟକ । ତେଣୁ Administration Report 1899 କହନ୍ତି, In Bamra the operations have been transferred to more distant forests but they still yield a substantial profit, they are under the personal superv sion of the Raja who has shown himself a sound man o business. The forests are the most valuable property possessed by the State and I saw no signs that they were being overworked in a way detrimental to their conservation." ତେଣୁ କହିବା ବାହୁଲ୍ୟ ଯେ, ପ୍ରଥମେ ରାଜା ବାସୁଦେବ ଧନାଗମ ତଥା ଅର୍ଥାଗମର ଉପାୟ ସ୍ଥିର କରି ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ବିଧାନରେ ସଫଳକାମ ହୋଇପାରି ଆଦର୍ଶ ସ୍ଥାପନ କରିଯାଇଛନ୍ତି ।

ରାଜା ବାସୁଦେବଙ୍କ ରାଜତ୍ୱ କାଳର ସମାପ୍ତିର ଅବ୍ୟବହିତ ପୂର୍ବରୁ ୧୮୯୮ରେ ଏହି ବ୍ୟବସାୟ ସମ୍ପର୍କରେ Administration Report (1898 କହନ୍ତି) "There are large saw mills in the state and a considerable business is done. This brings much profit to the inhabitants of the state, who are enabled to earn good wages by this labour and by carting the timber to the Railway."

ରାଜା ବାସୁଦେବଙ୍କର ପ୍ରଶାସନିକ ଆଦର୍ଶ—

ରାଜ୍ୟରେ ପ୍ରଜାମାନଙ୍କ ଉପରେ ମାତ୍ରାଧିକ କର ଧାର୍ଯ୍ୟ କରି ରାଜକୋଷର ଅଭିବୃଦ୍ଧି ସାଧନ ତାଙ୍କର ପ୍ରଶାସନ ନୀତିବିରୁଦ୍ଧ ଥିଲା । ତେଣୁ ସେ ସର୍ବପ୍ରଥମେ ବ୍ୟବସାୟ ବାଣିଜ୍ୟର ପ୍ରସାରଣୀତି ଉପରେ ବିଶେଷ ଗୁରୁତ୍ୱ ଆରୋପ କଲେ । Chief Commissionerଙ୍କ Report (1895)ରୁ ଜଣାଯାଏ ଯେ "The Raja of Bamra has from the first steadily resisted all temptations to increase his revenue by taxation of this nature, his object being to encourage the settlements of traders in his state and his attertion in this respect has been referred to by the Chief-Commissioner as probably

a wise measure. × × × × Both in the encouragement given to trade and general satisfaction of the people the small immediate sacrifice of revenue would no doubt be amply repaid.” ତେଣୁ ଏ ପ୍ରକାର ବ୍ୟବସାୟ ବାଣିଜ୍ୟ ପଦ୍ଧତି ଅନୁସରଣ କରି ରାଜା ବାସୁଦେବ ରାଜ୍ୟର ଆଭ୍ୟନ୍ତରୀଣ ଆର୍ଥିକ ଅବସ୍ଥାରେ ପ୍ରଭୂତ ଉନ୍ନତି ସାଧନ କରିବା ସଙ୍ଗେ ସଙ୍ଗେ ସର୍ବବିଧ ଉନ୍ନତି ବିଧାନ କରିବାରେ ସମର୍ଥ ହୋଇପାରିଥିଲେ ।

## ରାଜା ବାସୁଦେବ ସୁଢ଼ଳଦେବ ଓ ବାମଣ୍ଡାର ସାଂସ୍କୃତିକ ଭିତ୍ତିଭୂମି

ରାଜା ବ୍ରଜସୁନ୍ଦର ଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାର ଆଧ୍ୟାତ୍ମିକ, ସାମାଜିକ ତଥା ସାଂସ୍କୃତିକ ଚେତନା ଯଦିଓ ଆତ୍ମପ୍ରକାଶ କରିଥିଲା, ତାର ପୂର୍ଣ୍ଣାଙ୍ଗ ବିକାଶ ସାଧିତ ହୋଇ ନ ଥିଲା । ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ଆଧୁନିକ ରୁଚି ସମ୍ପନ୍ନ ଭାବରେ ଏହାର ବାସ୍ତବ ପ୍ରକୃତପ୍ରକାଶ ସାଧିତ ହୋଇଛି ।

ରାଜ୍ୟର ପ୍ରତ୍ୟକ୍ଷ ଶାସନଭାର ଗ୍ରହଣ କରିବା ଅବ୍ୟବହିତ ପରେପରେ ରାଜା ବାସୁଦେବ ପତ୍ନୀ ବିୟୋଗ ଜନିତ କ୍ଳେଶର ଅପନୋଦନ ନିମିତ୍ତ ତୀର୍ଥାଟନ ତଥା ଦେଶ ଭ୍ରମଣ ବାମଣ୍ଡାର ସାଂସ୍କୃତିକ ଭିତ୍ତିଭୂମିକୁ ନୂତନ ରୂପରେଖ ପ୍ରଦାନ କରିବାରେ ସମର୍ଥ ହୋଇପାରିଛି ।

ନିବିଡ଼ ଅରଣ୍ୟାନୀ ପରିବେଷ୍ଟିତ ଅଖ୍ୟାତ ବାମଣ୍ଡାରେ ବିଜ୍ଞାନ ଯୁଗର ନୂତନ ସଭ୍ୟତା ସଂସ୍କୃତିର ଆଲୋକରଶ୍ମି ପ୍ରବେଶ କରିଛି ବାମଣ୍ଡାର ହୃଦୟମାନ ରାଜା ବାସୁଦେବଙ୍କ ଅକ୍ଳାନ୍ତ ପରିଶ୍ରମରେ ।

ରାଜା ବାସୁଦେବ ଉତ୍ତର ଭାରତ ତଥା କଲିକତା, ଲକ୍ଷ୍ନୌ, ଏଲାହାବାଦ, ଦିଲ୍ଲୀ, ଆଗ୍ରା, ଗୟା, ମଥୁରା, ବୃନ୍ଦାବନ ଏବଂ ପଶ୍ଚିମଭାରତ, ବମ୍ବେ, ପୁନା, ହାଇଦ୍ରାବାଦ ଓ ଦକ୍ଷିଣଭାରତର ମହୀଶୂର, ବାଙ୍ଗାଲୋର, ବିଜୟନଗର, ତ୍ରିଚିନାପଲ୍ଲୀ, ମାନ୍ଦ୍ରାଜ, ସୀମାଚଳ, ପ୍ରଭୃତି ପ୍ରସିଦ୍ଧ ସ୍ଥାନମାନ ପରିଦର୍ଶନ କରି ଯେଉଁ ନୂତନ ଜ୍ଞାନ, ହାଇକୋର୍ଟର ଶାସନ ପଦ୍ଧତି, ଉନ୍ନତ ନଗର ପରିକଳ୍ପନା-ରୀତି (Town Planning), ବୈଜ୍ଞାନିକ ଯନ୍ତ୍ରପାତିର ପ୍ରତିଷ୍ଠା, ବ୍ୟବହାର, ଉନ୍ନତ ଜଳସେଚନ ପ୍ରଣାଳୀରେ କୃଷିବୃଦ୍ଧି, ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା, ତଥା ଶିକ୍ଷାପଦ୍ଧତିର ପ୍ରଚଳନ, ନୂତନ ସଭ୍ୟତାର ସଂକେତ ତଥା ଉନ୍ନତ କଳାର ବିକାଶ, ବାମଣ୍ଡାର ସାଂସ୍କୃତିକ ଭିତ୍ତିଭୂମି ପ୍ରତିଷ୍ଠା ଦିଗରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି କହିବା ବାହୁଲ୍ୟମାତ୍ର ।

ସ୍ଥାପତ୍ୟ କଳାର ପରିପ୍ରକାଶ—

(୧) ରାଜୋଦ୍ୟାନ—ବାମଣ୍ଡାର ରାଜଧାନୀ ଦେବଗଡ଼ର ଉତ୍ତରଦିଗରେ ପ୍ରଧାନପାଟ ପର୍ବତ ଏକ ରମଣୀୟ ଦର୍ଶନୀୟ ସ୍ଥାନ । ତାର ପାଦଦେଶରେ ୪୦ ଏକର ପରିମିତ ଜମିରେ ବିଭିନ୍ନ ଦେଶରୁ ବହୁ ବିଧ ଫଳ ପୁଷ୍ପ ବୃକ୍ଷରୋପଣ କରି ଏକ ଉଦ୍ୟାନ ନିର୍ମାଣ କଲେ । ସେହି ଉଦ୍ୟାନରେ ବିଭିନ୍ନ ପ୍ରକାର ପ୍ରତିମୂର୍ତ୍ତି (Statue) ସ୍ଥାପନ କରି ତାର ସୌନ୍ଦର୍ଯ୍ୟ ବୃଦ୍ଧି କଲେ । ୧୯୦୨ ଖ୍ରୀ.ରେ ଅଗାଧୁ ମହାରଣା ନାମକ ଜନୈକ ଚିତ୍ରକରଙ୍କୁ ମାନ୍ଦ୍ରାଜରୁ ଆଣି ରାଜା ବାସୁଦେବ ବାମଣ୍ଡା ବଣାଇଁ ରାଜଭବନରେ ରଖି ଅନେକ ତୈଳଚିତ୍ର ନିର୍ମାଣ କଲେ । ତା ସଙ୍ଗେ ସଙ୍ଗେ ରାଜକୁମାରଙ୍କୁ ତୈଳଚିତ୍ର ଚିତ୍ର ବିଦ୍ୟା ସମ୍ପର୍କରେ ଅନେକ ଶିକ୍ଷା ପ୍ରଦାନ କଲେ । ଏତଦ୍‌ବ୍ୟତୀତ ଦୁଇଜଣ ବ୍ୟକ୍ତିଙ୍କୁ ଚିତ୍ର ବିଦ୍ୟା ସମ୍ପର୍କରେ ଶିକ୍ଷାଦାନ ନିମିତ୍ତ ଅର୍ଥବ୍ୟୟ କରିଥିଲେ । ସେମାନେ ଏ ପ୍ରକାର ସାବଲମ୍ବନଶୀଳ ଶିକ୍ଷା ବଳରେ ସ୍ୱୀୟ ଅର୍ଥ ସନ୍ଧାନ କରିବାକୁ ସମର୍ଥ ହୋଇଥିଲେ ।

ରାଜୋଦ୍ୟାନର ବୈଶିଷ୍ଟ୍ୟ :—

ବହୁ ଆଗ୍ରହ ସହକାରେ ରାଜା ବିଭିନ୍ନ ସ୍ଥାନରୁ ବହୁ ଫଳ (ଆମ୍ବ, ଲେମ୍ବୁ କମଳା, ୟୁକାଲିପଟସ୍, ସିନ୍‌କୋନା, ଦେବଦାରୁ) ଓ ବିଭିନ୍ନ ପୁଷ୍ପ (ଚମ୍ପକଚମ୍ପା, ନାଗେଶ୍ୱର, ଚମ୍ପା, ବିଭିନ୍ନ ରଙ୍ଗର ଗୋଲାପ ଆଦି) ବୃକ୍ଷ ଆଣି ଉଦ୍ୟାନରେ ରୋପଣ କଲେ । ଫଳତଃ ଉଦ୍ୟାନର ସୌନ୍ଦର୍ଯ୍ୟ ଓ ସୌରଭ ପରିଦର୍ଶକ ତଥା ନଗରବାସୀଙ୍କ ମନହରଣ କରୁଥିଲା ।

ତେଣୁ Administration Report 1895 କହନ୍ତି—"The State gardens to which reference is made in the report, deserves some mention. That at Deogarh is of a specially high Order Raja himself is an enthusiastic gardener and is fond of experimenting with exotic କହିବା ବାହୁଲ୍ୟ ଯେ, ରାଜା ବାସୁଦେବ ଜଣେ ଉଚ୍ଚକୋଟୀର ଉଦ୍ଭିଦତତ୍ତ୍ୱବିତ୍ ଥିଲେ । ତଦନୁସାରେ ଉଦ୍ୟାନର ସୁପରିଚାଳନା କରି ସୌଷ୍ଠବ ବୃଦ୍ଧି କରିଥିଲେ ।

୧୮୯୮ ପ୍ରଶାସନ ବିବରଣୀରୁ ସହଜେ ଉପଲବ୍ଧ ହୋଇଥାଏ । "The Raja's gardens tastify to the great personal interest hes take in horticulture The year has been an unprofitious. one for oranges. The Raja's efforts to popularise the potato, are meeting with sucess.

ଏ ଉଦ୍ୟାନ ସମଗ୍ର ମଧ୍ୟପ୍ରଦେଶ ତଥା ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ଅନ୍ୟତମ ଥିଲା । ତେଣୁ report of the political Agent 1092ରେ ପ୍ରକାଶ ପାଇଲା "The public garden is certainly one of the finest and most richly stocked in the central province."

(ii) ରାଜା ବାସୁଦେବଙ୍କ ଜଳସେଚନ ଯୋଜନା ଅତ୍ୟନ୍ତ ଉତ୍କୃଷ୍ଟ ଧରଣର ଥିଲା । ଦେବଗଡ଼ର ଅନତିଦୂରର ପୁଙ୍ଗଦଗରେ ପ୍ରବାହିତ ମରୁଆଳ ନଦୀରେ ସେତୁ ନିର୍ମାଣ ଯୋଜନା ସ୍ଥାପତ୍ୟ କଳାର ଶ୍ରେଷ୍ଠ ନିଦର୍ଶନ ।

ତେଣୁ ବ୍ୟାସକବି ଫକୀରମୋହନଙ୍କ ଭାଷାରେ—

"ସ୍ଥାପତ୍ୟ ବିଜ୍ଞାନେ ତୁମ୍ଭ ନିପୁଣତା ହେତୁ
ନିଦର୍ଶନ ନଦୀ ପୃଷ୍ଠେ ଶିଳାମୟ ସେତୁ ।"

(iii) ଏତଦ୍‌ବ୍ୟତୀତ ଉପେନ୍ଦ୍ର ପତି ନାମକ ସୁଦକ୍ଷ ମୂର୍ତ୍ତି ନିର୍ମାତା ଶିଳ୍ପୀଙ୍କୁ ଖରସୁଆଁରୁ ଆଣି ରାଜ୍ୟରେ ରଖି ରାଜ୍ୟବାସୀଙ୍କୁ ମୂର୍ତ୍ତିଗଠନ ଶିକ୍ଷା ପ୍ରଦାନ କଲେ । ତାଙ୍କର ଶିକ୍ଷା ପ୍ରାପ୍ତ ଗୌତମ ନାମକ ଜନୈକ ମୂର୍ତ୍ତି ଗଠନ ପ୍ରୟାସୀ ବ୍ୟକ୍ତି ରାଜ୍ୟରେ ବିଭିନ୍ନ ମୂର୍ତ୍ତି ଗଠନ କରି ନଗରୀର ଶୋଭାବର୍ଦ୍ଧନ କଲେ । ରାଜା ବାସୁଦେବଙ୍କର ଯେଉଁ ମାର୍ବଲ ପ୍ରସ୍ତର ମୂର୍ତ୍ତି ୟୁରୋପରୁ ଆନୀତ ହୋଇ ରାଜଭବନରେ ସ୍ଥାପିତ ହେଲା, ତାର ଅବିକଳ ପ୍ରତିମୂର୍ତ୍ତି ନିର୍ମାଣ କରି ରାଜୋଦ୍ୟାନରେ ଓ ଗୋବିନ୍ଦପୁର ଉଦ୍ୟାନରେ ପ୍ରତିଷ୍ଠିତ କଲେ । ଏତଦ୍‌ବ୍ୟତୀତ ପ୍ରଧାନପାଟ ପ୍ରପାତ ନିକଟରେ ଓ ରାଜୋଦ୍ୟାନରେ ଅନେକ ସୁନ୍ଦର ମୂର୍ତ୍ତି ଅଗାଧୁ ମହାରଣା, ଉପେନ୍ଦ୍ର ପତି ଓ ଗୌତମଙ୍କ ଦ୍ୱାରା ନିର୍ମିତ ଓ ପ୍ରତିଷ୍ଠିତ ହୋଇ ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିଲେ । ସର୍ବୋପରି ରାଜା ବାସୁଦେବ ସମଗ୍ର ରାଜଧାନୀ ନଗରୀକୁ ସର୍ବାଙ୍ଗସୁନ୍ଦର କରି ଗଢ଼ିତୋଳିବାରେ ସମ୍ପୂର୍ଣ୍ଣରୂପେ ଚେଷ୍ଟିତ ଥିଲେ । ତେଣୁ ରାଜଦ୍ୱାରର ଉଭୟ ପାର୍ଶ୍ୱରେ ଅଟ୍ଟାଳିକାମାନ ନିର୍ମାଣ କରି ତା ଉପରେ ବିଭିନ୍ନ ଚାରୁକଳାଶୋଭିତ ମୂର୍ତ୍ତିମାନ ସ୍ଥାପନ କରିଥିଲେ । ଏହା ତାଙ୍କର ସ୍ଥାପତ୍ୟ ତଥା ଭାସ୍କର୍ଯ୍ୟ କଳାପ୍ରିୟତାର ଶ୍ରେଷ୍ଠ ପରିଚାୟକ ।

## ନାଟ୍ୟକଳାର ବିକାଶ : (୧୮୭୯-୧୯୦୩)

ରାଜା ବାସୁଦେବ ଜଣେ ଉଚ୍ଚକୋଟୀର ରସିକ କବି । ଆଲଙ୍କାରିକ ଜ୍ଞାନ ତାଙ୍କର ପ୍ରଚୁର ଥିଲା । ଯେହେତୁ ନାଟକରେ ବିଭିନ୍ନ ରସ ସହଜରେ ପରିବେଷଣ ହୋଇ ଦର୍ଶକଙ୍କ ପ୍ରାଣକୁ ଆପ୍ୟାୟିତ କରେ, ତେଣୁ ନାଟକ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଥିଲା । ଏହି ସମୟରେ କୌଣସି ମଞ୍ଚର ବ୍ୟବହାର

ନ ଥିଲା । ଉନ୍ମୁକ୍ତ ପ୍ରାଙ୍ଗଣରେ ସର୍ବ ସମକ୍ଷରେ ନାଟକ ଅଭିନୀତ ହେଉଥିଲା । ଏସବୁ ଯାତ୍ରା (Opera) ଦଳର ଅନ୍ତର୍ଭୁକ୍ତ ଥିଲେ । ଦେବଗଡ଼ର ଯାତ୍ରାଦଳ (ନାଟକ ଦଳ) ଉତ୍ତାଙ୍ଗ ପରିବେଶରେ କଟକ ପ୍ରଭୃତି ସ୍ଥାନରେ ନାଟକ ପରିବେଷଣ କରି ସୁନାମ ଅର୍ଜନ କରିପାରିଥିଲେ । ଯାହା କି ବିଶିଷ୍ଟ ସାହିତ୍ୟିକ ଗିରିଜା ଶଙ୍କର ରାୟ ପ୍ରକାଶ କଲେ । "୧୯୦୬ ମସିହାରେ ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କ କାଳଗଣ୍ଡି ବସାଠାରେ ବାମଣ୍ଡାର ପ୍ରସିଦ୍ଧ 'ମାୟାଣବରୀ' ଯାତ୍ରା ଅନୁଷ୍ଠିତ ହୋଇଥିଲା । ଏହା ବ୍ୟତୀତ ଅନ୍ୟାନ୍ୟ ପର୍ବପର୍ବାଣି ଉପଲକ୍ଷେ ଯାତ୍ରାଭିନୟ ଏକ ପାରମ୍ପରିକ ଘଟଣା ଥିଲା ।" 'ସ୍ୱପ୍ନ', 'ଚନ୍ଦ୍ରଭାଗା' ପ୍ରଭୃତି ନାଟକ 'ରୁକ୍ମଣୀ ବିବାହ,' 'ହରିହରଭେଟ', 'ରଥଯାତ୍ରା', ରାମଲୀଳା' ପ୍ରଭୃତି ପର୍ବପର୍ବାଣୀ ବାମଣ୍ଡାର ସାଂସ୍କୃତିକ ପରମ୍ପରାକୁ ଉଚ୍ଚକୋଟୀର ପରିବେଶରେ ଗଢ଼ି ତୋଳିଥିଲା ।

## ପୁରୋହିତ ଶିକ୍ଷା ବ୍ୟବସ୍ଥା

ରାଜା ବାସୁଦେବ ବ୍ରାହ୍ମଣ ସମାଜର ଉନ୍ନତିକଳ୍ପେ ଦଶକର୍ମ ପଦ୍ଧତି ତଥା ସଂସ୍କାର ବିଧାନ ଶିକ୍ଷା ନିମନ୍ତେ ଅର୍ଥ ବିନିଯୋଗ ପୂର୍ବକ ସଂସ୍କୃତ ଶାସ୍ତ୍ରରେ ଶିକ୍ଷା ଗ୍ରହଣ ଓ ପରୀକ୍ଷା ପ୍ରଦାନ କଲେ । ଯେଉଁ ବିଦ୍ୟାର୍ଥୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ନ ହୁଅନ୍ତି ସେ ପୁରୋହିତ ରୂପେ ଗ୍ରହଣୀୟ ନୁହଁନ୍ତି । ଯେ କୌଣସି ବ୍ୟକ୍ତି ବିନା ନିମନ୍ତ୍ରଣରେ କୌଣସି ଗୃହସ୍ଥର ସାଂସ୍କୃତିକ କାର୍ଯ୍ୟରେ ଯୋଗଦାନରୁ ବଞ୍ଚିତ ହେଉଥିଲା । ରାଜାଦେଶଦ୍ୱାରା ବ୍ରାହ୍ମଣ ସମାଜରୁ ଅଜ୍ଞାନତା ଦୂରୀଭୂତ ହେଲା । ପରିମାର୍ଜିତ ରୁଚି ତଥା ରୀତିରେ ଯାବତୀୟ ସଂସ୍କାର କାର୍ଯ୍ୟ ସମ୍ପାଦନରେ ବ୍ରାହ୍ମଣମାନେ ଉଦ୍ୟତ ହେଲେ । ରାଜାଙ୍କର ଏହି ଆଦେଶ ବ୍ୟବସ୍ଥା ୧୮୯୮ ଏପ୍ରିଲ୍ ୧୩ ତାରିଖରେ ବ୍ରାହ୍ମଣ ସମାଜ ମଧ୍ୟରେ ପ୍ରଚଳିତ ହେଲା । ଏହା କାର୍ଯ୍ୟକାରୀ ହୋଇ ବ୍ରାହ୍ମଣ ସମାଜର ଅଶେଷ ହିତ ସାଧନରେ ରାଜା ବାସୁଦେବଙ୍କ ଉଦ୍ୟମ ସର୍ବଥା ପ୍ରଶଂସନୀୟ ।

## ରାଜା ବାସୁଦେବଙ୍କ ନଗର ନିର୍ମାଣ ପରିକଳ୍ପନା

ରାଜା ବାସୁଦେବ ପ୍ରାଚୀନ ସଂସ୍କାର ତଥା ପରମ୍ପରାର ପ୍ରଧାନ ପୃଷ୍ଠପୋଷକ ଥିଲେ । ତେଣୁ ନଗରରେ ନୂତନ ଧରଣର ଅଟ୍ଟାଳିକାମାନ ନିର୍ମିତ ହେଲେ ହେଁ ରାଜଭବନ ପ୍ରାଚୀନ ପଦ୍ଧତିରେ ସୁରକ୍ଷିତ ଥିଲା । ବହୁଦୂରବ୍ୟାପୀ ରାଜଭବନର ସମ୍ମୁଖ ଭାଗରେ ରାଜଦରବାର ଗୃହ ଯେଉଁଥିରେ ଦରବାର-କାଉନସିଲ୍ ଅଧିବେଶନ ଅନୁଷ୍ଠିତ ହୋଇଥାଏ ।

ରାଜା ବାସୁଦେବଙ୍କ ରାଜଗୃହ ନବରଙ୍ଗପୁର ପରିବେଶରେ ନିର୍ମିତ । ତାଙ୍କର ବାସଗୃହର ବାମ ପାର୍ଶ୍ୱରେ ଅମାତ୍ୟମାନଙ୍କର ଗୃହ । ପଶ୍ଚିମ ପାର୍ଶ୍ୱରେ ଏକ

ରାଜକୀୟ ପୁସ୍ତକାଗାର । ଏଥିରେ ରାଜା ସଂସ୍କୃତ ସାହିତ୍ୟପ୍ରୀତିର ନିଦର୍ଶନ ସ୍ୱରୂପ ବହୁ ଧର୍ମଗ୍ରନ୍ଥ, କାବ୍ୟ, ନାଟକ, ଦର୍ଶନ, ଜ୍ୟୋତିଷ ଶାସ୍ତ୍ରାଦି ସଞ୍ଚିତ କରି ରଖିଥାନ୍ତି । ତାଙ୍କର ପ୍ରକୋଷ୍ଠର ସମ୍ମୁଖଭାଗରେ ପ୍ରାଇଭେଟ ସେକ୍ରେଟେରୀ ଯୋଗେଶ ଚନ୍ଦ୍ର ଦାସଙ୍କ କାର୍ଯ୍ୟାଳୟ ।

ବାମ ଦିଗରେ ଦ୍ୱିତଳ ପ୍ରାସାଦର ନିମ୍ନଭାଗରେ ବୈଠକଖାନା । ତାର ପଶ୍ଚିମରେ ଅର୍ଥାତ ବାମ ପାର୍ଶ୍ୱରେ ପୂଜାମଣ୍ଡପ ।

ତ୍ରିତଳ ପ୍ରାସାଦର ସମ୍ମୁଖ ଭାଗରେ ଯୁଗଳ ବ୍ୟାଘ୍ର ମୂର୍ତ୍ତି ଦଣ୍ଡାୟମାନ । ଅସଂଖ୍ୟ ପ୍ରକୋଷ୍ଠରେ ରାଜ ପରିବାର ଚଳପ୍ରଚଳ ହୁଅନ୍ତି ।

ଭାରତୀୟ ସାମନ୍ତରାଜାଙ୍କ ରାଜ୍ୟାଭିଷେକ ସମୟରେ ଏକ ସ୍ୱତନ୍ତ୍ର ରାଜ ସିଂହାସନ ବ୍ୟବହୃତ ହୋଇଥାଏ । ରାଜଗୁରୁ, ରାଜପୁରୋହିତ, ରାଜବ୍ରହ୍ମାଙ୍କ ସମଭିବ୍ୟାହାରରେ ରାଜାଙ୍କର ଅଭିଷେକୋତ୍ସବ ପାଳିତ ହୋଇଥାଏ । ରାଜକର୍ମଚାରୀ-ବୃନ୍ଦ ଏ ସମୟରେ ସମ୍ବର୍ଦ୍ଧନା ଜ୍ଞାପନ କରିଥାନ୍ତି । ଦେବଗଡ଼ରେ ନୂତନ ସୌଧମାନ ନିର୍ମାଣ କରି ନଗରର ସୌଷ୍ଠବ ସମ୍ପାଦନ କଲେ । ରାଜଧାନୀ ଅତ୍ୟନ୍ତ ପରିଷ୍କାର ପରିଚ୍ଛନ୍ନ ଥିଲା । ସାଧାରଣ ପ୍ରଜାଙ୍କର ଅବସ୍ଥା ଭଲ ଥିଲା ।

ରାଜଭବନର ସମ୍ମୁଖର ଡାହାଣ ପାର୍ଶ୍ୱରେ ରାଜରାସ୍ତା ନିର୍ମିତ ହୋଇଥିଲା । ଦୁଇ ରାଜପଥର ମଧ୍ୟବର୍ତ୍ତୀ ସ୍ଥାନରେ ଦୁଇଟି କୃତ୍ରିମ ଅଗଭୀର ଜଳାଶୟ (ପରିଖା) । ଏହି ସମ୍ମୁଖ ରାଜପଥର ପାର୍ଶ୍ୱରେ ଚିକିତ୍ସାଳୟ, ବିଦ୍ୟାଳୟ, କ୍ଲବ୍‌ଗୃହ ନିର୍ମିତ । ବାମ ପାର୍ଶ୍ୱରେ ମୁଦ୍ରଣାଳୟ ଅବସ୍ଥିତ ଥିଲା । ରାଜଭବନ ନିକଟରେ ଏସବୁର ଅବସ୍ଥିତି ତାଙ୍କର ଉଚ୍ଚକୋଟୀର ସାଂସ୍କୃତିକ ପରମ୍ପରାପ୍ରୀତିର ପରିଚାୟକ । ଏହି ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ ରାଜା ବାସୁଦେବଙ୍କର ନଗରନିର୍ମାଣ ପରିକଳ୍ପନା (Town Planning) ଅତ୍ୟନ୍ତ ଆଦର୍ଶସ୍ଥାନୀୟ ତେଣୁ Administration Report 1892 ଅନୁସାରେ "If I add that the street and surroundings of the town are kept strictly clean. It will be realised how much the Raja has done to improve his Capital. × ×

Deogarh itself though situated in the very midst of hills and forest, has all the appearance of an advanced town. Fine handsome massionary buildings have been provided for a school, Police-station and quarter guard. There is a large Printing

Press housed in a fine building" ତେଣୁ ଏଥିରୁ ଜଣାଯାଏ ଯେ ରାଜା ବାସୁଦେବଙ୍କ ନଗର ନିର୍ମାଣ ପରିକଳ୍ପନା ଉନ୍ନତ ଧରଣର ହେତୁ ରାଜଧାନୀ ଦେବଗଡ଼ ଉପତ୍ୟକା ପରିବେଷ୍ଟିତ ଏକ ରମଣୀୟ ମନୋଜ୍ଞ ପରିବେଶ (Beautiful Landscape) ସଦୃଶ ଶୋଭା ପାଉଥିଲା ।

ରାଜକୁମାର ହାଇସ୍କୁଲର ଶିକ୍ଷକ ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର ଭାଷାରେ, (୧୮୮୮)

"ଦେଖିଲି ବାମଣ୍ଡା ରାଜଧାନୀ ଶୋଭା
ଯା ଛବି ଦର୍ଶନେ ଜନମନ ଲୋଭା ।"

ଉକ୍ତିଟି ଯଥାର୍ଥ ବୋଲି ପ୍ରତୀୟମାନ ହୋଇଥାଏ ।

## ସମ୍ବାଦ ସରବରାହ ବ୍ୟବସ୍ଥା ଓ ରାଜା ବାସୁଦେବ

### (i) ଡାକ ବିଭାଗ ପ୍ରତିଷ୍ଠା ଓ ତାର ପ୍ରଭାବ (Postal Department)

ରାଜା ବାସୁଦେବ ବାମଣ୍ଡାରେ ଆଶୁ ସମ୍ବାଦ ସରବରାହ ନିମନ୍ତେ 'ଡାକ ବିଭାଗ' ପ୍ରତିଷ୍ଠା କରି ଏକ ଅଭୂତପୂର୍ବ ସାଂସ୍କୃତିକ ବିକାଶ ସାଧନ କଲେ । ରାଜଧାନୀ ଦେବଗଡ଼ରେ ଏହା ସ୍ୱତନ୍ତ୍ରଭାବେ କାର୍ଯ୍ୟ କଲା । ଆଉ କେତେକ ସ୍ଥାନରେ ଶାଖା ଅଫିସ ଖୋଲିଲା । ଡାକ ପର୍ଯ୍ୟାୟରେ ସ୍ୱତନ୍ତ୍ର ଡାକଟିକଟ ବ୍ୟବହୃତ ହେଉଥିଲା । ଏଥିରେ ଦୁଇପ୍ରକାର 'stamp' ବ୍ୟବହୃତ ହେଉଥିଲା । ଯଥା : ରାଜ୍ୟ ମଧ୍ୟରେ ଅଧା ଅଣା ଓ ରାଜ୍ୟ ବାହାରେ ଏକ ଅଣା ଡାକ ଟିକଟ ବ୍ୟବହୃତ ହେଉଥିଲା । ଏହା କେତେକାଂଶରେ ଆର୍ଥିକ ଆୟରେ ସହାୟକ ହେଲା । ମାତ୍ର କେତେକ ଅସୁବିଧା ସୃଷ୍ଟି ହେବାରୁ ୧୮୯୫ ଜାନୁୟାରୀ ପହିଲାରୁ ଭାରତ ସରକାରଙ୍କ କର୍ତ୍ତୃତ୍ୱାଧୀନ ହେଲା । ତେଣୁ ପ୍ରଶାସନ ବିବରଣୀ ୧୮୯୩ରୁ ଯାହା ଜଣାଯାଏ, The Raja has hitherto kept the postal management within his state, entirely in his own hands, although the question of introducing him to consent the amalgamation of the system wirh the 'Imperial Post Office', has sometime passed under decision. The authorities of tne Imperial Post office Depart- are now prepared to takeover the arrangement undertaking to afford the same postal facilities and

conveniences to the public of Bamra Station British India and at the same time assuring the Raja that he will, at no time, be called upon to contribute towards the cost.'

The Negotiation with the Raja of Bamra for amalgamation of his local postal system with that of the Government of India were brought to happy conclusion and the new arrangements have been introdused with effect from 1st January 1895."

(Administration Report 1894)

(ii) ଟେଲିଫୋନ ବ୍ୟବସ୍ଥା

ବାମଣ୍ଡାରେ ଏହା ଏ ସମୟରେ ଏକ ଅଭୂତପୂର୍ବ ଘଟଣା । ସମ୍ବାଦ ସରବରାହ ସଂସ୍ଥାକୁ ରୂପାୟିତ କରିବା ସଙ୍ଗେ ସଙ୍ଗେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ସହଜରେ ଶୀଘ୍ର ସମ୍ବାଦ ପ୍ରେରଣ ଅଭିପ୍ରାୟରେ 'ଟେଲିଫୋନ' ବ୍ୟବସ୍ଥା ପ୍ରଚଳନ ରାଜା ବାସୁଦେବ ଏକ ଉଚ୍ଚକୋଟିର ସାଂସ୍କୃତିକ ପଦକ୍ଷେପ । ଏପ୍ରକାର ବଳିଷ୍ଠ ପଦକ୍ଷେପ 'ଟେଲିଫୋନ' ଉଦ୍ଭାବିତ ହେବାର ମାତ୍ର ୨୦ ବର୍ଷ ପରେ ଅରଣ୍ୟ ପରିବେଷ୍ଟିତ ରାଜଧାନୀ ଦେବଗଡ଼ର ସନ୍ନିକଟବର୍ତ୍ତୀ ଅଞ୍ଚଳ ମଧ୍ୟରେ ପ୍ରତିଷ୍ଠିତ ହେତୁ ଏହା ସମଗ୍ର ଭାରତରେ ମହତ୍ତ୍ୱ ବୃଦ୍ଧି କଲା । ଯଦିଓ ଏହା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ଏଥିପାଇଁ ଭାରତ ସରକାରଙ୍କ ସଙ୍ଗେ କଷ୍ଟ ସ୍ୱୀକାରପୂର୍ବକ ବହୁ ପତ୍ରାଳାପ କରିବାକୁ ପଡ଼ିଲା । ଭାରତ ସରକାର ୨୦ ବର୍ଷ ପାଇଁ ସର୍ତ୍ତ କରିବାରୁ ଏଥିରୁ କ୍ଷାନ୍ତ ହୋଇ ସ୍ୱତନ୍ତ୍ରଭାବେ ଏହାର ବ୍ୟବସ୍ଥା କଲେ । ପ୍ରଥମେ ୧୯୦୦ ଖ୍ରୀ. ରେ ବାମରା ଷ୍ଟେସନରୁ କୁଚିଣ୍ଡା ଦେଇ ଦେବଗଡ଼ ତଥା ବାରକୋଟ ପର୍ଯ୍ୟନ୍ତ ୭୮ ମାଇଲ ଟେଲିଫୋନ ବ୍ୟବସ୍ଥାର ଆରମ୍ଭ କରି ୧୯୦୧ ଖ୍ରୀ.ରେ କାର୍ଯ୍ୟଶେଷ କଲେ । କାରଣ ବାମରା, କୁଚିଣ୍ଡା, ଦେବଗଡ଼ ଓ ବାରକୋଟ—ଚାରୋଟି ପ୍ରଶାସନିକ କେନ୍ଦ୍ରକୁ ଏକତ୍ର ସଂଯୋଗ କରି ପ୍ରଶାସନିକ କାର୍ଯ୍ୟଦକ୍ଷତା ତଥା ନିରାପତ୍ତା ବୃଦ୍ଧି ଏହାର ମୌଳିକ ଲକ୍ଷ୍ୟ ଥିଲା । ପ୍ରକାଶଯୋଗ୍ୟ ଯେ ଏ ସମୟରେ ବାମଣ୍ଡା ଓ କୁଚିଣ୍ଡା ତହସିଲ ମଧ୍ୟରେ ତଥା କେରେଇ ବାହାଲ ଓ ମହୁଲପାଲି ଅଞ୍ଚଳରେ ବାରମ୍ବାର ଦସ୍ୟୁ ଉପଦ୍ରବ ଲାଗିଥିଲା । ତେଣୁ ଏସବୁ ଅଞ୍ଚଳର ନିରାପତ୍ତା ଦୃଷ୍ଟିରୁ ଶୀଘ୍ର ସମ୍ବାଦ ଗ୍ରହଣ ଓ ପ୍ରତିକାର ବିଧାନରେ ମଧ୍ୟ ଏହା ବିଶେଷରୂପେ ସହାୟକ ହେଲା ।

ତେଣୁ ସାଂସ୍କୃତିକ ଭିତ୍ତିଭୂମିରେ ଏହା ଏକ ବିଶିଷ୍ଟ ଭୂମିକା ଗ୍ରହଣ କଲା ।

## (iii) ବାମଣ୍ଡା ରାଜ୍ୟରେ ଗମନାଗମନର ବିକାଶ

ରାଜା ବାସୁଦେବଙ୍କ ରାଜତ୍ୱ ପୂର୍ବରୁ ରାଜ୍ୟରୁ ପାର୍ଶ୍ୱବର୍ତ୍ତୀ ରାଜ୍ୟକୁ ଗମନାଗମନ ନିମିତ୍ତ ଉପଯୁକ୍ତ ରାସ୍ତା ନଥିଲା । ଅନ୍ୟତ୍ର କୌଣସି ସ୍ଥାନକୁ ଯିବାକୁ ହେଲେ ପାର୍ବତ୍ୟ ପ୍ରଦେଶରେ ହସ୍ତୀ ପୃଷ୍ଠରେ ହିଂସ୍ରଜନ୍ତୁ ଶ୍ୱାପଦସଙ୍କୁଳ ପରିବେଶ ମଧ୍ୟରେ ଗତି କରିବାକୁ ପଡୁଥିଲା । ଅନିର୍ଦ୍ଦିଷ୍ଟ ପଥରେ ଯାତାୟତ କରିବାରେ ଯାତ୍ରୀଙ୍କୁ ବହୁ କ୍ଲେଶ ତଥା ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ତେଣୁ ଏହି ଅଭାବ ରାଜ୍ୟର ବାଣିଜ୍ୟ ବ୍ୟବସାୟ ତଥା ଆର୍ଥିକ ଉନ୍ନତିର ଅନ୍ତରାୟ ବୋଲି ରାଜା ବାସୁଦେବ ଉପଲବ୍ଧି କଲେ । ତେଣୁ ସେ ନିଜେ ରାଜକୋଷରୁ ଅର୍ଥ ବ୍ୟୟ କରି ନିଜର ଉପସ୍ଥିତିରେ ବିଭିନ୍ନ ରାସ୍ତା ନିର୍ମାଣରେ ଅଗ୍ରସର ହେଲେ । ଫଳତଃ ନିଜେ ଇଞ୍ଜିନିୟର ସଦୃଶ ଯୋଜନା (Plan) ପ୍ରସ୍ତୁତ କରି ନିମ୍ନତମ ବ୍ୟୟରେ ଅଧିକ ରାସ୍ତା ନିର୍ମାଣ କରିବାରେ ସମର୍ଥ ହେଲେ । କହିବା ବାହୁଲ୍ୟ ଯେ ରାଜା ବାସୁଦେବ ନିଜେ କାୟିକ ଓ ମାନସିକ ଶ୍ରମଦାନ ପୂର୍ବକ ରାସ୍ତାମାନ ନିର୍ମାଣ କରି ରାଜ୍ୟର ପ୍ରଭୂତ ଉପକାର ସାଧନ କରିଅଛନ୍ତି । ତେଣୁ ରାଜଧାନୀ ଦେବଗଡ଼ରୁ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଚତୁର୍ଦ୍ଦିଗରେ ରାଜପଥସବୁ ନିର୍ମିତ ହେଲା । ଅନ୍ୟ ରାଜ୍ୟ ସହିତ ସମ୍ବନ୍ଧ ସ୍ଥାପନ ଏ ପ୍ରକାର ରାଜପଥ ନିର୍ମାଣର ଅନ୍ୟ ଏକ ଉଦ୍ଦେଶ୍ୟ । ତେଣୁ ବଣାଇ, ପାଲଲହଡ଼ା, ରେଢ଼ାଖୋଲ, ତାଳଚେର, ଗାଙ୍ଗପୁର ବାମଡ଼ା (ଗୋବିନ୍ଦପୁର), ସମ୍ବଲପୁର ସହିତ ସଂଯୋଗ ସ୍ଥାପନ ପୂର୍ବକ ରାଜପଥ ନିର୍ମାଣରେ କେତେ ପାହାଡ଼, ପର୍ବତ, ବନଭୂମି କାଟି ପରିଷ୍କାର କରି ଆଧୁନିକ ରୁଚି ସମ୍ପନ୍ନ ରାସ୍ତା ନିର୍ମାଣରେ ପ୍ରବୃତ୍ତ ହେଲେ ତାର କଳନା ନାହିଁ । କେତେ ଯେ କୁଲି ମଜୁରିଆ ଅନ୍ୟ ରାଜ୍ୟରୁ ଆସି ଏଥିରେ କାର୍ଯ୍ୟକରି ଅନ୍ନସଂସ୍ଥାନ କରିଛନ୍ତି ତାର ହିସାବ ନାହିଁ ୧୮୯୧ ମସିହା ଆଡ଼କୁ ।

ଏ ସମ୍ପର୍କରେ ହାବଭାବ Administration Report 1891 ଜଣାପଡ଼େ ।

'During the Construction of the road connecting Deogarh, the chief town of the state, with the Bengal Nagpur Railway, which passes through the Tahsil Headquarters of Kochinda, has been pushed on with Vigour. Near kochinda there is a very difficult ghat and this now has been made practicable for wheeled traffic by a really skillful piece of engineering, directed and supervised by Raja

himself, who spent three weeks in the camp at this place at a very unhealthy season of the year.

Raja Sudhal Deo sets a most excellent example to the other garjat chiefs and instead of leaving the business of governing his state to others, he sees himself to every branch of its administration. The consequence is that all institutions are well managed and are thriving.

ରାଜା ବାସୁଦେବ ନିଜେ ସମସ୍ତ ବିଷୟ ବ୍ୟକ୍ତିଗତଭାବେ ତତ୍ତ୍ୱ ନିଅନ୍ତି ତେଣୁ ତାହା ସୁପରିଚାଳିତ ଓ ଉଚ୍ଚ ଫଳପ୍ରଦ ହୋଇଥାଏ । ଏହି ରାଜପଥ ନିର୍ମାଣ ତଥା ଗମନାଗମନର ସୁବନ୍ଦୋବସ୍ତ ତଥା ସୁବ୍ୟବସ୍ଥା ସମ୍ପାଦନ ଏହାର ଜ୍ୱଳନ୍ତ ଉଦାହରଣ ।

(iv) ରାଜ୍ୟରେ ଜଳ-ଯୋଗାଣ ବ୍ୟବସ୍ଥା ସମ୍ପାଦନ

ରାଜା ବାସୁଦେବ ରାଜ୍ୟରେ ଜଳ ଯୋଗାଣ-ବ୍ୟବସ୍ଥା ସମ୍ପାଦନରେ ଗଭୀର ମନୋନିବେଶ କଲେ । ବାମଣ୍ଡା ରାଜଧାନୀ ଦେବଗଡ଼ର ଉତ୍ତର ଦିଗରେ ଅନତିଦୂରରେ ପର୍ବତମାଳା ବକ୍ଷରେ ଏକ ସୁଶୋଭନ ପ୍ରପାତ ବିଦ୍ୟମାନ ତାର ନାମ 'ପ୍ରଧାନପାଟ' । ତାର ସ୍ୱଚ୍ଛ ଜଳଧାରା ଭୂପତିତ ହୋଇ ବର୍ଷସାରା ଏକ ସ୍ରୋତାକାରରେ ପ୍ରବାହିତ ହୋଇଥାଏ । ଏହି ପ୍ରବାହିତ ଜଳରାଶି ନଗରବାସୀଙ୍କ ସଦ୍‌ବ୍ୟବହାର ପାଇଁ ଏକ ସ୍ୱତନ୍ତ୍ର ପ୍ରଣାଳୀ ପ୍ରସ୍ତୁତ କରିଥିଲେ । କଳ (Pipe)ର ବ୍ୟବସ୍ଥା କରି ଜଳାଭାବ ଦୂରକଲେ । ତା ପୂର୍ବେ କେବଳ କେତେକ କୂପ ଓ ପୁଷ୍କରିଣୀ ରାଜା ବ୍ରଜସୁନ୍ଦରଙ୍କ ରାଜତ୍ୱ ସମୟରେ ଖୋଳାଯାଇଥିଲା । ତାହା ସହରବାସୀଙ୍କ ବ୍ୟବହାର ପାଇଁ ଯଥେଷ୍ଟ ନଥିଲା । ତେଣୁ ଜଳାଭାବ ଦୂର କରିବା ପାଇଁ ଏ ପ୍ରକାର ବ୍ୟବସ୍ଥା ଅତ୍ୟନ୍ତ ସୁବିଧାଜନକ ହେଲା । ତେଣୁ Administration Report (1892) ପ୍ରକାଶ କଲେ । There is an excellent water supply brought from the hills in a masionary channel."

ରାଜା ବାସୁଦେବ ପଲ୍ଲୀ ଅଞ୍ଚଳରେ ଜଳାଭାବଜନିତ କ୍ଲେଶ ଦୂର କରିବା ପାଇଁ ପାର୍ବତ୍ୟ ନଦୀର ସ୍ରୋତକୁ 'ବନ୍ଧ' ଆକାରରେ ଆବଦ୍ଧ କରି ଜଳାଶୟ ନିର୍ମାଣ କଲେ । 'ବଳମ୍' ଗ୍ରାମର ଜଳାଶୟ ଏହାର ଶ୍ରେଷ୍ଠ ଦୃଷ୍ଟାନ୍ତ । ଏହି ବୃହତ୍

ଜଳାଶୟ ଦ୍ୱାରା ଉକ୍ତ ଗ୍ରାମରେ ଏକ ଆଦର୍ଶ କୃଷିକ୍ଷେତ୍ର ନିର୍ମିତ ହୋଇ ବର୍ଷସାରା ଯାବତୀୟ ଶସ୍ୟ ଉତ୍ପାଦନ ସମ୍ଭବପର ହୋଇପାରିଥିଲା ।

ଏତଦ୍‌ବ୍ୟତୀତ ବଲମ୍ ଗ୍ରାମର ଅନତିଦୂରରେ 'କଲାଙ୍କରା' ନାମକ ଏକ ପାର୍ବତ୍ୟ ନଦୀ ପ୍ରବାହିତ । ଏହି ନଦୀର ଜଳକୁ ଜଳାଶୟରେ ପରିଣତ କରି ତାର ଜଳପ୍ରବାହକୁ ନିୟନ୍ତ୍ରଣ କରିବା ପାଇଁ ବୈଜ୍ଞାନିକ ପଦ୍ଧତିରେ ଏକ କ୍ଷୁଦ୍ର ବନ୍ଧ ନିର୍ମିତ ହୋଇ କାର୍ଯ୍ୟକାରୀ ହେଲା । ଯଦିଓ ରାଜା ଜଣେ ଇଞ୍ଜିନିୟର ନଥିଲେ ମାତ୍ର ତାଙ୍କର ଏ ପ୍ରକାର ପରାମର୍ଶ ତଥା ପରିକଳ୍ପନା ଅତ୍ୟନ୍ତ ଆଦର୍ଶସ୍ଥାନୀୟ । ସ୍ୱୀୟ ବୁଦ୍ଧି ବଳରେ ଯୋଜନା (Plan) ପ୍ରସ୍ତୁତ କରି କୃଷିର ଉନ୍ନତି କଲେ। ଏ ପ୍ରକାର ଜଳଯୋଜନା ବ୍ୟବସ୍ଥା ସେ ସମୟରେ ସମ୍ପୂର୍ଣ୍ଣ ଅଭିନବ ।

ବଲମ୍‌ର କୃଷିକ୍ଷେତ୍ର ପାଇଁ ଜଳାଭାବ ଗ୍ରୀଷ୍ମକାଳରେ ନିବାରଣ ପାଇଁ ଅନତି ଦୂରରେ ପ୍ରବାହିତ ଖରସ୍ରୋତା 'ମରୁଆଳ' ନଦୀରୁ ଆନିକଟ ଦ୍ୱାରା ଜଳ ନିୟନ୍ତ୍ରଣ ବ୍ୟବସ୍ଥା କଲେ । ଉଚ୍ଚ ଭୂମିରେ ବହୁ ପୟଃପ୍ରଣାଳୀ ନିର୍ମାଣକରି ଜଳପ୍ରବାହ ଦ୍ୱାରା ଶସ୍ୟ କ୍ଷେତ୍ରରେ ଜଳାଭାବ ଦୂର କଲେ । ଫଳତଃ ବହୁବିଧ ଶସ୍ୟ ଉତ୍ପାଦିତ ହୋଇ ରାଜ୍ୟର ଆର୍ଥିକ ଉନ୍ନତି ବିଧାନ କଲା ।

## (୪) କୃଷିର ଉନ୍ନତିରେ ବଲମ୍ କୃଷିକ୍ଷେତ୍ରର ଭୂମିକା

ବଲମ୍‌ର ବହୁ ଏକର ପରିମିତ ଜମିରେ ଜଳସେଚନର ସୁବ୍ୟବସ୍ଥା ହେତୁ ବହୁ ଶସ୍ୟ ତଥା ଧାନ, ଗହମ, ଆଖୁ, ରାଶି, ସୋରିଷ, ଚଣା, ବୁଟ, ମଟର, ମକା ପ୍ରଭୃତି ଖରିଫ ଓ ରବି ଜାତୀୟ ଫସଲ ଉତ୍ପନ୍ନ ହେଲା । ରାଜା ବାସୁଦେବ ଥିଲେ ଅତ୍ୟନ୍ତ ଆମ୍ରପ୍ରିୟ । ବିଭିନ୍ନ ରାଜ୍ୟରୁ ଆମ୍ବଗଛ ଆଣି ରାଜ୍ୟର ବିଭିନ୍ନ ସ୍ଥାନରେ ରୋପଣ କଲେ । ବଲମ୍‌ରେ ଏକ ଉଦ୍ୟାନ ନିର୍ମାଣ କଲେ । ଏହି ଉଦ୍ୟାନରେ ଲିଚୁ, ଆମ୍ବ, ଜାମ୍ବୁ, ଗୋଲପଜାମ୍ବୁ, ଲେମ୍ବୁ, କମଳା, ସପୁରି, ପଣସ ପ୍ରଭୃତି ବିବିଧ ଫଳ ବୃକ୍ଷ ଶୋଭାପାଉଥିଲେ ।

ରାଜା ବାସୁଦେବ ରାଜ୍ୟର ଆର୍ଥିକ ଅବସ୍ଥାର ଉନ୍ନତି କଲେ। ବଲମ୍‌ର ଯେଉଁ ସ୍ଥାନରେ କୃଷିକ୍ଷେତ୍ର ନିର୍ମାଣ କଲେ ତାହା ପୂର୍ବେ ଏକ ସୁବୃହତ ପ୍ରାନ୍ତରମାତ୍ର ଥିଲା । ସେଠାରେ ଜନବସତି ସ୍ଥାପନ କରି ସକଳ ଦିଗରେ ଉନ୍ନତିବିଧାନ ନିମିତ୍ତ ପଥ ସୁଗମ କଲେ । ରାଜକର୍ମଚାରୀମାନଙ୍କ ପାଇଁ ବାସସ୍ଥାନ ନିର୍ମିତ ହେଲା । ଉତ୍ପନ୍ନ ଶସ୍ୟାଦି ରହିବାର ସୁରକ୍ଷା ନିମିତ୍ତ ଶସ୍ୟାଗାର 'ଖମାର' ଓ ଉଚ୍ଚ ପାହାଡ଼ ଉପରେ ରାଜାଙ୍କର ଗ୍ରୀଷ୍ମନିବାସ ନିର୍ମିତ ହେଲା । ଶସ୍ୟାଗାରରୁ ଯଥା ସମୟରେ ଶସ୍ୟାଦି ଅନ୍ୟାନ୍ୟ ପ୍ରେରିତ ହେଉଥିଲା । ଏକ କରତକଳ ପ୍ରତିଷ୍ଠା ଓ ତଦ୍ଦ୍ୱାରେ କାଷ୍ଠ କର୍ତ୍ତନ ଓ

ବିଭିନ୍ନ ସ୍ଥାନକୁ ପ୍ରେରଣ ଦ୍ୱାରା ବ୍ୟବସାୟ କ୍ଷେତ୍ରରେ ଅର୍ଥାଗମର ପଥ ଉଜ୍ଜ୍ୱଳ ହେଲା । ସର୍ବୋପରି କୃଷି ଓ ବାଣିଜ୍ୟ କ୍ଷେତ୍ରରେ ବାମଣ୍ଡାର ଐଶ୍ୱର୍ଯ୍ୟ ସମ୍ପଦର ଅଭିବୃଦ୍ଧିରେ 'ବଲମ୍'ର ଭୂମିକା ଅତ୍ୟନ୍ତ ଆଦର୍ଶସ୍ଥାନୀୟ ଥିଲା ।

'ଚିନିକଳ'ଦ୍ୱାରା ଉତ୍ପନ୍ନ ପ୍ରଚୁର ଆଖୁରସରୁ ଗୁଡ଼ ଓ ଚିନି ପ୍ରସ୍ତୁତ ହୋଇ ରପ୍ତାନି ହେଲା । ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ବାମଣ୍ଡାର ଅନ୍ୟ ଏକ ସ୍ଥାନ 'ରମ୍ଭାଇ'ରେ କୃଷିକ୍ଷେତ୍ର ପ୍ରସ୍ତୁତ ହେଲା । ତହିଁରେ କେବଳ ଧାନ ଓ ଆଖୁ ଚାଷ ହେଉଥିଲା ।

ଏହି ପରିପ୍ରେକ୍ଷୀରେ ବାମଣ୍ଡାର ଜନସାଧାରଣ ଉନ୍ନତ କୃଷି ପ୍ରଣାଳୀଦ୍ୱାରା ବିଶେଷ ଉପକୃତ ହେଲେ ।

## (vi) ରାଜ୍ୟରେ ଉପଯୁକ୍ତ ଚିକିତ୍ସା-ବ୍ୟବସ୍ଥା

ରାଜା ବାସୁଦେବ ରାଜତ୍ୱ କାଳରେ ୧୮୮୩ ଖ୍ରୀ.ରେ ପ୍ରଜାସାଧାରଣଙ୍କ ହିତକଳ୍ପେ ଉପଯୁକ୍ତ ଚିକିତ୍ସା ବ୍ୟବସ୍ଥା ପ୍ରଦାନପୂର୍ବକ ବିଭିନ୍ନ ରୋଗ ଯନ୍ତ୍ରଣା ତଥା ମୃତ୍ୟୁରୁ ଉଦ୍ଧାର କରିବା ନିମିତ୍ତ ଏକ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା କରି ଅକ୍ଷୟ ଯଶର ଅଧିକାରୀ ହେଲେ । ସର୍ବପ୍ରଥମେ ଚିକିତ୍ସକ ଡ. ନାରାୟଣ ପ୍ରସାଦ ଦେବଙ୍କୁ ଏହାର ଦାୟିତ୍ୱ ପ୍ରଦାନ କରାଯାଇଥିଲା । ପରେ ପରେ କୁଚିଣ୍ଡାରେ ମଧ୍ୟ ଏ ପ୍ରକାର ଚିକିତ୍ସାଳୟ ପ୍ରତିଷ୍ଠାପୂର୍ବକ ପ୍ରଶଂସାଭାଜନ ହେଲେ । ଏସବୁ ତାଙ୍କ ରାଜତ୍ୱ କାଳରେ ଅଭିନବ ପଦକ୍ଷେପ ହେଉ ବିଶିଷ୍ଟ କୀର୍ତ୍ତି ।

## (vii) ରାଜ୍ୟରେ ସର୍ବପ୍ରଥମେ ମଟରଗାଡ଼ିର ବ୍ୟବହାର

ରାଜା ବାସୁଦେବଙ୍କ ସମୟରେ ୧୯୦୧ ଖ୍ରୀ. ପର୍ଯ୍ୟନ୍ତ ବାମଣ୍ଡାରେ ମଟରଗାଡ଼ିର ବ୍ୟବହାର ନଥିଲା । ଶଗଡ଼ ଗାଡ଼ି, ପାଲିଙ୍କି, ହସ୍ତୀ ଆଦିର ବ୍ୟବହାର ଥିଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ରାଜା ବାସୁଦେବ ଯନ୍ତ୍ରକଳରେ ଅଧିକାଂଶ କାର୍ଯ୍ୟ ତଦାରଖ କରି ଆନନ୍ଦଲାଭ କରୁଥିଲେ । ଯନ୍ତ୍ରୀ (ଇଞ୍ଜିନିୟର) ସଦୃଶ ବନ୍ଧ ରାସ୍ତା ନିର୍ମାଣ କରି ରାଜଧାନୀରୁ ବାହାରକୁ ଗମନାଗମନର ସୁବିଧା କରିପାରିଥିଲେ ।

ସହଜରେ ଶୀଘ୍ର ପ୍ରଶାସନିକ କାର୍ଯ୍ୟସାଧନ ପାଇଁ ବହୁ ଅର୍ଥ ବ୍ୟୟରେ ୧୯୦୩ ଖ୍ରୀ.ରେ ପ୍ରଥମେ ମଟରଗାଡ଼ି କ୍ରୟ କରି ବାମଣ୍ଡାରେ ପ୍ରଚଳନପୂର୍ବକ ନୂତନ ଆଦର୍ଶ ପ୍ରତିଷ୍ଠା କଲେ ।

## ବାମଣ୍ଡା ରାଜଧାନୀ ଦେବଗଡ଼ରେ ଗୃହପାଳିତ ପଶୁଙ୍କ ରକ୍ଷଣାବେକ୍ଷଣ ବ୍ୟବସ୍ଥା

### (viii) ହସ୍ତୀଶାଳା ନିର୍ମାଣ

ରାଜା ବାସୁଦେବ ମୃଗୟା ପ୍ରିୟ ଥିଲେ । ଅରଣ୍ୟରୁ ବନ୍ୟ ହସ୍ତୀ ଧରିଆଣି ରାଜଧାନୀ ଦେବଗଡ଼ରେ 'ହସ୍ତୀଶାଳା' ନିର୍ମାଣ କରି ତହିଁରେ ପାଳନ କଲେ । ପକ୍‌କା ଗୃହରେ ରଖି ଖାଦ୍ୟପେୟାଦିର ବ୍ୟବସ୍ଥା କରୁଥିଲେ । ସେମାନେ ପୋଷାମାନି ନାନା ଇଙ୍ଗିତ ପ୍ରଦାନ କରୁଥିଲେ ଯାହାକି ରାଜାଙ୍କ ମନରେ ଆନନ୍ଦର ଉଦ୍ରେକ କରୁଥିଲା । ହସ୍ତୀର ଦନ୍ତ ଅତ୍ୟନ୍ତ ମୂଲ୍ୟବାନ । ତହିଁରେ ନିର୍ମିତ ବିଭିନ୍ନ ଦ୍ରବ୍ୟ ସୁଲଭ ମୂଲ୍ୟରେ ବିକ୍ରୟ ହେଉଥିଲା ।

### ଅଶ୍ୱଶାଳା ନିର୍ମାଣ

ରାଜଧାନୀ ଦେବଗଡ଼ର ମଧ୍ୟ ଭାଗରେ ପକ୍‌କା ଗୃହ ନିର୍ମାଣ କରି ବହୁ ବର୍ଣ୍ଣ ଓ ବହୁବିଧ ଅଶ୍ୱପାଳନରେ ବ୍ରତୀ ଥିଲେ । ମୃଗୟା କାଳରେ ହସ୍ତୀ, ଅଶ୍ୱ ଆଦି ବ୍ୟବହୃତ ହେଉଥିଲେ । ରାଜକୁମାରଗଣଙ୍କୁ ଅଶ୍ୱଚାଳନା ଶିକ୍ଷା ପ୍ରଦାନ କରାଯାଉଥିଲା । ତେଣୁ ଏହାର ସଂସ୍କାର ଆଦର୍ଶସ୍ଥାନୀୟ ଥିଲା ।

### ଗୋଶାଳା ନିର୍ମାଣ

ସେ ଭାଗଲପୁର ପ୍ରଭୃତି ଅଞ୍ଚଳରୁ ଉପଯୁକ୍ତ ଗାଈ ବିଦେଶରୁ ଆଣି ସେମାନଙ୍କୁ ପକ୍‌କାଗୃହରେ ରଖି ଯତ୍ନ ନେଲେ । 'ଗୋଶାଳା' ନିର୍ମିତ ହେଲା

ରାଜଧାନୀ ଦେବଗଡ଼ର ଅନତିଦୂରରେ । ଗୋ ବଂଶର ବୃଦ୍ଧି ସଙ୍ଗେ ସଙ୍ଗେ ମନୋରମ ଆଦି ଉତ୍ପାଦନପୂର୍ବକ ବ୍ୟବସାୟିକ ଭିତ୍ତିରେ ଅର୍ଥାଗମ ଏହାର ଅନ୍ୟଏକ ଲକ୍ଷ ଥିଲା । କୃଷିକାର୍ଯ୍ୟ ନିମିତ୍ତ ଉପଯୁକ୍ତ ଉନ୍ନତ ଧରଣର ବଳଦ ଉତ୍ପାଦନ ମଧ୍ୟ ଅନ୍ୟଏକ ଏହାର ପ୍ରଧାନ ଉଦ୍ଦେଶ୍ୟ ।

ରାଜା ବାସୁଦେବ ଏପ୍ରକାର ସର୍ବବିଧ ବ୍ୟବସ୍ଥାରେ ମନୋନିବେଶପୂର୍ବକ ବାମଣ୍ଡାରେ ଏକ ଉଚ୍ଚକୋଟୀର ସାଂସ୍କୃତିକ ଭିତ୍ତିଭୂମି ପ୍ରତିଷ୍ଠା କରି ପ୍ରଶାସନ କ୍ଷେତ୍ରରେ ସୁନାମ ଅର୍ଜନ କରିପାରିଥିଲେ—ଏଥିରେ ଅତ୍ୟୁକ୍ତି ନାହିଁ ।

## (ix) ବାମଣ୍ଡାରେ ସାଂସ୍କୃତିକ ପରମ୍ପରାର ନିର୍ଯ୍ୟାସ—ବିଭିନ୍ନ ପର୍ବପର୍ବାଣି ପାଳନ

ରାଜା ବାସୁଦେବ ସୁଦଳଦେବ ହିନ୍ଦୁ ରାଜା ଥିଲେହେଁ ସର୍ବଧର୍ମ ସମନ୍ୱୟ ଭାବ ପୋଷଣ କରିଥିଲେ । ସେ ବୈଷ୍ଣବ ଥିଲେ ତଥାପି ଶାକ୍ତ ସଦୃଶ ରାଜବାଟୀରେ 'କାଳି'ମୂର୍ତ୍ତି ରଖି ପୂଜା କରୁଥିଲେ । ପ୍ରତିବର୍ଷ ଆଶ୍ୱିନ ମାସରେ ଦିନରାତି ମହା ନିଷ୍ଠାରେ ଚଣ୍ଡୀପାଠ, ବଳିଦାନ ପ୍ରଭୃତି ପୂଜାବିଧି ସମ୍ପନ୍ନ ହୁଏ । ସେ ବଳିପ୍ରଥାର ବିରୋଧୀ ଥିଲେ । ଛାଗବଳି ବ୍ୟତୀତ ଅନ୍ୟବଳି ପ୍ରଥାର ନିଷେଧ କରିଥିଲେ । ପ୍ରଜାଗଣଙ୍କର ଧର୍ମମତ ସମ୍ପର୍କରେ ରାଜା ଉଦାର ନୀତି ପୋଷଣ କରିଥିଲେ । ତେଣୁ ହିନ୍ଦୁ ମନ୍ଦିର ନିର୍ମାଣ ଓ ହିନ୍ଦୁ ଦେବତା ପ୍ରତିଷ୍ଠା ସଙ୍ଗେସଙ୍ଗେ ଅନ୍ୟ ଧର୍ମ ପ୍ରତି ସମଭାବ ପୋଷଣପୂର୍ବକ ସହାୟତା ପ୍ରଦାନ କରୁଥିଲେ । (କୁଚିଣ୍ଡାରେ ରାଜବ୍ୟୟରେ ମସ୍‌ଜିଦ୍ ନିର୍ମାଣ, କଟକରେ ଅବସ୍ଥାନ କାଳରେ ଖ୍ରୀଷ୍ଟିୟାନ ଉପାସନା ପାଇଁ ଅର୍ଥ ସାହାଯ୍ୟ ପ୍ରଦାନ, ଦେବଗଡ଼ରେ 'ବ୍ରାହ୍ମ'ସମାଜ ସଭାରେ ଅଂଶଗ୍ରହଣ, ବାଲେଶ୍ୱରରେ 'ବ୍ରାହ୍ମ' ଉପାସନା ମନ୍ଦିର ନିର୍ମାଣରେ ସହାୟତା ଆଦି) ତାଙ୍କର ଧର୍ମର ଉଦାରନୀତିର ଶ୍ରେଷ୍ଠ ନିଦର୍ଶନ । ରାଜପରିବାରର ପ୍ରାଚୀନ ଧର୍ମ 'ଶାକ୍ତଧର୍ମ' ହେଲେହେଁ ରାଜାଙ୍କର ଧର୍ମ ବୈଷ୍ଣବଧର୍ମ—ନରରୂପୀ ନାରାୟଣ ସେବା ଧର୍ମ । ଏତଦ୍‌ବ୍ୟତୀତ ପ୍ରାଚୀନ ଐତିହ୍ୟ ତଥା ସାଂସ୍କୃତିକ ପରମ୍ପରାର ଶ୍ରେଷ୍ଠ ପୀଠସ୍ଥଳୀ ଦେବଗଡ଼ରେ ବିଭିନ୍ନ ପର୍ବପର୍ବାଣୀ ବିଶିଷ୍ଟ ପାରମ୍ପରିକ ରୀତିରେ ସମ୍ପାଦିତ ହୋଇଥାଏ ।

ବୈଶାଖ ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ଜଗନ୍ନାଥ ମହାପ୍ରଭୁଙ୍କ ଚନ୍ଦନଯାତ୍ରା ଓ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ସ୍ନାନଯାତ୍ରା, ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ରଥଯାତ୍ରା ଉତ୍ସବ ମହା ସମାରୋହରେ ପାଳିତ ହୋଇଥାଏ । ଏହି ଯାତ୍ରାରେ

ସୁସଜ୍ଜିତ ହସ୍ତୀ, ଅଶ୍ୱ ପ୍ରଭୃତିଙ୍କ ଶୋଭାଯାତ୍ରା ସଙ୍ଗେ ବହୁ ଜନ ସମାଗମରେ ନଗର ମୁଖରିତ ହୋଇଉଠେ । ଫାଲ୍‌ଗୁନ ପୂର୍ଣ୍ଣିମା ଦିନ ଦୋଳ ଉତ୍ସବ, ଚୈତ୍ର ମାସର ଶୁକ୍ଲ ଅଷ୍ଟମୀ ଦିନ ରୁକ୍ମିଣୀ ବିବାହ ଓ ରାମନବମୀ ପଢ଼ ନଅଦିନ ବ୍ୟାପି ରାମଜନ୍ମ ଉତ୍ସବ ସମାରୋହରେ ସମ୍ପନ୍ନ ହୁଏ । ଏହି ସମୟରେ ହରିହରଭେଟ ଏକ ବିଶିଷ୍ଟ ଉତ୍ସବ ପାଳିତ ହୋଇଥାଏ ।

ହିନ୍ଦୁର ଗାର୍ହସ୍ଥ୍ୟ ଜୀବନରେ ଉପନୟନ ଓ ବିବାହ ବିଶିଷ୍ଟ ଅନୁଷ୍ଠାନ । ରାଜା ବାସୁଦେବ ଏସବୁ ଅନୁଷ୍ଠାନ ସମାରୋହରେ ସମ୍ପାଦନ କରିଥିଲେ । ତେଣୁ ରାଜକୁମାରଗଣଙ୍କ ଉପନୟନ ଓ ବିବାହ ଏବଂ ରାଜକୁମାରୀଗଣଙ୍କ ବିବାହ ଉପଲକ୍ଷେ ବହୁ ପଣ୍ଡିତଙ୍କ ସମାଗମ, ଶାସ୍ତ୍ରାଳାପ ଆଲୋଚନାରେ ବହୁ ଅର୍ଥ ବିନିଯୁକ୍ତ ହୋଇଥାଏ । ଗୁରୁ ପୁରୋହିତ ପ୍ରଭୃତି ବ୍ରାହ୍ମଣଙ୍କ ସମାଜର ଦୁଃଖୀ ଦରିଦ୍ରଙ୍କୁ ଅନ୍ନ ଓ ଅର୍ଥଦାନ, ବହୁ ବନ୍ଧୁ ସମାଗମରେ ସୌଖ୍ୟ ଶାନ୍ତି ବିଧାନ ନିମିତ୍ତ ଅର୍ଥ ବିନିଯୋଗ, କନ୍ୟା ଓ ଜାମାତାଙ୍କୁ ଉପଢୌକନ ସଦୃଶ ବହୁ ମୂଲ୍ୟ ରତ୍ନ, ପଟ୍ଟବସ୍ତ୍ର, ଦିବ୍ୟବସ୍ତୁ ଆଦିରେ ଅର୍ଥ ବିନିଯୋଗ କରି ଆନନ୍ଦ ଲାଭ କରୁଥିଲେ !

ସେଥିପାଇଁ ୧୮୯୯ ଖ୍ରୀ. ବେଳକୁ ରାଜକୋଷର ବ୍ୟୟ ପରିମାଣ ଟ ୮୭,୦୭୦ଙ୍କାରୁ ଟ ୯୩,୪୨୬ଙ୍କା ପର୍ଯ୍ୟନ୍ତ ବୃଦ୍ଧି ପ୍ରାପ୍ତ ହୋଇଥିଲା । ଅବଶ୍ୟ ଏହା କାଠ ବ୍ୟବସାୟ ଦ୍ୱାରା ପୂରଣ ହୋଇଥିଲା । ତେଣୁ General review of the administration report (1989)ରେ ପ୍ରକାଶ ପାଇଲା ।

The total real expenditure increased from Rs. 87,070/- to Rs. 93,426/-. The increased expenditure is principally due to the celebration of the marriage of the Raja's fourth daughter with the minor chief of Talcher in the Tributory Mahals, whilst several departments of the state administration were strengthened. This excludes accounts of the large timber trade carried on by the chief from the state forest in the name of his sons

ତେଣୁ ରାଜା ବାସୁଦେବ ବାମଣ୍ଡାର ସାଂସ୍କୃତିକ ଭିତ୍ତିଭୂମି ପ୍ରତିଷ୍ଠା ଦିଗରେ ବହୁ ଯତ୍ନବାନହୋଇ ଏକ ଉଚ୍ଚାଙ୍ଗ ପରମ୍ପରା ସୃଷ୍ଟି କରିପାରିଥିଲେ ଯାହାଙ୍କ

ପରବର୍ତ୍ତୀ କାଳରେ ବାମଣ୍ଡାର ପ୍ରତ୍ୟେକ କ୍ଷେତ୍ରରେ ଗଭୀର ରେଖାପାତ କରିପାରିଥିଲା ।

(x) ରାଜା ବାସୁଦେବଙ୍କ ଉପଯୁକ୍ତ ସମ୍ମାନାସ୍ପଦ ବ୍ୟକ୍ତିଙ୍କୁ ସମ୍ମାନ ପ୍ରଦର୍ଶନ ଏକ ବିଶିଷ୍ଟ ଗୁଣ ଥିଲା । ଏହି ପରିପ୍ରେକ୍ଷୀରେ ବହୁ ସାଂସ୍କୃତିକ ଅନୁଷ୍ଠାନ ସମ୍ପାଦନରେ ବ୍ରତୀ ଥିଲେ । ତାଙ୍କ ରାଜତ୍ୱ କାଳରେ ଇଂଲଣ୍ଡର ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱ ଉପଲକ୍ଷେ ସମଗ୍ର ଭାରତରେ 'ସିଲଭର ଜୁବିଲି ଉତ୍ସବ' (Silver Jubilee) ମହା ସମାରୋହରେ ପାଳିତ ହେଲା । ୧୮୯୭ ମସିହା ଜୁନ ୧୭ ତାରିଖରେ ଏହି ଉପଲକ୍ଷେ ରାଜଧାନୀ ଦେବଗଡ଼ରେ ଟୀକାସ୍ଥିତ ରାଜକବି ସଚ୍ଚିଦାନନ୍ଦଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହେଲା । ଏଥିରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ମୁଖ୍ୟବକ୍ତା ରୂପେ ଯୋଗଦାନ କଲେ । ଏହି ଉପଲକ୍ଷେ ରାଜା ବାସୁଦେବ ଏକ ଅଟ୍ଟାଳିକା ନିର୍ମାଣ କରିଥିଲେ ଯାହାର ନାମ 'Jubilee-house' ରଖାଯାଇଥିଲା । ବାଳକବାଳିକାମାନଙ୍କୁ ମିଷ୍ଟାନ୍ନ ବିତରଣ, ୨ ଜଣ ପୁରୁଷ ଓ ୩ ଜଣ ସ୍ତ୍ରୀ ବନ୍ଦୀଙ୍କୁ କାରାମୋଚନ କରାଯାଇଥିଲା ।

ନୂତନ ଭଙ୍ଗୀରେ ନଗରସଜ୍ଜା ତଥା ଆଲୋକସଜ୍ଜା, ସଭାରେ ଅଭିନନ୍ଦନ ପତ୍ର ପାଠ (ରାଜକୁମାର ହାଇସ୍କୁଲର ଦ୍ୱିତୀୟ ଶିକ୍ଷକ ଯୋଗେଶ ଚନ୍ଦ୍ର ଦାସଙ୍କ ଦ୍ୱାରା) ପ୍ରଭୃତିରେ ବାମଣ୍ଡା ଉତ୍ସବ ମୁଖରିତ ହୋଇପଡ଼ିଥିଲା । ସେତେବେଳେ ଏହା ଏକ ଉଚ୍ଚକୋଟୀର ସାଂସ୍କୃତିକ ବାତାବରଣ ସୃଷ୍ଟି କରି ଜନଚେତନା ଜାଗ୍ରତ କରିପାରିଥିଲା ।

# ରାଜା ବାସୁଦେବଙ୍କ ସାମାଜିକ ଚେତନା

ଛତିଶଗଡ଼ର ଓ ଓଡ଼ିଶାର ୧୮ଟି ଗଡ଼ରେ ଯେତେ ରାଜା ରାଜତ୍ୱ କରୁଥିଲେ ଅଧିକାଂଶ କ୍ଷତ୍ରିୟ ବଂଶୋଦ୍ଭବ । ତେଣୁ ସେମାନେ ସ୍ୱାଧୀନଭାବେ ରାଜତ୍ୱ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ପ୍ରଜାମାନଙ୍କର ସାମାଜିକ ଜୀବନ ପ୍ରତି ଗଭୀର ଦୃଷ୍ଟିପାତ କରୁଥିଲେ । ତେଣୁ ଏହି ସାମାଜିକ ଚେତନାର ଧାରା ଅଖୋଜ ବାମଣ୍ଡାରେ ମଧ୍ୟ ପ୍ରବାହିତ ହେଲା । ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜସିଂହାସନ ଆରୋହଣ ତଥା

ତାଙ୍କର ଜନ୍ମଗ୍ରହଣ, ଜ୍ୟୋତିଲାଭ ଓ ରାଜ ଜୀବନଯାପନ ସମଗ୍ର ଓଡ଼ିଶା ପକ୍ଷରେ ଏକ ସୌଭାଗ୍ୟ ।

ଜନସମାଜର ଆଶା ଆକାଙ୍କ୍ଷା ପୂରଣ କରି ନୂତନ ଶାସନ ପଦ୍ଧତିରେ ସମୟୋପଯୋଗୀ ସଂସ୍କାର ବିଧାନ ତାଙ୍କର ରାଜନୈତିକ ଜୀବନର ଚରମ ଲକ୍ଷ୍ୟ ଥିଲା । ତେଣୁ ସମାଜର ପ୍ରତ୍ୟେକ ସ୍ତରରେ ଏକ ଅଭୂତପୂର୍ବ ପରିବର୍ତ୍ତନ ପରିଲକ୍ଷିତ ହେଲା । ତଦାନୀନ୍ତନ ସଭ୍ୟତାଭିମାନୀ ଭଦ୍ର ସମାଜରେ ଏ ପ୍ରକାର ଆନ୍ଦୋଳନ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ବୋଲିଯାଇପାରେ ।

ରାଜା ବାସୁଦେବ ବାଲ୍ୟକାଳରୁ ଚଞ୍ଚଳ ପ୍ରକୃତି (dynamic), କର୍ମଠ (active) ଓ ବିଚାରବନ୍ତ (judicious) ଥିଲେ । ତେଣୁ ନ୍ୟାୟକୁ ବାଦ୍‌ଦେଇ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ । ବୟସ ବୃଦ୍ଧି ସଙ୍ଗେସଙ୍ଗେ ହୃଦୟରେ ଉଚ୍ଚ ଭାବ ତଥା ଆଦର୍ଶ ଗୁଣର ମହାଭାବ ପୋଷଣପୂର୍ବକ କର୍ମସାଧନରେ ପ୍ରବୃତ୍ତ ହେଲେ । କହିବା ବାହୁଲ୍ୟ ଯେ ବ୍ରଜସୁନ୍ଦର ଦେବଙ୍କ ଶିକ୍ଷାଦାନ ପଦ୍ଧତି ତାଙ୍କର ଜୀବନର ରୂପରେଖ ରୂପାୟିତ କଲା । ତେଣୁ ଜଣେ ସଂସ୍କୃତଜ୍ଞ, ବେଦତତ୍ତ୍ୱ ବିଶାରଦ ପଣ୍ଡିତ ରୂପେ ବିଭିନ୍ନ ଧର୍ମଶାସ୍ତ୍ର, ନୀତିଶାସ୍ତ୍ର (ଅର୍ଥନୀତି, ରାଜନୀତି, ସମାଜନୀତି, କାବ୍ୟଶାସ୍ତ୍ର ଆଦି ଅଧ୍ୟୟନ ଓ ଜୀବନ କ୍ଷେତ୍ରରେ ତାର ଯଥାଯଥ ପରିଶୀଳନପୂର୍ବକ ଉଚ୍ଚ ନୈତିକ ଆଦର୍ଶରେ ଅନୁପ୍ରାଣିତ ହୋଇପାରିଥିଲେ । ତଦନୁଯାୟୀ ବାମଣ୍ଡାର ସମାଜ-ଜୀବନକୁ ନିୟନ୍ତ୍ରଣ କରିପାରିଥିଲେ ।

ଗୀତୋକ୍ତ ବାଣୀ ଅନୁସାରେ,

ଯଦ୍ ଯଦାଚରତି ଶ୍ରେଷ୍ଠ ସ୍ତତ୍ ଦେବେତରୋ ଜନଃ
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁ ବର୍ତ୍ତତେ ।

ସେ ପ୍ରଥମେ ନିଜେ ଯେଉଁ ଆଦର୍ଶ ପଦ୍ଧତିର ଅନୁବର୍ତ୍ତନ କରୁଥିଲେ, ପ୍ରଜାବର୍ଗଙ୍କୁ ମଧ୍ୟ ସେହି ପଦାଙ୍କ ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଉଥିଲେ । ଏହା ତାଙ୍କର ସ୍ୱଭାବସିଦ୍ଧ ଗୁଣ ତଥା ଲକ୍ଷଣ । ତେଣୁ ମାନବସମାଜ ମଧ୍ୟରେ ଜଣେ ଆଦର୍ଶବାନ ନରପୁଙ୍ଗବ ରୂପେ ଉଚ୍ଚ ପ୍ରଶଂସିତ ତଥା ସମ୍ମାନିତ ହୋଇ ଦେଶଦେଶର ମୁଖ ଉଜ୍ଜ୍ୱଳାଲୋକରେ ଉଦ୍‌ଭାସିତ କରିପାରିଥିଲେ ।

## (i) ସମାଜନର ପ୍ରାଥମିକ ଶିକ୍ଷାର ପ୍ରସାର କ୍ଷେତ୍ରରେ ରାଜା ବାସୁଦେବଙ୍କ ଭୂମିକା

ରାଜା ବାସୁଦେବ ବିଦ୍ୱାନ, ଗୁଣଜ୍ଞ ପଣ୍ଡିତ ଥିଲେ । ତେଣୁ ସମାଜର ଉନ୍ନତିକଳ୍ପେ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସର୍ବାଦୌ ବିଶ୍ବାସକୁ ନେଇ ଦୃଢ଼ ପଦକ୍ଷେପ ଗ୍ରହଣ କଲେ ରାଜ୍ୟରେ । ସେତେବେଳେ ଶିକ୍ଷା ପ୍ରତି ସାଧାରଣ ସମାଜ ଅତ୍ୟନ୍ତ ସ୍ୱାତନ୍ତ୍ର୍ୟହୀନ ଓ ଉଦାସୀନ ଥିଲା । ତେଣୁ ଏପ୍ରକାର ଜଡ଼ତା ତଥା ଦୁର୍ବଳତାର ମୂଳୋତ୍ପାଟନ ନିମନ୍ତେ ପ୍ରାଥମିକ ଶିକ୍ଷାର ପ୍ରଚଳନ ପ୍ରତି ବିଶେଷ ଦୃଷ୍ଟି ଦେଲେ । ବିଶେଷତଃ ସେ ସମୟରେ ନାରୀଶିକ୍ଷା ପ୍ରତି ସେତେ ଗୁରୁତ୍ୱ ଆରୋପ କରାଯାଉନଥିଲା । ତଥାପି ଯେତେବେଳେ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ (compulsory) ହେଲା ଏକ ନିର୍ଦ୍ଦିଷ୍ଟ ବୟସରେ ବାଳକବାଳିକାମାନଙ୍କୁ ପ୍ରାଥମିକ ବିଦ୍ୟାଳୟକୁ ପ୍ରେରଣ କରିବା ପିତାମାତା ତଥା ଅଭିଭାବକମାନଙ୍କର ଗୁରୁଦାୟିତ୍ୱ ଥିଲା । ବାଳକବାଳିକା-ମାନଙ୍କର ଏକତ୍ର ବିଦ୍ୟାଶିକ୍ଷା ଲାଭ କରୁଥିଲେ ସମାଜର କୁସଂସ୍କାର ଦୂର କରି ସ୍ତ୍ରୀ-ଶିକ୍ଷା ପ୍ରଚଳନ କ୍ଷେତ୍ରରେ ରାଜା ବାସୁଦେବଙ୍କୁ ବିଧିବଦ୍ଧ ଯତ୍ନ ନେବାକୁ ପଡ଼ିଥିଲା । ଫଳତଃ ସ୍ତ୍ରୀ ସମାଜରେ ଏକ ନୂତନ କର୍ମ ପ୍ରେରଣା ତଥା ଚେତନା ଜାଗ୍ରତ କରିପାରିଥିଲେ ।

## (ii) ସମାଜରେ ବିବାହ କ୍ଷେତ୍ରରେ ରାଜା ବାସୁଦେବଙ୍କ ପଦକ୍ଷେପ

### ବାଲ୍ୟବିବାହ ନିଷେଧ

ସେ ସମୟରେ ବଙ୍ଗଳାରେ ସ୍ମାର୍ତ୍ତରଘୁନନ୍ଦନ ସମାଜର ମତ ଅନୁସାରେ ଆଠନଅ ବର୍ଷ ବୟସରେ ବାଳିକାମାନଙ୍କୁ ବିବାହ କରୁଥିଲେ । ତାର ପ୍ରଭାବ ବିହାର ଓ ଓଡ଼ିଶାରେ ଗଭୀରଭାବେ ରେଖାପାତ କଲା । ମାତ୍ର ପରେ ପରେ ଏହାର ନିଷେଧ ନିମନ୍ତେ ରାଜା ବାସୁଦେବ ସଭାସମିତିମାନ ଗଠନପୂର୍ବକ ଜନମତ ପରିବର୍ତ୍ତନ କରିବାରେ ଉଦ୍ୟମଶୀଳ ହେଲେ । ଇତ୍ୟବସରରେ ଖଲ୍ଲିକୋଟ, ଆଠଗଡ଼ ପ୍ରଭୃତିର ରାଜାମାନେ ନିଜ ରାଜ୍ୟରେ ବାଲ୍ୟବିବାହ ପାଇଁ ରହିତାଦେଶ ପ୍ରଦାନ ସମ୍ବାଦ ପାଇ ରାଜା ବାସୁଦେବ ପରମ ଆନନ୍ଦ ଲାଭକଲେ ଓ ନିଜ ରାଜ୍ୟରେ ୧୨ ବର୍ଷ ବୟସରୁ କମ୍ ବର୍ଷରେ କେହିହେଁ ବିବାହ କରିପାରିବେ ନାହିଁ ବୋଲି ରାଜାଦେଶ ପ୍ରଦାନ କଲେ ।

ସମ୍ଭାର ପ୍ରୟାସୀ ରାଜା ବାସୁଦେବ ସୁଢ଼ଳଦେବ ମୃତ୍ୟୁର ଅବ୍ୟବହିତ କେତେମାସ ପୂର୍ବରୁ ତା ୧୦-୭-୧୯୦୩ ଏକ ବିଜ୍ଞାପନ ପ୍ରକାଶ କଲେ ।

"ଆମ୍ଭଦ୍ୱାରା ଅନୁମୋଦିତ ହୋଇ ପ୍ରସ୍ତାବ କରାଗଲା ଯେ କନ୍ୟାର ବୟସ ୧୨ ବର୍ଷରୁ କମ୍‌ରେ କେହି ବିବାହ କରିପାରିବ ନାହିଁ । ଯେ କରିବ, ସେ ସମାଜରୁ ଅନ୍ତର ହେବ ।"

ଅବଶ୍ୟ ଏହା ପୂର୍ବରୁ ୧୮୯୮ ସାଲରେ ରାଜା ବାସୁଦେବଙ୍କ ପ୍ରଯତ୍ନରେ ପ୍ରକାଶିତ 'ଗଦାଧର ପଦ୍ଧତି'ରେ ଯୁବତୀ ବିବାହ ପ୍ରସଙ୍ଗ ଉଲ୍ଲିଖିତ ।

(iii) 'ଯୌତୁକ ପ୍ରଥା'ର ବିରୋଧରେ ରାଜା ବାସୁଦେବଙ୍କ ପଦକ୍ଷେପ

ସେ ସମୟରେ ଯୌତୁକ ବିବାହରେ ପଣ ପ୍ରଥା ପ୍ରଚଳିତ ଥିଲା । ଟଙ୍କା, ସୁନା ଆଦି ପଣ ପ୍ରୟୋଗପୂର୍ବକ କନ୍ୟାଦାନ ଅତ୍ୟନ୍ତ ନିନ୍ଦନୀୟ ପ୍ରଥା ଭାବି ରାଜା ବାସୁଦେବ ରାଜ୍ୟରୁ ଏ ପ୍ରଥାର ସମ୍ପୂର୍ଣ୍ଣ ନିରାକରଣ ନିମନ୍ତେ ବିଧିବ୍ୟବସ୍ଥା ପ୍ରଚଳନ କଲେ । ଫଳତଃ ଅନ୍ୟ ରାଜ୍ୟ ତୁଳନାରେ ବାମଣ୍ଡାରେ ଏହା କ୍ରମଶଃ ହ୍ରାସ ପାଇଲା ।

(iv) ପିତୃମାତୃହୀନ ସନ୍ତାନ ପ୍ରତି ସାହାଯ୍ୟ ବ୍ୟବସ୍ଥା

ଅଳ୍ପବୟସ୍କ ପିତୃମାତୃହୀନ ବାଳକବାଳିକାଙ୍କୁ ଆଶ୍ରୟ ପ୍ରଦାନ ତଥା ବିଭିନ୍ନ କର୍ମରେ ନିଯୁକ୍ତି ପ୍ରଦାନ ପ୍ରତି ରାଜା ବାସୁଦେବ ଅତ୍ୟନ୍ତ ତତ୍ପର ଥିଲେ ।

(v) ବିଧବାମାନଙ୍କୁ ସାହାଯ୍ୟ ପ୍ରଦାନ

ପତିପୁତ୍ରହୀନା ବିଧବାମାନଙ୍କୁ ରାଜପରିବାରର ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ କରି ଆଶ୍ରୟ ପ୍ରଦାନ ତାଙ୍କର ଏକ ବିଶିଷ୍ଟ ଧର୍ମ । ଫଳତଃ ସାଧାରଣ ପ୍ରଜାର ଦୁଃଖ କଷ୍ଟ ଅଭାବ ଅସୁବିଧା ଦୂର କରିବାରେ ସେ ଆନନ୍ଦ ଲାଭ କରୁଥିଲେ । ବୋଲିବା ବାହୁଲ୍ୟ ଯେ ରାଜା ବାସୁଦେବ ସୁଢ଼ଳଦେବ ଜଣେ ଆଦର୍ଶବାନ୍ ଓ ପ୍ରଜା ସୁହୃଦ, ରାଜା ଥିଲେ । ତେଣୁ ସାଧାରଣ ପ୍ରଜାର ଦୁଃଖକଷ୍ଟ ପ୍ରତି ସଚେତନ ଥିଲେ । ଏହି ସମ୍ବେଦନଶୀଳତା ତାଙ୍କ ଜୀବନକୁ ମହନୀୟ କରିପାରିଥିଲା ।

## (୪) ରାଜା ବାସୁଦେବଙ୍କ ଏକ ବିଶିଷ୍ଟ ସମାଜ ସଂସ୍କାର

(ବିବାହାନ୍ତେ ରାଜକନ୍ୟାର ପିତ୍ରାଳୟ ଗମନ-ନିଷେଧ ବିଧି ବ୍ୟବସ୍ଥାର ଉଚ୍ଛେଦ)

ରାଜା ବାସୁଦେବଙ୍କ ରାଜତ୍ୱକାଳରେ ଏକ ବିଶିଷ୍ଟ ସାମାଜିକ ସଂସ୍କାର ହେଲା ରାଜପରିବାରରେ କନ୍ୟାର ବିବାହ ପରେ ପିତ୍ରାଳୟଗମନ ବ୍ୟବସ୍ଥାର ପୁନଃ ପ୍ରଚଳନ ।

ଯଦିଓ ପୂର୍ବ ପ୍ରଚଳିତ ପ୍ରଥାନୁସାରେ ରାଜପରିବାରରେ ପରିଣୀତା କନ୍ୟାର ପିତ୍ରାଳୟ ଗମନ ନଥିଲା, ତଥାପି ଅବସ୍ଥାର ପରିବର୍ତ୍ତନ ବିଶେଷରେ ରାଜା ବାସୁଦେବ ସମଗ୍ର ଭାରତର ରାଜ ପରିବାର ପାଇଁ ବଳିଷ୍ଠ ପଦକ୍ଷେପ ଗ୍ରହଣପୂର୍ବକ ଏକ ବିରାଟ ସାମାଜିକ ପରିବର୍ତ୍ତନ ଆନୟନ କରିପାରିଥିଲେ । ରାଜା ବାସୁଦେବଙ୍କ ମଧ୍ୟମା କନ୍ୟା ଶ୍ରୀମତୀ ଦେବୀଙ୍କର ସୁରଗୁଜା ଯୁବରାଜାଙ୍କ ସହିତ ବିବାହ ହେଲା । ମାତ୍ର ଅଳ୍ପ ବୟସରେ ସେ ଅକାଳ ବୈଧବ୍ୟ ଦଶା ଭୋଗକଲେ । ଏ ପ୍ରକାର କଷ୍ଟରୁ ମୁକ୍ତ କରି ପିତ୍ରାଳୟରେ ଶାନ୍ତିରେ ରଖିବା ପାଇଁ ରାଜା ବାସୁଦେବ ଆପ୍ରାଣ ଉଦ୍ୟମ କଲେ । ମାତ୍ର ବିଫଳ ମନୋରଥ ହେଲେ । ସେ ସମୟରେ ମଧ୍ୟପ୍ରଦେଶ ତଥା ଓଡ଼ିଶାରେ ରାଜପରିବାରରେ ଏ ପ୍ରଥା ଥିଲା ଯେ ବିବାହ ପରେପରେ ରାଜକୁମାରୀର ପିତ୍ରାଳୟ ସହିତ କୌଣସି ପ୍ରକାର ସମ୍ବନ୍ଧ ରହୁନଥିଲା । କନ୍ୟାର ପିତୃଗୃହେ ପଦାର୍ପଣ ଏକାନ୍ତ ନିଷିଦ୍ଧ ଥିଲା । ତେଣୁ ବିଧବା କନ୍ୟାର ଦୁଃଖକଷ୍ଟ ସହ୍ୟକରି ନପାରି ରାଜା ବାସୁଦେବ ନିରୂପାୟ ହୋଇ ବ୍ରିଟିଶ ସରକାରଙ୍କ ଶରଣାପନ୍ନ ହେଲେ । ସରକାରଙ୍କ ଆଦେଶ କ୍ରମେ ବିଧବା କନ୍ୟା ଶ୍ରୀମତୀ ଦେବୀଙ୍କୁ ଶ୍ୱଶୁରାଳୟରୁ ଉଦ୍ଧାର କରି ଆଣିପାରିଥିଲେ । ଏହା ଲକ୍ଷକରି ସ୍ଥିରପ୍ରତିଜ୍ଞ ରାଜା ବାସୁଦେବ ସମ୍ବାଦପତ୍ରରେ ଏ କୁପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଏ ପ୍ରକାର ସାମାଜିକ କୁସଂସ୍କାର ଉଚ୍ଛେଦ ସାଧନ ନିମିତ୍ତ ଦୃଢ଼ ପରିକର ହୋଇ ଏକ ନୂତନ ଜନ ଜାଗରଣ ସୃଷ୍ଟି କଲେ । ଫଳତଃ ପରେ ରାଜପରିବାରର ଯାବତୀୟ ସାମାଜିକ କାର୍ଯ୍ୟକଳାପରେ କନ୍ୟାଗଣ ଯୋଗଦାନ କରିବାର ସୁଯୋଗ ଲାଭକଲେ । ଏହା ମଧ୍ୟପ୍ରଦେଶ ତଥା ଓଡ଼ିଶାର ରାଜପରିବାର ମଧ୍ୟରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଯାହା କି ପରବର୍ତ୍ତୀ ସାମାଜିକ ପରମ୍ପରାକୁ ବିଶେଷଭାବେ ଅନୁପ୍ରାଣିତ କରିଥିଲା । ତେଣୁ ସେ ଏ କ୍ଷେତ୍ରରେ ସମଗ୍ର ମଧ୍ୟପ୍ରଦେଶ ତଥା ଓଡ଼ିଶାର ରାଜାମାନଙ୍କ ମଧ୍ୟରେ ପ୍ରୀତି ତଥା ପ୍ରଶଂସାଭାଜନ ହେବା ସଙ୍ଗେ ସଙ୍ଗେ ତାଙ୍କର ନିଜର ଦୃଢ଼ ମନୋବଳ ଓ ଦୂରଦୃଷ୍ଟିର ପ୍ରଭାବରେ ଏକ ଚିରନ୍ତନ

ସାମାଜିକ କୁପ୍ରଥା ତଥା କୁସଂସ୍କାରର ନିରାକରଣରେ ସମର୍ଥ ହୋଇଥିଲେ । ଏହା, ତାଙ୍କର ଅନନ୍ୟ ସାଧାରଣ ପ୍ରତିଭାର ଶ୍ରେଷ୍ଠ ପରିଚାୟକ ତଥା ଉଚ୍ଚକୋଟୀର ସାମାଜିକ ଚେତନାର ଜ୍ୱଳନ୍ତ ପରିପ୍ରକାଶ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଜଣେ ଉଚ୍ଚକୋଟୀର ସମାଜ-ସଂସ୍କାରକ ଓ ନ୍ୟାୟବନ୍ଧୁ ରାଜା ଥିଲେ—କହିବା ବାହୁଲ୍ୟ ମାତ୍ର ।

ଶେଷରେ ପଦେକଥା ରାଜା ବାସୁଦେବ ସୁଢ଼ଳଦେବ ହିଁ ସର୍ବପ୍ରଥମେ ଅତୀତର ବାମଣ୍ଡାଙ୍କ ରାଜନୈତିକ ପୃଷ୍ଠଭୂମି ବିଭିନ୍ନ ଦୃଷ୍ଟିକୋଣରୁ ପ୍ରସ୍ତୁତ କରି ତାର ସର୍ବାଙ୍ଗୀନ ଉନ୍ନତିବିଧାନରେ ସମର୍ଥ ହୋଇ ପାରିଥିଲେ ।

---

## ଦ୍ୱିତୀୟ ପରିଚ୍ଛେଦ

# ପ୍ରଶାସକ ରାଜା ସାର୍ ବାସୁଦେବ ଓ ବାମଣ୍ଡା

### ରାଜା ବାସୁଦେବଙ୍କ ଅସାଧାରଣ ପ୍ରଶାସନିକତା :

ରାଜା ବାସୁଦେବଙ୍କ ରାଜ୍ୟଶାସନ ପ୍ରଣାଳୀ :—

ରାଜା ବାସୁଦେବ ଇଂରାଜୀ ବିଦ୍ୟା ଶିକ୍ଷା ଲାଭରୁ ସୁବିଧା ସୁଯୋଗ ପାଇପାରି ନ ଥିଲେ ମଧ୍ୟ ତୀକ୍ଷ୍ଣ ବୁଦ୍ଧି ବଳରେ ଇଂରେଜ ସରକାରଙ୍କ ସଙ୍ଗେ ସମତାଳରେ ଗତି କରି ପ୍ରଶାସନିକ କ୍ଷେତ୍ରରେ ପ୍ରଶଂସାଭାଜନ ହୋଇ ପାରିଥିଲେ । ରାଜା ବ୍ରଜସୁନ୍ଦରଦେବଙ୍କ ତିରୋଧାନ ପରେ ୧୮୬୯ ଖ୍ରୀ:ରେ ରାଜ୍ୟଲାଭ କଲେହେଁ ପ୍ରତ୍ୟକ୍ଷ ରାଜ୍ୟ ଶାସନ ଭାର ୧୮୭୫ ଖ୍ରୀ:ରେ ଗ୍ରହଣ କଲେ । ତାଙ୍କର ଅସାଧାରଣ ପ୍ରଶାସନିକ ଦକ୍ଷତା ବଳରେ ସେ ବିବିଧ ଉନ୍ନତି ବିଧାନରେ ତତ୍ପର ହେଲେ ।

ସେ ପ୍ରଥମେ ସମଗ୍ର ରାଜ୍ୟକୁ ତିନୋଟି ତହସିଲରେ ବିଭକ୍ତ କଲେ ଯଥା :—(୧) ଦେବଗଡ଼ (୨) କୁଚିଣ୍ଡା ଓ (୩) ବାରକୋଟ । ରାଜଧାନୀ ଦେବଗଡ଼ ତହସିଲର କାର୍ଯ୍ୟ ପରିଚାଳନା ନିମିତ୍ତ ଜଣେ ପ୍ରଥମ ଶ୍ରେଣୀ ବିଚାରପତି (ମାଜିଷ୍ଟ୍ରେଟ୍) ନିଯୁକ୍ତ କଲେ । ଦ୍ୱିତୀୟ ତହସିଲ କୁଚିଣ୍ଡାରେ ମଧ୍ୟ ଜଣେ ପ୍ରଥମଶ୍ରେଣୀ ବିଚାରପତି (ମାଜିଷ୍ଟ୍ରେଟ୍ ଓ ତୃତୀୟ ତହସିଲ ବାରକୋଟରେ ଜଣେ ଦ୍ୱିତୀୟଶ୍ରେଣୀ ବିଚାରପତି (ମାଜିଷ୍ଟ୍ରେଟ) ନିଯୁକ୍ତ ହୋଇ କାର୍ଯ୍ୟ ସମ୍ପାଦନ କଲେ । ସେ ସମୟରେ ମାଜିଷ୍ଟ୍ରେଟମାନେ କଲେକ୍ଟରର କ୍ଷମତାପ୍ରାପ୍ତ ହୋଇ ରାଜ୍ୟର ସୁବନ୍ଦୋବସ୍ତ ତଥା ପରିଚାଳନା ଆଦିରେ ସହାୟତା କଲେ ।

ଏତଦ୍‌ବ୍ୟତୀତ ଏହି ତିନୋଟି ତହସିଲ ଅନ୍ତର୍ଭୁକ୍ତ ତିନୋଟି ସ୍ଥାନରେ ନଇକୂଳ ଗୌଡ଼ପାଲି ଓ ଗୋବିନ୍ଦପୁର (ବାମରା)ରେ ତିନୋଟି ପୋଲିସ୍‌ଷ୍ଟେସନ ପ୍ରତିଷ୍ଠା କଲେ । ରାଜଧାନୀ ଦେବଗଡ଼ରେ ଅପିଲ ଅଦାଲତ୍‌, ଜେଲଖାନା, ଦାତବ୍ୟ ଚିକିତ୍ସାଳୟ ଆଦି ପ୍ରତିଷ୍ଠା କଲେ । ଏହା ପୂର୍ବେ ଏ ସମସ୍ତ ବ୍ୟବସ୍ଥା ନାମମାତ୍ର ଥିଲା । ପୂର୍ବେ ରାଜାଙ୍କର ବାଚନିକ ଆଦେଶ (Verbal order)ବଳରେ ଯାବତୀୟ କାର୍ଯ୍ୟ ମଧ୍ୟପ୍ରଦେଶ ତଥା ଓଡ଼ିଶାର ଗଡ଼ଜାତ ମାନଙ୍କରେ ସମ୍ପନ୍ନ ହେଉଥିଲା । ମାତ୍ର ରାଜା ବାସୁଦେବଙ୍କ ଅସାଧାରଣ ବ୍ୟକ୍ତିତ୍ୱ (personality) ବଳରେ ନିଜର

ଉଚ୍ଚକୋଟୀର ବୁଦ୍ଧିକୌଶଳ (wit) ଦ୍ୱାରା ପ୍ରଶାସନ ପରିଚାଳନା କରି ଇଂରେଜ ସରକାରଙ୍କ ପ୍ରତିବର୍ଷ ପ୍ରଶଂସାପୂର୍ଣ୍ଣ ସମାଲୋଚନାର ପାତ୍ର ହେଲେ ଯାହା କି ତଦାନୀନ୍ତନ ସରକାରଙ୍କ ଦ୍ୱାରା ନିଯୁକ୍ତ ଗଡ଼ଜାତମାନଙ୍କ ପ୍ରଶାସନ ପର୍ଯ୍ୟବେକ୍ଷଣକାରୀ ରାଜପ୍ରତିନିଧି (Political Agent)ଙ୍କ ଦ୍ୱାରା ପ୍ରଦତ୍ତ ବାର୍ଷିକ ପ୍ରଶାସନ ବିବରଣୀରୁ (Administration report)ରୁ ସୂଚନା ମିଳିଥାଏ । ସ୍ଥଳବିଶେଷରେ ସେହି ପ୍ରଶାସନ-ବିବରଣୀର ଆବଶ୍ୟକୀୟ ଅଂଶ (relevant extract) ମାନଙ୍କରୁ ରାଜା ବାସୁଦେବଙ୍କର ପ୍ରଶାସନିକ ଦକ୍ଷତା ତଥା ରାଜ୍ୟ ଶାସନକାଳୀନ ଆର୍ଥିକ, ସାମାଜିକ, ସାଂସ୍କୃତିକ ଚେତନା ସମ୍ପର୍କରେ ଆଭାଷ ମିଳେ ।

ପ୍ରଶାସନିକ ସୁବିଧା ଦୃଷ୍ଟିରୁ ରାଜଧାନୀ ଦେବଗଡ଼ରେ ଉଚ୍ଚ ଅଦାଲତ ଓ ନିମ୍ନ ଅଦାଲତମାନ ପ୍ରତିଷ୍ଠା ଲାଭ କଲା । ଏହି ସମୟରେ କୁଚିଣ୍ଡା ତହସିଲର ଆୟ ପ୍ରଚୁର ଥିଲା । ତେଣୁ ସଂଗଠନାତ୍ମକ କାର୍ଯ୍ୟରେ କୁଚିଣ୍ଡା ଅଗ୍ରସର ହେଲା । ଯେକୌଣସି ସଂଗଠନାତ୍ମକ କାର୍ଯ୍ୟ ପାଇଁ ପ୍ରଚୁର ଅର୍ଥ ଆବଶ୍ୟକ, ଏହା ରାଜା ବାସୁଦେବ ଭଲଭାବେ ଉପଲବ୍ଧି କରିଥିଲେ । କୁଚିଣ୍ଡାର ପାର୍ବତ୍ୟ ଅଞ୍ଚଳ ଅଳ୍ପ ଓ ତାର ଜମି ଅତ୍ୟନ୍ତ ଉର୍ବର । ବାର୍ଷିକ ଆୟ ପ୍ରଚୁର ହେତୁ ଅଧିକାଂଶ ପକ୍କା ଗୃହରେ କାର୍ଯ୍ୟାଳୟ ସମ୍ପନ୍ନ ହେଲା । ଏହା ସଙ୍ଗେ ସଙ୍ଗେ ବସ୍ତ୍ର ତହସିଲ ବାରକୋଟରେ ମଧ୍ୟ ତଦନୁରୂପ ଉନ୍ନତିମୂଳକ କାର୍ଯ୍ୟମାନ ସମ୍ପନ୍ନ ହେଲା । ରାଜସ୍ୱ ପରିମାଣର ବୃଦ୍ଧି ତଥା ଆଦାୟର ସୁବନ୍ଦୋବସ୍ତ ପ୍ରଶାସନପଦ୍ଧତିର ସୁଷ୍ଠୁ ପରିଚାଳନା ରାଜ୍ୟର ଶ୍ରୀ ବୃଦ୍ଧି ସାଧନ କଲା । ରାଜା ବାସୁଦେବ ଜମିବାଡ଼ିର ଉନ୍ନତି ଅବନତି, ଅନୁସାରେ ନିର୍ଦ୍ଧାରିତ କରର ହ୍ରାସ ବୃଦ୍ଧି ଇତ୍ୟାଦିର ବାର୍ଷିକ ବିବରଣୀ ପରୀକ୍ଷାକରି ପ୍ରତ୍ୟେକ ଦଶ ବର୍ଷରେ ଥରେ ତାର ତଦାରଖ କରିବା ନିମନ୍ତେ ଏକ ଉଚ୍ଚ ଶ୍ରେଣୀ ବନ୍ଦୋବସ୍ତ ଅଧିକାରୀ (Settlement Officer) ନିଯୁକ୍ତ କଲେ ।

ନୂତନ (Council) ପରିଷଦ ଗଠନ :

ଏହା ପୂର୍ବେ ରାଜାଙ୍କର ଅମାତ୍ୟାଦି ରାଜକର୍ମଚାରୀବୃନ୍ଦଙ୍କ ସଭାକୁ ରାଜଦରବାର ବୋଲିଯାଉଥିଲା । ରାଜା ବାସୁଦେବ ୧୮୮୦ ସାଲରେ ଏହି ଦରବାର ଶବ୍ଦକୁ ରହିତ କରି ତାହାର ସ୍ଥାନରେ Council ପରିଷଦ ଶବ୍ଦ ବ୍ୟବହାର ପାଇଁ ନିର୍ଦ୍ଦେଶ ଦେଲେ । ତାର ସଭାପତି (Chairman) ଥିଲେ ରାଜା ବାସୁଦେବ ସୁଢ଼ଳଦେବ ଓ ତାଙ୍କରେ ୯ ଜଣ ସଦସ୍ୟ (member) ଥିଲେ । ଏହି ସମୟରେ ସମ୍ବଲପୁରର ସରକାରୀ ବିଦ୍ୟାଳୟ (Government School)ର ପ୍ରଧାନ ଶିକ୍ଷକ ଗିରିଶ ଚନ୍ଦ୍ର ଘୋଷ ସରକାରୀ ଚାକିରିରୁ ଅବସର ଗ୍ରହଣ କରି ଟୀକାୟତ ସଚ୍ଚିଦାନନ୍ଦଙ୍କର ଗୃହ ଶିକ୍ଷକ ଥିଲେ ।

ସେ ଜଣେ ବିଚକ୍ଷଣ ବୁଦ୍ଧିମାନ ଆଇନଜ୍ଞ ବ୍ୟକ୍ତି ଥିଲେ । କାଉନସିଲ ଗଠନ ଓ ପରିଚାଳନା ନିୟମାବଳୀ ସମ୍ପର୍କରେ ତାଙ୍କର ଗଭୀର ଅଭିଜ୍ଞତା ଥିବାରୁ ରାଜା ବାସୁଦେବ ତାଙ୍କର ସୁଚିନ୍ତିତ ପରାମର୍ଶ ଗ୍ରହଣ କରି ବିଚାରକାର୍ଯ୍ୟ ସମ୍ପାଦନ କରୁଥିଲେ । ବାମଣ୍ଡା ଗଡ଼ଜାତ (Feudatory state) ଓ ଏହାର ରାଜା (Feudatory Chief) ସାମନ୍ତରାଜା ଥିବାରୁ ପ୍ରଭୂତ କ୍ଷମତାସମ୍ପନ୍ନ ଥିଲେ ଓ ଅପରାଧୀର ପ୍ରାଣଦଣ୍ଡାଦେଶ କ୍ଷମତାପ୍ରାପ୍ତ ହୋଇଥିଲେ ।

ରାଜା ବାସୁଦେବଙ୍କ ନିଶାନିବାରଣ ନୀତି :

ରାଜ୍ୟରେ ଅବକାରୀ ବିଭାଗ ଏକ ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲା ରାଜା ବାସୁଦେବଙ୍କ ରାଜ୍ୟଶାସନ କାଳରେ । ସେ ଯଦିଓ ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ ତଥାପି ଯାବତୀୟ ଭୋଗ ବିଳାସରୁ ଦୂରରେ ଥିଲେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସଦୃଶ ତାଙ୍କର ସାଧନାମୟ ଜୀବନ । ସେ ମାଦକ ଦ୍ରବ୍ୟର ସମ୍ପୂର୍ଣ୍ଣ ବିରୋଧୀ ଥିଲେ । ରାଜଧାନୀ ଦେବଗଡ଼ର ୧୦ ମାଇଲ ବ୍ୟାସାର୍ଦ୍ଧ ପରିମିତ ସ୍ଥାନ ମଧ୍ୟରେ ମାଦକ ଦ୍ରବ୍ୟ ବ୍ୟବହାର ନିଷେଧ ଆଦେଶ ଜାରି କରି ଉଚ୍ଚ ଆଦର୍ଶ ପ୍ରତିଷ୍ଠା କରିପାରିଥିଲେ । ତେଣୁ ସେ ନରରୂପୀ ନାରାୟଣ ସଦୃଶ ଶୋଭା ପାଉଥିଲେ । ଏଥିପାଇଁ ଅବକାରୀ ବିଭାଗର ବାର୍ଷିକ ଆୟ ହ୍ରାସ ହେଲେ ହେଁ ତାଙ୍କର ମନରେ ଦୁଃଖ ନ ଥିଲା । ଅଫିମ ଆଦି କେବଳ ଔଷଧ ରୂପେ ନିର୍ଦ୍ଧାରିତ ନିୟମରେ ବ୍ୟବହାର ପାଇଁ ଆଦେଶ ଥିଲା ।

ଜଣେ ଖ୍ୟାତନାମା ଖ୍ରୀଷ୍ଟୀୟ ଧର୍ମଯାଜକଙ୍କ ମତରେ ବାମଣ୍ଡା ସେତେବେଳେ ସମଗ୍ର ଓଡ଼ିଶାରେ "An-Anti Opium State" ରୂପେ ପ୍ରତିଭାତ ଥିଲା । ତାଙ୍କର ମତରେ, In the course of a recent missionary journey, I visited Bamra, feudatory state and was greatly pleased to learn that the Raja, seeing how ruinous the Opium habit is, to the individual and to the community, has strictly prohibited its use by any and whose names have been entered on a Police Register as habitual consumers These can obtain, the dorug only in moderate quantites at certain Police Stations. × × The wise and enlightened policy of the Indian prince in thus Preserving his people from a great danger is worthy of all Praise and should be published as an example to

others. The British Government might learn a lesson from him in this matter.

Sd/- F. E. Heberlet
Baptist Missionary

Sambalpur
26th April, 1897.

ବାମଣ୍ଡାରେ ଗଞ୍ଜେଇ, ଅଫିମ ଆଦିର ଚୋରା କାରବାର ଅନ୍ୟ ରାଜ୍ୟ ତୁଳନାରେ ଆଦୌ ନ ଥିଲା । ତେଣୁ Administration Report 1893 କହନ୍ତି,

The Smuggling of ganja of which there is so much Complaint in Other States on the Eastern Frontier, is said to be most unknown here. The RaJa considers that his arrargements for Punishing offenders and rewarding informers afford him all the protection he needs.

ପରେ ପ୍ରକାଶ ପାଇଲା ।

Bamra is the only state which has succeeded effectually dealing with this diffculty, another testimony to the Practical management of the Raja.

(Resolution of the C. P. Government 1894)

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ଅବକାରୀ ବିଭାଗ ଥିଲେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ନୀତି ସମ୍ବଳିତ ହେତୁ ତାହାର ଆର୍ଥିକ ଗୁରୁତ୍ୱ ନ ଥିଲା—ଏହାହିଁ ତାଙ୍କର ଶାସନ ପଦ୍ଧତିର ଏକ ପ୍ରଧାନ ବିଶେଷତ୍ୱ ।

ତେଣୁ Baptist Missionary P. E Heberletଙ୍କ ମତରେ—
At the time of opium enquiry he gave his opinion against the traffic, but I have not seen this fact mentioned anywhere and it should be known together with the facts.

I have mentioned regarding prohibition in the state, to all who are engaged in anti-opium Campaign.

I believe that campaign will, sooner or later, with Gods' blessings, end in complete victory, and I pray that the time may be hastened.

ଏ ପ୍ରକାର ଉଚ୍ଚାଙ୍ଗ ଆଦର୍ଶ ପ୍ରତିଷ୍ଠା ପୂର୍ବକ ବାମଣ୍ଡା ରାଜ୍ୟର ସମ୍ମାନ ତଥା ମର୍ଯ୍ୟାଦା ବିଶ୍ୱ ଦରବାରରେ ବୃଦ୍ଧି କରିବାରେ ପ୍ରାତଃ ସ୍ମରଣୀୟ କ୍ଷଣଜନ୍ମା ବିଶିଷ୍ଟ ଜନସେବକ ଆଦର୍ଶ ରାଜା ବାସୁଦେବ ସୁଡ଼ଳ ଦେବ ହିଁ ସମର୍ଥ ହୋଇପାରିଥିଲେ ।

ରାଜା ବାସୁଦେବଙ୍କ ରାଜ୍ୟରେ ଅପରାଧ-ନିବାରଣ ବ୍ୟବସ୍ଥା:—

ରାଜା ବାସୁଦେବ ବିଭିନ୍ନ ଅଦାଲତ ପ୍ରତିଷ୍ଠା କରି ରାଜ୍ୟରେ ନ୍ୟାୟ ପ୍ରଚଳନ ତଥା ଦୋଷାପରାଧ ନିରାକରଣ ବ୍ୟବସ୍ଥା ସମ୍ପାଦନ କଲେ । ଦୋଷୀ, ଅପରାଧୀମାନଙ୍କର ରହିବା ନିମିତ୍ତ କାରାଗାର ବ୍ୟବସ୍ଥା କଲେ । ପୂର୍ବେ ଏକ କଚ୍ଚାଘର କାରାଗାର ରୂପେ ବ୍ୟବହୃତ ହେଉଥିଲା । ମାତ୍ର ରାଜା ବାସୁଦେବ ପକ୍କା ଘର ନିର୍ମାଣ କରି ବନ୍ଦୀମାନଙ୍କୁ ରଖି ବିଭିନ୍ନ ବିଷୟରେ ଶିକ୍ଷାଦାନ ବ୍ୟବସ୍ଥା କଲେ । ବନ୍ଦୀମାନେ କାରାଗାରରେ ଅତି ଉନ୍ନତ ଧରଣରେ କାଳାତିପାତ କରୁଥିଲେ—ତାହା Administration Report (1899) ଅନୁସାରେ ଉପଲବ୍ଧ ହୋଇଥାଏ ।

Indeed it is no uncommon experience to find that the convitcs are housed in much better buildings than those occupied by the Rajfamily.

ବନ୍ଦୀମାନେ ନାନା ବୈଷୟିକ ଶିକ୍ଷା ପ୍ରାପ୍ତ ହେଉଥିଲେ । ତତ୍କାଳୀନ ସାପ୍ତାହିକ ପତ୍ରିକା 'ସମ୍ବଲପୁର-ହିତୈଷିଣୀ'ର ମୁଦ୍ରଣ କାର୍ଯ୍ୟରେ ସହାୟତା କରୁଥିଲେ । ଉଦ୍ୟାନରେ ବିଭିନ୍ନ ପୁଷ୍ପ, ଫଳ, ବୃକ୍ଷର ଯତ୍ନ ନେବାରେ, ବସ୍ତ୍ରବୟନ, ତୈଳବୀଜରୁ ତୈଳ ଉତ୍ପାଦନ ଆଦି କାର୍ଯ୍ୟ ସମ୍ପାଦନ କରୁଥିଲେ । ଯଦିଓ ଅଳ୍ପ ସଂଖ୍ୟକ ବନ୍ଦୀ କାରାଗାରରେ ରହୁଥିଲେ ତଥାପି ଚରିତ୍ର ସଂଶୋଧନ ନିମନ୍ତେ ମୁଖ୍ୟତଃ କାରାଦଣ୍ଡ ବିଶେଷ ରୂପେ ସହାୟକ ଥିଲା ।

ତେଣୁ ସରସ୍ୱତୀ ଫକୀରମୋହନଙ୍କ ଭାଷାରେ—

ବାମଣ୍ଡାର କାରାଗାର ଦେଖିଯାଏ ଜଣା
ଦୋଷୀର ଚରିତ୍ରଶୋଧ ବିଚିତ୍ର କଳ୍ପନା
ବନ୍ଦୀବୃନ୍ଦ ପାଉଛନ୍ତି ନାନାରୂପେ ଶିକ୍ଷା
ଚରିତ୍ର ଥାଇ ଯେଉଁ ପାଳିବେ ଜୀବିକା ।

Administration Report 1892ରୁ ଜଣାଯାଏ ଯେ ବନ୍ଦୀମାନେ ସୌଖିନ ଜୀବନ ଯାପନ କରୁଥିଲେ ।

The Prisoners are not employed in hard labour and I think it would be a great improvement if the Raja would appoint an experienced Jail Daroga and would introduce more fully the improved khalsa method of Prison management· ମାତ୍ର ୧୮୯୩ ବେଳକୁ କାରାଗାରର ଅବସ୍ଥା ସମ୍ପର୍କରେ The present Jail. Building is badly situated and the wards are quite insufficiently ventilated. The Feudatory chief Proposes to build a new Jail-Building outside the town. This should be put in hand as soon as possible.

The number of prisoners under Confinement in this Deogarh Jail at the close of the year was 32. The arrangement appears to work very satisfactorlly and the Prisoners are employed on a variety forms of labour. Their health is carefully attended to by the Medical officer in charge of the State Hospital·
ଏହି ପରିପ୍ରେକ୍ଷୀରେ ରାଜ୍ୟରେ ଅପରାଧ ସଂଖ୍ୟା ଖୁବ୍ କମ୍ ଥିଲା ।

ତେଣୁ ରାଜା ବାସୁଦେବ ରାଜ୍ୟଶାସନ ନୀତି, ସାମଦାନ, ଦଣ୍ଡଭେଦ ଦ୍ୱାରା ପୂର୍ଣ୍ଣ ଭାବରେ ସମର୍ଥିତ ହୋଇ ଉଚ୍ଚକୋଟୀର ପ୍ରଶାସନକର୍ତାର ପରିଚୟ ପ୍ରଦାନ କରେ । ଉଦାହରଣ ସ୍ୱରୂପ ତାଙ୍କର ଦସ୍ୟୁଦମନ ବ୍ୟବସ୍ଥା ।

୧୯୦୧ ମସିହା ବେଳକୁ ବାମଣ୍ଡାରେ ଦସ୍ୟୁ ଉପଦ୍ରବ ପ୍ରବଳ ହେଲା । ପ୍ରଥମେ ବାହାଦୁର ନାମକ ଗଣ୍ଡ ଏକ ଦଳ ପ୍ରତିଷ୍ଠା କରି ଡକାୟତି ଆରମ୍ଭ କଲାପରେ ଧରାପଡ଼ି ଉପଯୁକ୍ତ ଦଣ୍ଡ ଦ୍ୱାରା ଦଣ୍ଡିତ ହେଲା । ତା ପରେ ବାସୁ ମହାପାତ୍ର ବ୍ୟକ୍ତିର ପୁତ୍ର ଅବଳ ମହାପାତ୍ର ଓ ଭ୍ରାତୃଷ୍ପୁତ୍ର ଛବିଲ ମହାପାତ୍ର ଉଭୟଙ୍କ ମିଳିତ ଉଦ୍ୟମରେ ଏକ ଦଳ ଗଠିତ ହେଲା । ଦିନରେ ଅରଣ୍ୟରେ ଆତ୍ମଗୋପନ ଓ ରାତିରେ ଲୁଣ୍ଠନ କରି ରାଜ୍ୟକୁ ବ୍ୟତିବ୍ୟସ୍ତ କଲେ ଓ ଦଶ/ବାରଟା ଡକାୟତି କାରବାରରେ ଲିପ୍ତ ହେଲେ । ପରେ ରାଜ ପ୍ରତିନିଧି (Political Agent)ଙ୍କ ହସ୍ତକ୍ଷେପ ହେଲା । ରାଜା ଯେତେ ଚେଷ୍ଟା କଲେ ମଧ୍ୟ

ଧରା ଦେଲେ ନାହିଁ । ପରେ ରାଜାଦେଶ ହେଲା ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ହେବା ପାଇଁ । ମାତ୍ର କେହି ଏଥି ପ୍ରତି ଭ୍ରୂକ୍ଷେପ କଲେ ନାହିଁ । ପରେ ଖାଲସା ପୋଲିସ ଦ୍ୱାରା ଛବିଲର ପିତା ବାପୁ ମହାପାତ୍ର ଧରା ପଡ଼ିଲା । ଏହି ପରିପ୍ରେକ୍ଷୀରେ ମଧ୍ୟପ୍ରଦେଶର ଶାସନକର୍ତ୍ତା ଛତିଶଗଡ଼ର ରାଜପ୍ରତିନିଧିଙ୍କୁ ବାମଣ୍ଡାରେ ଅବସ୍ଥାନ ପାଇଁ ଆଦେଶ ଦେଲେ । ସେ ସମ୍ବଲପୁରର ପୋଲିସ ସାହେବଙ୍କ ଦ୍ୱାରା ଖାଲସା ପୋଲିସଙ୍କ ସହାୟତାରେ ବଣାଇଁ ଅରଣ୍ୟରୁ ଦସ୍ୟୁଦ୍ୱୟଙ୍କୁ ବନ୍ଦୀ ରୂପେ ଧରିବାରେ ସମର୍ଥ ହେଲେ । ପରେ ପରେ ଅନ୍ୟମାନେ ଧରାପଡ଼ି ବାମଣ୍ଡାର ରାଜଦରବାରରେ ବିଚାରାଧୀନ ହୋଇ ଦଣ୍ଡପ୍ରାପ୍ତ ହେଲେ ।

ରାଜା ବାସୁଦେବଙ୍କ ଅନ୍ୟ ଏକ ବିଶିଷ୍ଟ ପଦକ୍ଷେପ ରାଜ୍ୟରେ ଅଧିବାସୀଙ୍କ ସ୍ୱାତନ୍ତ୍ର୍ୟ ରକ୍ଷା । ସେତେବେଳେ ରାଜ୍ୟର କେତେକ ନିରୀହ ବ୍ୟକ୍ତିଙ୍କୁ କେତେକ ଧନୀ ସମ୍ଭ୍ରାନ୍ତ ଠିକାଦାର ତଥା ଦଲାଲ ଧରି ନେଇ କୁଲି କାର୍ଯ୍ୟ ନିମନ୍ତେ ଅନ୍ୟତ୍ର ପ୍ରେରଣ କରୁଥିଲେ । ଫଳତଃ ସେମାନେ ଏ ପ୍ରକାର ପ୍ରଲୋଭନର ବଶବର୍ତ୍ତୀ ହୋଇ ଘରଦ୍ୱାର ଛାଡ଼ି ଚାଲିଯିବାରେ ଅଶାନ୍ତି ଅସନ୍ତୋଷ ବୃଦ୍ଧି ପାଉଥିଲା । ତେଣୁ ରାଜା ବାସୁଦେବ ଏଥିରେ ହସ୍ତକ୍ଷେପ କରି ରାଜାଦେଶ ଦ୍ୱାରା ଏହାକୁ ନିଷିଦ୍ଧ କରି ଜୋରିମାନା ଓ କାରାଦଣ୍ଡ ବିଧି ବ୍ୟବସ୍ଥା ଦ୍ୱାରା ରାଜ୍ୟବାସୀଙ୍କର ଅଶେଷ ଉପକାର ସାଧନ କଲେ ।

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ଅନ୍ୟ ଏକ ବିଶିଷ୍ଟ ଦୁର୍ବିପାକ— ରାଜ୍ୟରେ ଦୁର୍ଭିକ୍ଷର କରାଳ ଲୀଳା । ୧୮୯୬ ମସିହାରେ ଉପଯୁକ୍ତ ବୃଷ୍ଟିପାତର ଅଭାବରେ ୧୮୯୭ ମସିହାରେ ଶସ୍ୟହାନି ହେତୁ ମଧ୍ୟପ୍ରଦେଶର କେତେକ ରାଜ୍ୟରେ ଅନ୍ନାଭାବଜନିତ କଷ୍ଟ ଅସହ୍ୟ ହେଲା । ଏହି ଦୁର୍ଭିକ୍ଷର କରାଳ ଗ୍ରାସରୁ ଉଦ୍ଧାର ପାଇବା ପାଇଁ ନାନା ସ୍ଥାନରେ ଅର୍ଥ ସଂଗ୍ରହ ହେଲା । ସେ ସମୟରେ ଇଂଲଣ୍ଡ ମଧ୍ୟ ଆର୍ଥିକ ସାହାଯ୍ୟ ପ୍ରଦାନ କଲା । ସେ ସମୟରେ ଭାରତର ରାଜପ୍ରତିନିଧି Lord Elgin କଲିକତାରେ ସଭା କରି ଆର୍ଥିକ ସାହାଯ୍ୟ ଭିକ୍ଷା କଲେ । ଛତିଶଗଡ଼ର ରାଜ୍ୟମାନଙ୍କରେ ଅନ୍ନାଭାବ ହେତୁ ହାହାକାର ଧ୍ୱନି ନିନାଦିତ ହେଲା । ବାମଣ୍ଡା, ବଣାଇଁ, ପାଲଲହଡ଼ା ପ୍ରଭୃତି ରାଜ୍ୟରେ ଦୁର୍ଭିକ୍ଷର କରାଳ ଲୀଳା ବିଶେଷ ରୂପେ ଦୃଷ୍ଟିଗୋଚର ହେଲା ।

ଏ ସଙ୍କଟର ସନ୍ଧିକ୍ଷଣ ମୁହୂର୍ତ୍ତରେ ରାଜା ବାସୁଦେବଙ୍କର ଉଦାର ବାଣିଜ୍ୟ ନୀତି ଯଥା ରାଜ୍ୟରେ ଉତ୍ପନ୍ନ ଦ୍ରବ୍ୟ ପ୍ରଥମେ ରାଜ୍ୟବାସୀଙ୍କ ପାଇଁ ଉପଯୋଗୀ ହେବା ପରେ ବାହାରକୁ ବାଣିଜ୍ୟ ପାଇଁ ପ୍ରେରଣ । ସମଗ୍ର ରାଜ୍ୟରେ କଡ଼ାକଡ଼ି- ଭାବେ କାର୍ଯ୍ୟକାରୀ ହେଲା । ଯଦିଓ ବ୍ରିଟିଶ ସରକାର ଏହି ଉଦାର ନୀତିର ବିରୋଧୀ ଥିଲେ ତଥାପି ରାଜାଙ୍କର ଦୃଢ଼ ମନୋବଳକୁ ଭୂରି ଭୂରି ପ୍ରଶଂସା

କରଯାଇଛନ୍ତି । ସେହି ସମୟର ହୃଷ୍ଟ ଜନର ସମ୍ୟକ୍ ପରିଚୟ Administrative report 1897ରୁ ମିଳେ ।

"But save in Bamra, where the prohibition of export of foodgrains, appears to have secured the immediate object with which it was issued by the chief, the pressure of high prices was everywhere felt by the poorer classes and few states were free from the incursions of wanderers from the famine-stricken-areas of Chattishgarh. The horrors of famine were intensified by an epidemic of cholera more severe and wide spread than had been known for many years past Only Bamra and Rairakhol appear to have been entirely free from it. (Resolution C. P. Government 1897) ବାମଣ୍ଡାର ଏ ପ୍ରକାର ସଙ୍କଟ ମୁହୂର୍ତ୍ତରେ ରାଜା ବାସୁଦେବଙ୍କ ମହାନୁଭବତା ତଥା ଉଦାରତାର ଜ୍ୱଳନ୍ତ ନିଦର୍ଶନ ପ୍ରତିଫଳିତ ହୋଇଥାଏ । ସେ ଉତ୍ପନ୍ନ ଦ୍ରବ୍ୟର ରପ୍ତାନି ନିବାରଣ କରିବା ସଙ୍ଗେ ସଙ୍ଗେ ଟଙ୍କାରେ ୧୪ ସେର ଦରରେ ଚାଉଳ ବିକ୍ରୟ ବ୍ୟବସ୍ଥା କରିବା ଏକ ବଳିଷ୍ଠ ପଦକ୍ଷେପ । ତାଙ୍କର ରାଜତ୍ୱ କାଳରେ ଅର୍ଥାତ୍ ୧୮୯୬ରୁ ୧୯୦୦ ଖ୍ରୀ: ମଧ୍ୟରେ ବିଭିନ୍ନ କର୍ମକ୍ଷେତ୍ରରେ ଲୋକ ନିଯୁକ୍ତି, ରାଜସ୍ୱ ପରିମାଣ ଆୟ ତୁଳନାରେ ୮ ଅଣା, ୧୦ ଅଣା ଓ ୧୨ ଅଣା ଦରରେ ସଂଗ୍ରହ, ମାଫି ଆଦି ପ୍ରଚଳନ ଫଳରେ ମୋଟ ଆଦାୟ ଟ ୨୧,୩୭୭/ ଅଣା ଆଦାୟ ପ୍ରଜା ସାଧାରଣଙ୍କ ହିତ ସାଧନ ନିମନ୍ତେ ଦୁର୍ଭିକ୍ଷ ପ୍ରତିକାରର ଉଲ୍ଲେଖଯୋଗ୍ୟ ଘଟଣା । ରାଜା ବାସୁଦେବଙ୍କର ବହୁକଷ୍ଟ ପଦକ୍ଷେପ ଦୁର୍ଭିକ୍ଷର ପ୍ରତିକାର ସମ୍ପର୍କରେ ୧୮୯୯ରେ ପ୍ରକାଶିତ ପ୍ରଶାସନ ବିବରଣୀର General Reviewରୁ ଯାହା ଜଣାପଡ଼େ "The chief reports that owing to failure of crops he has decided to grant a substantial remission to the gauntias of his state in the current year He rightly points out that the prosperity of his state is dependent on the prosperity of his subjects and this liberal measure will prove of much help to them No less than 42 percent of the land revenue has been alienated principally in maufi grants to the Raj family

and this seriously affects the recorded income from land. This policy is one that will require careful watching to see that the grants are not larger than the state can afford." ତେଣୁ ଦୁର୍ଭିକ୍ଷ କାଳରୁ ରାଜ୍ୟବାସୀଙ୍କୁ ଉଦ୍ଧାର କରିବା ନିମିତ୍ତ ଉତ୍ପନ୍ନ ଦ୍ରବ୍ୟର ରପ୍ତାନି ନିଷେଧ ବ୍ୟବସ୍ଥା ସର୍ବପ୍ରଥମେ ରାଜା ବାସୁଦେବଙ୍କ ଏକ ପ୍ରଶଂସନୀୟ ପଦକ୍ଷେପ ।

ତେଣୁ General Review 1900 କହନ୍ତି,

"Bamra was the only state in which there was only interference with trade; the prohibition by the Feudatory chief of Bamra of the exportation of the food grain continued in force throughtout the year."

ଦୁର୍ଭିକ୍ଷ ସମୟରେ ବାମଣ୍ଡାର ଦରଦାମର ଅବସ୍ଥା ସମ୍ପର୍କରେ ସୂଚନା ଉକ୍ତ ବିବରଣୀରୁ ମିଳେ ।

"The prices of foodgrains have b en high throughout the year. Famine prices prevailed generally until September or October and at the end of the year prices were still above normal, with some local excep tions, prices have been virtually governed from Bengal and determined by the cost of importing rice from that province. It is by no means clear that prices prevailing in Bamra are an exception to this rule or that the Feudatory chief's prohibition of export had any material effect on prices. In that state prices were certainly lower than in the neighbouring state in their land ଏହି ସମୟରେ ରପ୍ତାନି-ନିଷେଧର ପ୍ରଭାବ ଦରଦାମ ନିୟନ୍ତ୍ରଣ ଉପରେ କେତେଦୂର ରେଖାପାତ କରିଥିଲା ତାହା ନିମ୍ନୋକ୍ତ ପଂକ୍ତିରୁ ସହଜେ ପ୍ରତିପନ୍ନ ହୋଇଥାଏ ।
"It can not however safely be inference that they would have been higher than they were, if exports have been free, because it is not certain, how far the prohibition was effective and: further, because the supplementary

measure was adopted of borrowing rice and selling fourteen seers per rupee.

ପର୍ଯ୍ୟବେକ୍ଷଣରୁ ଦେଶହିତୈଷୀ ସୁଦକ୍ଷ ପ୍ରଜାବତ୍ସଳ ରାଜା ବାସୁଦେବଙ୍କ ପ୍ରଶାସନିକ ମୂଲ୍ୟବୋଧ ଅତ୍ୟନ୍ତ ଉଚ୍ଚକୋଟୀର ଏହା କହିବା ବାହୁଲ୍ୟ ମାତ୍ର ।

ତେଣୁ ତଦାନୀନ୍ତନ ଅନ୍ୟାନ୍ୟ ରାଜାମାନଙ୍କ ରାଜ୍ୟଶାସନ ପ୍ରଣାଳୀ ଅପେକ୍ଷା ଏହା ଅତ୍ୟନ୍ତ ଆଦର୍ଶସ୍ଥାନୀୟ ଥିଲା ତାହା ନିମ୍ନୋକ୍ତ ପଂକ୍ତିରୁ ପ୍ରତୀୟମାନ ହୁଏ ।

ତଦାନୀନ୍ତନ ରାଜପ୍ରତିନିଧି (Political Agent) H. H. Priest ଙ୍କ ମତରେ—

"I think him entitled to cordial recognition for the great progress, which Bamra has made under his rule. There are very few chiefs even in other parts of India, who, with such small revenues have effected so much for improvement of their states."

୧୯୦୧ ଖ୍ରୀ: ବେଳକୁ ଇଂରେଜ ସରକାରଙ୍କ ରାଜପ୍ରତିନିଧି R. B. Chapman ବାମଣ୍ଡାର ପ୍ରଶାସନିକ ବ୍ୟବସ୍ଥା ପରିଦର୍ଶନ ଅଭିପ୍ରାୟରେ ଆସି ସ୍ଥାନୀୟ ରାଜ୍ୟଶାସନ ପଦ୍ଧତି, କଚେରୀ, ରାଜଦପ୍ତର, ବିଦ୍ୟାଳୟ, ଔଷଧାଳୟ, ପୋଲିସ ବ୍ୟବସ୍ଥା, କାରାଗାର ବ୍ୟବସ୍ଥା, ବନ୍ଦୀମାନଙ୍କ ନିର୍ମିତ ବହୁଶିଳ୍ପ, ବିଜ୍ଞାନାଗାର ଓ ବିଜ୍ଞାନଚର୍ଚ୍ଚା, ମୁଦ୍ରାଯନ୍ତ୍ର ଓ ସାହିତ୍ୟଚର୍ଚ୍ଚା ପରିଦର୍ଶନ କରି ଆନନ୍ଦ ଉପଭୋଗ କରିବା ସଙ୍ଗେ ସଙ୍ଗେ ପ୍ରୀତ ଓ ସନ୍ତୁଷ୍ଟ ହୋଇ ଏକ ଯୋଡ଼ା ବହୁମୂଲ୍ୟଶାଲ ଓ ବହୁମୂଲ୍ୟ ରାଜ୍ୟପୋଷାକ ଉପହାର ପ୍ରଦାନ କରିଥିଲେ । ଏହା ସାର୍ ବାସୁଦେବସୁଢ଼ଳ ଦେବଙ୍କ ପକ୍ଷରେ ପ୍ରଶାସନିକ ଦକ୍ଷତାର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ କମ୍ ଗୌରବର ବିଷୟ ନୁହେଁ । ପ୍ରଶାସନିକ ଦକ୍ଷତାର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ୧୮୮୯ରେ C.I.K E. ଓ ୧୮୯୫ରେ K.C.I.F. ଉପାଧି ପ୍ରଦାନ ତାଙ୍କର ଶ୍ରେଷ୍ଠ ରାଜସମ୍ମାନ ।

**ଭାରତ ସାମ୍ରାଜ୍ୟର ସର୍ବୋଚ୍ଚ ସମ୍ମାନ ଓ**

**ରାଜା ବାସୁଦେବ ସୁଢ଼ଳଦେବ (C.I.E. ଉପାଧି ଲାଭ)**

**(Commander of Indian Empire)**

ସାଧାରଣ ପ୍ରଶାସନ ଓ ତାର ସ୍ୱରୂପ :

ମଧ୍ୟପ୍ରଦେଶ ଓ ଓଡ଼ିଶାର (Feudatory) ସାମନ୍ତ ଓ (Tributory) କରଦରାଜ୍ୟମାନଙ୍କ ମଧ୍ୟରେ ଶାସନ ପ୍ରଣାଳୀ (1874-1903) ଅନୁଧ୍ୟାନ କଲେ

ବାମଣ୍ଡା (Feudatory State) ସାମନ୍ତ ରାଜ୍ୟର ସ୍ଥାନ ଅତ୍ୟନ୍ତ ଉଚ୍ଚରେ ବୋଲି ବ୍ରିଟିଶ ସରକାରଙ୍କ ପ୍ରକାଶିତ ବାର୍ଷିକ ପ୍ରଶାସନ ବିବରଣୀ (Administrative Report)ରୁ ପ୍ରତିପନ୍ନ ହୋଇଥାଏ ।

ସୁବିଶାଳ ଭାରତ ସାମ୍ରାଜ୍ୟରେ ଇଂରେଜ ରାଜଶକ୍ତିର ଛତ୍ରଛାୟା ତଳେ ରାଜପଦାଧିକାରୀ ବିଭିନ୍ନ ଶକ୍ତି (କମିଶନର, ଶାସନକର୍ତ୍ତା, ରାଜପ୍ରତିନିଧି, ସାମନ୍ତ ରାଜା ପ୍ରଭୃତି) ୧୮୮୯ ଖ୍ରୀ: ରେ ସାମନ୍ତ ରାଜା ବାସୁଦେବ ସୁଢ଼ଲଦେବଙ୍କ ଉଚ୍ଚକୋଟୀର ପ୍ରଶାସନିକ କୌଶଳ ପ୍ରୟୋଗର ତଥା କ୍ଷମତାର ବ୍ୟବହାର ସନ୍ଦର୍ଶନରେ ପ୍ରୀତ ହୋଇ ରାଜସମ୍ମାନପଦବୀ (Commander of Indian Empire) C.I.E. ପ୍ରଦାନ କଲେ । ବୋଲିବା ବାହୁଲ୍ୟ ଯେ ଏ ପ୍ରକାର ଉଚ୍ଚ ସମ୍ମାନ ଓଡ଼ିଶାର (Tributory State) ରାଜ୍ୟମାନଙ୍କର କୌଣସି ରାଜା ଲାଭ କରି ନ ଥିଲେ । ୧୮୯୪ ସାଲରେ ମଧ୍ୟପ୍ରଦେଶର ଶାସନକର୍ତ୍ତା ସାର୍ ଜନ ଉଡ଼ବର୍ଣ୍ଣ ଗଡ଼ଜାତ ଭ୍ରମଣ ଉଦ୍ଦେଶ୍ୟରେ ବାମଣ୍ଡା ଆଗମ କଲେ । ତାଙ୍କର ମହିମାମୟ ଅଭ୍ୟର୍ଥନା ଉପଲକ୍ଷେ ଏକ ଅଭିନନ୍ଦନ ପତ୍ର ପ୍ରଦାନ କରାଗଲା । ସେ ତାର ଉତ୍ତରରେ ପ୍ରକାଶ କଲେ ଯେ, ରାଜପ୍ରତିନିଧି କର୍ଣ୍ଣେଲ ବୃଗ ଓ ପ୍ରିଷ୍ଟ ସାହେବଙ୍କ ମୁଖରୁ ବାମଣ୍ଡାର ଉନ୍ନତ ଆଦର୍ଶ ଶାସନ ପ୍ରଣାଳୀ ସମ୍ପର୍କରେ ଯାହା ଶୁଣିଥିଲେ ସେ ତାହା ସ୍ୱଚକ୍ଷୁରେ ଦେଖି ଅତ୍ୟନ୍ତ ପ୍ରୀତ ହେଲେ । ରାଜ୍ୟପାଳନ ପଦ୍ଧତି, ପୂର୍ତ୍ତକାର୍ଯ୍ୟର ବ୍ୟବସ୍ଥା ଏବଂ ସୁଶିକ୍ଷାଦାନ ପଦ୍ଧତି ପ୍ରଭୃତି ବିଶେଷ ଉଲ୍ଲେଖନୀୟ । ରାଜା ବାସୁଦେବଙ୍କ ଅଶେଷ ଗୁଣାବଳୀ ଭାରତେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କ କର୍ଣ୍ଣଗୋଚର ହୋଇଥିଲା । ତେଣୁ ସେ ଯେଉଁ ସମ୍ମାନଜନକ ପଦ ଲାଭ କଲେ, ତାହା ପୁରୁଷାନୁକ୍ରମେ ପରବର୍ତ୍ତୀ ବଂଶଧରଙ୍କ ଉପଯୋଗ୍ୟ ବୋଲି ସାର୍ ଜନ ଉଡ଼ବର୍ଣ୍ଣ ବ୍ୟକ୍ତ କଲେ ।

ତାର ସମ୍ୟକ୍ ସୂଚନା ବାର୍ଷିକ ପ୍ରଶାସନ ବିବରଣୀରୁ ରାଜା ସାର୍ ବାସୁଦେବ ସୁଢ଼ଲଦେବଙ୍କ ପ୍ରତି ଉଚ୍ଚ ଧାରଣା ତଥା ସମାଜର ସମ୍ପର୍କରେ ମିଳିଥାଏ ।

Administration Report 1891 ଅନୁସାରେ Self governed Feudatories, Bamra

"The state was visited during the year by the Commissioner, who thus records the result of his visit." "I marched from Sambalpur to Deogarh and from Deogarh to Kochinda and then to Jharsuguda and saw a great deal of the state. I found the people everywhere

contented and satisfied with the Raja's rule. Though he was not with me, not a single complaint was made to me and I noted that there had been an immense increase in cultivation in the recent years Although I found that there had been immense improvement in the condition of the state since I last visited 12 years ago; I was greatly pleased to be able to renew my old friendship with the Raja and to find that in work of administration of his state, he had thoroughly fulfilled the promise of his earlier years."

× × × × ×

ରାଜା ବାସୁଦେବଙ୍କ କୃଷିର ଉନ୍ନତି ତଥା ରାଜ୍ୟର ପ୍ରଗତିରେ ପରିଦର୍ଶକ (Visitor) ମହୋଦୟ ସନ୍ତୁଷ୍ଟ ଥିଲେ । ରାଜା ବ୍ୟକ୍ତିଗତ ଭାବେ ସମସ୍ତ ବିଭାଗର ତତ୍ତ୍ୱ ନେଇଥାନ୍ତି । ସ୍ଥାନୀୟ ବିଦ୍ୟାଳୟରୁ ଶିକ୍ଷାପ୍ରାପ୍ତ ବ୍ୟକ୍ତିଙ୍କୁ ରାଜକର୍ମଚାରୀ ରୂପେ ନିଯୁକ୍ତି ପ୍ରଦାନ କରି ରାଜା ମହୋପକାର ସାଧନ କରୁଥିଲେ । General Review 1892ରୁ ରାଜା ବାସୁଦେବଙ୍କ ପ୍ରଶାସନ ପ୍ରଣାଳୀ ବିଷୟରେ ଅବଧାରଣା ଜାତ ହୋଇଥାଏ ।

"The state was administered throughout the year, by the feudatory chief Raja Sudhal Deo C I.E He supervises personally all branches of the state Administration and intimate knowledge of its circumstances and needs. The greater number of his officials are men, who are residents of his state and who have been entirely educated in the school, which he has founded."

୧୮୯୩ ଖ୍ରୀ : ବେଳକୁ ଟୀକାୟତ ସଚ୍ଚିଦାନନ୍ଦ ପ୍ରାପ୍ତବୟସ୍କ ଯୁବକ । ତେଣୁ ରାଜା ବାସୁଦେବ ତାଙ୍କର ଗଭୀର ଇଂରାଜୀ ଜ୍ଞାନ ଅସାଧାରଣ ବ୍ୟୁତ୍ପତ୍ତି ଯୋଗୁଁ ପ୍ରଶାସନ କ୍ଷେତ୍ରରେ ବିନିଯୋଗ କରି ଶାସନକୁ ଅଧିକତର ସୁଶୃଙ୍ଖଳିତ ଓ ମର୍ଯ୍ୟାଦାପୂର୍ଣ୍ଣ କଲେ । ତେଣୁ ୧୮୯୩ର Administration Report କହିଲେ—

"During the year the Raja invested his eldest son Lal Satichidananda Deo, who has received a thorough

English education and appears to be a young man of good intelligence and promise, with the full powers of the state, himself exercising a general supervision in all matters and advising in all cases of difficulty. The arrangement seems to have worked satisfactorily and no better training for the future ruler of the state could be wished for," ଟୀକାସ୍ଥିତ ସଚ୍ଚିଦାନନ୍ଦ ପିତା ସୁଦକ୍ଷ ପ୍ରଶାସକ ସାର୍ ବାସୁଦେବଙ୍କ ଠାରୁ ପ୍ରଶାସନିକ ସୁଶିକ୍ଷା ଲାଭ କରି ତାଙ୍କୁ ରାଜକାର୍ଯ୍ୟରେ ବିଶେଷ ସାହାଯ୍ୟ କଲେ । ସେ ସମୟରେ ଦେଓ୍ୱାନ୍ ପଦବୀ ନ ଥିଲା । ରାଜା ବାସୁଦେବ ନିଜେ ପୁଙ୍ଖାନୁପୁଙ୍ଖ ରୂପେ ରାଜ୍ୟର ସମସ୍ତ କାର୍ଯ୍ୟ ତଦାରଖ କରୁଥିଲେ, ଏହା ତାଙ୍କର ପ୍ରଶାସନିକ ବୈଶିଷ୍ଟ୍ୟ ।

ତେଣୁ Administration Report 1894 ରେ ପ୍ରକାଶ ପାଇଲା, "In the Administration of Bamra the designation of 'Dewan' is not and never has been known. The Raja always personally supervised all the details of administration, a duty which he has now to a great extent delegated to his eldest son."

ସମସାମୟିକ ବରେଣ୍ୟ କବି ରାଧାନାଥ ରାୟଙ୍କ ମତରେ, "ଉତ୍କୋଚ ଓ ପୁଲିସ୍ ଅତ୍ୟାଚାର ନିବାରଣ ବିଷୟରେ ବାମଣ୍ଡାର ରାଜଶାସନ ଆଶାତୀତ ଉନ୍ନତି ଲାଭ କରିଛି ବୋଲି ବୋଧହୁଏ । × × ସୁଢ଼ଲଦେବ ନିଜେ ନିଜର ରାଜସ୍ୱ ସଚିବ ନିଜେ ନିଜର ପୂର୍ତ୍ତ କର୍ମସଚିବ ।"

ରାଜା ବାସୁଦେବଙ୍କର କୋଷେଣାଶ୍ରୟମାସ୍ତବ୍ଧ ମାତ୍ର ରାଜସ୍ୱ କ୍ଷେତ୍ରରେ ତଥା ପ୍ରଶାସନିକ କ୍ଷେତ୍ରରେ ଏକ ଶ୍ରେଷ୍ଠ ଆଦର୍ଶ ।

କହିବା ବାହୁଲ୍ୟ ଯେ ରାଜା ସାର୍ ବାସୁଦେବ ସୁଢ଼ଲଦେବ ଜଣେ ସୁଦକ୍ଷ ପ୍ରଶାସକ ଯେ କି ନିଜର ଅସାଧାରଣ ଧୀମତ୍ତା ଓ ସୌଜନ୍ୟ ବଳରେ ରାଜାର ଅଶେଷବିଧ ଉନ୍ନତି ସାଧନ କରିପାରିଥିଲା । ବାମଣ୍ଡା ପରି ଏକ ଅନୁନ୍ନତ ଓ ଅନଗ୍ରସର ରାଜ୍ୟରେ ସେ ଯେଉଁ କର ବ୍ୟବସ୍ଥା ଧାର୍ଯ୍ୟ କଲେ ଓ ବ୍ୟବସାୟ ପାଇଁ ପ୍ରୋତ୍ସାହନ ତଥା ପଦକ୍ଷେପ ଗ୍ରହଣ କଲେ ତାହା ସ୍ୱାଗତଯୋଗ୍ୟ ଯାହାଦ୍ୱାରା ବାମଣ୍ଡା ଅଧିକତର ପ୍ରଗତିଶୀଳ (Prosperous) ହୋଇପାରିଲା ।

Resolution of Central Province Government 1893 କହନ୍ତି, Raja Sudhal Deo C. I. E. of Bamra, is a ruler of

much intelligence and enterprise and has done a great deal to develop and improve his state. His entire attention from direct taxation in the shape of pandhri and income tax is probably a wise measure, for in a remote and backward state like Bamra.

୧୮୯୩ ମସିହାରେ ଛତଶଗଡ଼ ସମସ୍ତ ସାମନ୍ତବାଦୀ ରାଜ୍ୟମାନଙ୍କ ମଧ୍ୟରେ ବାମଣ୍ଡାର ମୌଳିକ ଶାସନପଦ୍ଧତି ଅତ୍ୟନ୍ତ ଆଦର୍ଶ ସ୍ଥାନୀୟ ଥିଲା । ସେଥିପାଇଁ ତଦାନୀନ୍ତନ ବ୍ରିଟିଶ ସରକାର ଏ ପ୍ରକାର ଶାସନପଦ୍ଧତିର ଭୂରି ଭୂରି ପ୍ରଶଂସା ଗାନ କରିଯାଇ ଅଛନ୍ତି ।

Resolution of the Central Province Government, 1893. "This state is undoubtedly the most interesting of all the Chhatishgarh Feudatories. It is only one of which the administration has preserved any originality and Character of its own, owing to its never having fallen under the management of the British Government and having (Partly Perhaps, owing to its remoteness), been subjected to a very little interference at the hands of Government officers. It seems a pity that so little is known beyond the limits of the state of the details of the Raja's administration This example of the results which can be attained by a Native chief, governing accoding to his own methods, without assistance from without, and studying British institutions rather for the sake of Comparison and Judicious adaptation than of servile imitation, seems worthy of the careful attention not only of his brother chiefs but of British administration of native states, who seem apt at times to ignore the fundamental distinctions between the conditions prevailing in British Territory and in that of a small state under Native rule.

ରାଜା ବାସୁଦେବଙ୍କର ପ୍ରଶାସନିକ ଦକ୍ଷତାର ଯଶ ଗୌରବ ଦିଗ ଦିଗନ୍ତ ଆମୋଦିତ କରି ଅଧିକତର ଉଚ୍ଚ ରାଜ ସମ୍ମାନ K. C. I. E. ଉପାଧି ଲାଭରେ ସହାୟକ ହେଲା ।

## ଭାରତ ସାମ୍ରାଜ୍ୟର ସର୍ବୋଚ୍ଚ ସମ୍ମାନ ଓ ରାଜା ସାର୍ ବାସୁଦେବ ସୁଢ଼ଳଦେବ—(ଖ)—K. C. I. E. ଉପାଧି ଲାଭ (Knight Commander of Indian Empire)

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ପ୍ରଶାସନିକ ଦକ୍ଷତାର ଯଶ-ଗୌରବ ତଥା ସମ୍ମାନ ଏତେଦୂର ପରିବ୍ୟାପ୍ତ ହେଲା ଯେ ତଦାନୀନ୍ତନ ଇଂରେଜ ସରକାରଙ୍କ ଅନୁମୋଦନ କ୍ରମେ ସେ K C. I. E. (Knight Commander Of Indian Empire) ଉପାଧି ଲାଭ କରି ସମଗ୍ର ଭାରତ ସାମ୍ରାଜ୍ୟରେ ସ୍ୱୀୟ ତଥା ସମଗ୍ର ବାମଣ୍ଡାର ଯଶଶ୍ରୀ ପରିବର୍ଦ୍ଧିତ କଲେ ।

Administra Report 1894 ଅନୁସାରେ,

"Bamra continues to be a particularly bright instance of the success of an unaided native regime, and the good Government of the state procured for its Chief the honour, hitherto unprecedented among the Feudatories of the central provinces of the decoration of K. C. I. E. in January last."

୧୮୯୫ ମସିହା ମାର୍ଚ୍ଚ ମାସ ୭ ତାରିଖ କଲିକତାର ବଡ଼ଲାଟ ଭବନରେ ଏକ ବିଶିଷ୍ଟ ଦରବାରରେ ଉପାଧିପ୍ରାପ୍ତ ବହୁ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସମକ୍ଷରେ ରାଜା ସାର୍ ବାସୁଦେବ K. C. I. E. ଉଚ୍ଚ ଉପାଧିରେ ଭୂଷିତ ହେଲେ ତେଣୁ General review (Administrative report) କହନ୍ତି

"Lastly an event of great significance, though belonging to the history of 1895, has the advancement, in the New year's list of honours of the Raja of Bamra to the dignity of knight commander of Indian Empire, and his investiture with the insignia of the order, at the hands of his excellency the Grand Master at Calcutto on 7th March 1895"

"Raja Sri Sudhal Deo K. C I.E has advanced to the dignity of a knight commandership of the most Eminent Order of the Indian Empire in the honour's gazette of 1st January 1895. He attended the investiture held in Calcutta on the 7th March where he was duly invested by his Excellency the Grand Master with the insignia of the 2nd class of the order."

ଏ ପ୍ରକାର ଉପାଧି ଲାଭରେ ମଧ୍ୟପ୍ରଦେଶର ତଥା ଓଡ଼ିଶାର ଅନ୍ୟାନ୍ୟ ରାଜ୍ୟର ରାଜାମାନେ ଗର୍ବ ଅନୁଭବ କଲେ । କାରଣ ଏହା ଅନ୍ୟକୌଣସି ଧନ ସମ୍ପତ୍ତି, ଅର୍ଥ ବା ପ୍ରତିପତ୍ତି ଉପରେ ପ୍ରତିଷ୍ଠିତ ନ ଥିଲା, ପ୍ରତିଷ୍ଠିତ ଥିଲା ସାର ବାସୁଦେବ ସୁଢ଼ଳଦେବଙ୍କ ବ୍ୟକ୍ତିତ୍ୱର ପରାକାଷ୍ଠା ସଦୃଶ ବ୍ୟକ୍ତିଗତ ସାମର୍ଥ୍ୟ ବା ଯୋଗ୍ୟତା (Personal Merit) ଉପରେ । ଏହା ବ୍ୟକ୍ତିଗତ ଯୋଗ୍ୟତାର ଶ୍ରେଷ୍ଠ ପ୍ରଦର୍ଶନ ସମସାମୟିକ ତଥା ପରବର୍ତ୍ତୀ ରାଜାମାନଙ୍କ ଉପରେ ଗମ୍ଭୀର ଭାବେ ରେଖାପାତ କରିଥିଲା ।

ତେଣୁ ବଲ୍‌ଗମ୍ଭୀର ସ୍ୱରରେ ପ୍ରଶାସନ ବିବରଣୀ ପ୍ରକାଶ କଲେ । "The distrinction thus Conferred, is one in which the whole of Chhattrishgarh Feudatories have reason to feel special pride, as being without precedent in their history up to this time. It is the more gratifying as being a recognition, not of any conspicuous accident of rank, position, or wealth, but purely of Personal merit. It is to be hoped that it may serve as stimulus particularly to the younger geneation of chiefs in their endeavours to emelate the prudent and successful administration of the Raja of Bamra an administration of which the standard appears to be fully sustained in the record of the year under report" ରାଜା ସାର୍‌ ବାସୁଦେବଙ୍କର ଏ ପ୍ରକାର ସମ୍ମାନ ବୃଦ୍ଧି, ବିଶେଷତଃ ତାର ଏକ ଫଳପ୍ରଦ ସନ୍ନିଧ୍ୟ ପ୍ରଭାବ ଜ୍ୟେଷ୍ଠପୁତ୍ର ଟୀକାୟତ ସଚ୍ଚିଦାନନ୍ଦଙ୍କୁ ଅନୁପ୍ରାଣିତ କଲା । ତେଣୁ ପ୍ରଶାସନ ବିବରଣୀରେ ପ୍ରକାଶ ପାଇଲା । That record reflects credit both on Raja Sri Sudhal Deo himself and on his eldestson

Lal Satehidananda Deo, whom, as already repcrted the Raja has already entrusted subject of course to his own suprume control with immediate charge of all branches of the Administration." ରାଜା ସାର୍ ବାସୁଦେବ ସୁଢ଼ଳଦେବ ୧୮୯୫ ମାର୍ଚ୍ଚ ୭ ତାରିଖରେ ଯେଉଁ ସମ୍ମାନ ଲାଭ କଲେ ତାର ସୂଚନା ଭାରତୀୟ ପତ୍ରିକା Indian Mirror"ରୁ ନିମ୍ନପ୍ରକାରେ ମିଳିଥାଏ ।

(ମାର୍ଚ୍ଚ ୧୦ ତାରିଖ ୧୮୯୫)

"Mr. Cunningham read out the names of those whom it was intended to decorate and then Sir John Lambert, Sir Edwin collin and the Under Secretary to the Foreign Government escorted Raja Sudhol Deo of Bamra to the Dias. The Raja was not invested in usual manner, the ceremony of the accolade being dispeneed with. The other formalities in his case were however similar to those already described."

ତହିଁରୁ ବାମଣ୍ଡା ଓ ଖଡ଼ିଆଳର ଏକ ତୁଳନାତ୍ମକ ଚିତ୍ର ମଧ୍ୟ ମିଳିଥାଏ ।

"The state of Bamra and khariar still retain the lead, and afford typical example to the rest of two distinct school of administration the old and the new. A careful study of both of them and judicious adaptation to their own needs of all the best features of both, may safely be recommended those responsible for the administration of other states." ବୋଲିବା ବାହୁଲ୍ୟ ଯେ ରାଜା ବାସୁଦେବ ରାଜ୍ୟବାସୀଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ ପୂର୍ବକ ସୁସଭ୍ୟ ଓ ସୁଶିକ୍ଷିତ କରିବା ଦିଗରେ ସମ୍ପୂର୍ଣ୍ଣରୂପେ ଉଦ୍ୟମଶୀଳ ଥିଲେ । ସ୍ୱଳ୍ପ ଆୟ ତଥା ସୀମିତ ସମ୍ବଳ ମଧ୍ୟରେ ସେ ମଧ୍ୟ ସେ ରାଜ୍ୟର ବିଭିନ୍ନ ଉନ୍ନତି-ମୂଳକ କାର୍ଯ୍ୟରେ ଗଭୀର ମନୋନିବେଶ କରୁଥିଲେ । ଏହା ତାଙ୍କର ପ୍ରଜାବତ୍ସଳ ଲକ୍ଷଣ ଥିଲା । ତେଣୁ General Review 1895ରୁ ଜଣାଯାଏ—

"The Raja has to deal not only with limited resources, which however he has already shown himself

ready to spend liberally in any direction that seems to promise a return in the welfare of his subjects, but with an extremely backward, wild and apathetie population, whom I have every reason to believe that he is doing his utmost to educate and civilise."

୧୮୯୫ର ପ୍ରଶାସନ ବିବରଣୀ ଅନୁଯାୟୀ ରାଜା ବାସୁଦେବ ସୁଢ଼ଳଦେବ ପ୍ରଶାସନିକ ଦକ୍ଷତାର ପୁରସ୍କାର ସ୍ୱରୂପ ଏହି K.C.I.E ଉପାଧି ଲଭିବା ସୂଚନା ମିଳିଥାଏ ।

"The state was visited by me in May of the year under report and in December. The Raja and his sons attended the Chief-Commissioner's Darbar at Raipur. The advancement of the Raja to the dignity of K.C.I E on 1st January 1895 and his subsequent investiture with the insignia at Calcutta, were noticed in the last years view. The Prudent and Statesman like Administration of which this was the Reward continues to distinguish Raja Sir Sudhal Deo above his fellow and to be a model for other states. Lal Satchidananda Deo, the Raja's eldest son, who continued to be in subordinate charge of the entire administration, gives every indication of having inherited his father's high qualities a fact which renders the future of his state hopeful."

ରାଜା ବାସୁଦେବ ସୁଢ଼ଳଦେବଙ୍କ ମାଦକ ଦ୍ରବ୍ୟ ସେବନ ନିଷେଧ ବ୍ୟବସ୍ଥା ଅତ୍ୟନ୍ତ ଆଦର୍ଶସ୍ଥାନୀୟ ଓ ଏହା ବହୁ ପରିମାଣରେ ବ୍ରିଟିଶ ସରକାରଙ୍କ ପ୍ରୀତି କରିଥିଲା, ଯାହା କି ତାଙ୍କର ଶାସନପ୍ରଣାଳୀର ଏକ ଉଚ୍ଚକୋଟୀର ନିର୍ମଳ ଆଦର୍ଶ । ତାର ସୁଦୂର ପ୍ରୟାସ ପ୍ରଭାବ ଅପ୍ରତିହତ ଭାବେ ସମଗ୍ର ଭାରତରେ ପରିବ୍ୟାପ୍ତ ହେଲା । ତାହାର ନିଛକ ପରିପ୍ରକାଶ ତଦାନୀନ୍ତନ ପରିଭ୍ରମଣକାରୀ Baptist Missionary P.E. Heberlet ଙ୍କ ସମ୍ବଲପୁରରୁ ତା ୧୭-୪-୧୮୯୭ରେ ପ୍ରଦତ୍ତ ବିବରଣୀରୁ ପ୍ରାପ୍ତ ହୋଇଥାଏ ।

"Its approval of his general administration was signified, not long ago, by conferring the honour of Knighthood, but the action of Sir Sudhal Deo, K.C.I.E in suppressing the opium traffic within his jurisdiction is deserving of far higher recognition than that, and will meet the hearty commendations of all who desire the welfare of the people of India.

It would be happy thing if other Indian princess and also the great British Government copied the example of these rulers and refused to derive any revenue from the sale of a drug so harmful to the people and therefore in its ultimate results, so injurious to the prosperity of the state."

ତେଣୁ ଏହା K C I.E ଉପାଧି ଲଭ ପରବର୍ତ୍ତୀ ପ୍ରସ୍ତାବରେ ଶ୍ରେଷ୍ଠ ନିଦର୍ଶନ ବୋଲି ମନେ ହୁଏ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ K.C.I.E ଉପାଧି ଲାଭ ପରେ ଅଦମ୍ୟ ଉତ୍ସାହ, ଅଜସ୍ର ସମ୍ମାନରେ ପ୍ରଶାସନକ କ୍ଷେତ୍ରରେ ମନୋନିବେଶ କଲେ । ତାର ଯଶ ସୌରଭ ଦିଗବିଦିଗ ଆମୋଦିତ କଲା । ତେଣୁ ୧୮୯୯ର ପ୍ରଶାସନ ବିବରଣୀ ପ୍ରକାଶ କଲେ, (General remark) ।

"The state was visited by me for the first time during the year, and it was a pleasure to find that the administration is generally maintained on efficient lines. Much has been done towards opening out the state by construction of good surface road, and this has resulted in a considerable extension of cultivation, whilst it has permitted the profitable working of the state forests situated at some considerable distance from the railway.

"The people seem prosperous and contenented under their Raja's rule and the administration of most departments is systematically carried on."

ସାର୍ ବାସୁଦେବ ସୁଢ଼ଳଦେବଙ୍କ ଅନ୍ତିମ ଜୀବନର କିଛୁକାଳ ଅବ୍ୟବହିତ ପୂର୍ବରୁ ୧୯୦୨ ମସିହାରେ ପ୍ରକାଶିତ "Notes on feudatory state 1902 ରୁ ଜଣାଯାଏ ଯେ "The administration is one of the most successful among states managed by their own chiefs, and the feudatory chief has been ably assisted in the conduct of affairs by his eldest son Tikayat Satichidananda Deo The Feudatory chief was invited to the coronation ceremony at Delhi, but un-fortunately was prevented by a serious illness from attending them.

ଉପରୋକ୍ତ ପ୍ରଶାସନ ବିବରଣୀମାନଙ୍କୁ ଅନୁଧ୍ୟାନ କଲେ ଜଣାଯାଏ ଯେ ମୁଖ୍ୟତଃ ବାମଣ୍ଡାର ପ୍ରଜାକୁଳ ଉନ୍ନତ ଓ ଶାନ୍ତ ଜୀବନ ଯାପନ କରୁଥିଲେ । ବାମଣ୍ଡାର ପ୍ରଶାସନିକ କ୍ଷେତ୍ରରେ ଅନେକ ବିଭାଗ ସୁସ୍ଥିରୂ ରୂପେ ପରିଚାଳିତ ହେଉଥିଲା । ସର୍ବୋପରି ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱର ୩୪ ବର୍ଷ (୧୮୬୯-୧୯୦୩) ପର୍ଯ୍ୟନ୍ତରେ (ପ୍ରତ୍ୟକ୍ଷଶାସନକାଳ, ୨୯ ବର୍ଷ (୧୮୭୪-୧୯୦୩) ଦୁର୍ଭିକ୍ଷର କରାଳ ଲୀଳା, ଦସ୍ୟୁ ଉପଦ୍ରବ ଆଦିର ଯେତେ ଝଡ଼ଝଞ୍ଜା ବୋହିଗଲେ ମଧ୍ୟ ପ୍ରଜାମାନେ ରାମରାଜ୍ୟ ସଦୃଶ ଅଖଣ୍ଡ ସୁଖଶାନ୍ତିରେ କାଳାତିପାତ କରୁଥିଲେ ବୋଲିବା ବାହୁଲ୍ୟ ମାତ୍ର ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ 'ସ୍ୱାଭିମାନୀ ଥିଲେ । ତେଣୁ ଓଡ଼ିଆ ଭାଷା, ଓଡିଆ ସାହିତ୍ୟ ତଥା ଓଡ଼ିଶା ପ୍ରଦେଶର ମର୍ଯ୍ୟାଦା ବୃଦ୍ଧି ଦିଗରେ ସର୍ବଦା ତତ୍ପର ଥିଲେ । ତେଣୁ ନିଜେ କୋର୍ଟ କଚେରୀରେ ଓଡ଼ିଆ ଭାଷାର ପ୍ରଚଳନ ପୂର୍ବକ ତାର ପ୍ରସାର ସାଧନ କରିଥିଲେ । ଯଦିଓ ସ୍ଥଳ ବିଶେଷରେ ଇଂରେଜ ସରକାରଙ୍କ ସଙ୍ଗେ ଇଂରାଜୀରେ ପତ୍ରାଳାପ କରୁଥିଲେ , ସଂସ୍କୃତ ଭାଷା ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ତେଣୁ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟର ଉନ୍ନତିକଳ୍ପେ ରାଜକୀୟ ପୃଷ୍ଠପୋଷକତା ପ୍ରଦାନ ପ୍ରଶାସନିକ କ୍ଷେତ୍ରରେ ତାଙ୍କର ଏକ ଉଲ୍ଲେଖନୀୟ ଘଟଣା ।

ଉପରୋକ୍ତ ଦୃଷ୍ଟିକୋଣରୁ ବିଚାରକଲେ ଜଣାଯାଏ ଯେ ରାଜା ସାର୍ ବାସୁଦେବ ସୁଢ଼ଳଦେବ K C. I. E. କେବଳ ଜଣେ ଉଚ୍ଚକୋଟୀର ପ୍ରଶାସକ, ଲୁହିନ୍ତ, ସରସ ସାହିତ୍ୟିକ ତଥା କବି ଓ ସଂସ୍କୃତଜ୍ଞ ପଣ୍ଡିତ । ତାହା ପରବର୍ତ୍ତୀ ବିବରଣୀରୁ ସହଜରେ ଉପଲବ୍ଧ ହୁଏ । ତେଣୁ ରାଜା ସାର୍ ବାସୁଦେବ

ସୁଢ଼ଳଦେବଙ୍କ ପଣ୍ଡିତ ସଭାର ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାରଙ୍କ ଭାଷାରେ—

"ଦେଖିଲି ବାମଣ୍ଡାର ରାଜଧାନୀ ଶୋଭା,
ଯା ଛବି ଦର୍ଶନେ ଜନମନ ଲୋଭା ।
ହିତଗଙ୍ଗବଂଶ ନିଷ୍କଳଙ୍କ ରବି
ବାମଣ୍ଡେଶ ବାସୁଦେବ ରାଜକବି ।"

ଉକ୍ତିଟିର ଯାଥାର୍ଥ୍ୟ ପ୍ରତିପାଦିତ ହୋଇଥାଏ ।

ସମଗ୍ର ଭାରତରେ ରାଜା ବାସୁଦେବ ସୁଢ଼ଳଦେବ ଉଚ୍ଚକୋଟୀର ପ୍ରଶାସନ ପଦ୍ଧତି ପ୍ରଚଳନ ପୂର୍ବକ ଆଦର୍ଶ ସୁଶାସନ ପ୍ରତିଷ୍ଠା କରିଥିବାରୁ ଭାରତର ସର୍ବୋଚ୍ଚ ସମ୍ମାନ K C. I. E. ଉପାଧି ପ୍ରାପ୍ତ ହୋଇ ବିଶ୍ୱଦରବାରରେ ଦକ୍ଷ ପ୍ରଶାସକ ରୂପେ ସୁବିଦିତ ହୋଇପାରିଛନ୍ତି—ଏହା ଭାରତ ପକ୍ଷେ କମ ଗୌରବର ବିଷୟ ନୁହେଁ । ବୋଲିବା ବାହୁଲ୍ୟ ମାତ୍ର ।

# ତୃତୀୟ ପରିଚ୍ଛେଦ

# ବାମଣ୍ଡାରେ ଶିକ୍ଷା ଓ ସାହିତ୍ୟର ଭିତ୍ତିଭୂମି ଓ ରାଜା ବାସୁଦେବ

## ରାଜା ସାର୍ ବାସୁଦେବ ଓ ବାମଣ୍ଡାର ଶିକ୍ଷାପ୍ରସଙ୍ଗ

ରାଜା ସାର୍ ବାସୁଦେବଙ୍କ ସାହିତ୍ୟିକ ପ୍ରତିଭା ଛାତ୍ରଜୀବନରୁ ଅଙ୍କୁରିତ ହୋଇ ବିକଶିତ ହେଲା ପରବର୍ତ୍ତୀ ଜୀବନରେ । ବହୁ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ ଅନୁଶୀଳନ ପୂର୍ବକ ଅସାଧାରଣ ପାଣ୍ଡିତ୍ୟ ଲାଭ କଲେ ଯାହା ପୂର୍ବେ ତାଙ୍କର ଛାତ୍ର ଜୀବନ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଛି । ବର୍ତ୍ତମାନ ତାଙ୍କର ରାଜ୍ୟଶାସନ କାଳରେ ସାହିତ୍ୟର ବିକାଶ କ୍ଷେତ୍ରରେ ତାଙ୍କର ବିଭିନ୍ନ ଗଠନ ମୂଳକ ପଦକ୍ଷେପ ଓ ତଦ୍ବିଷୟରେ ତାଙ୍କର ନିଷ୍ଠା ସମ୍ପର୍କରେ ସମ୍ୟକ୍ ଆଲୋଚନା ଅବଶ୍ୟ କର୍ତ୍ତବ୍ୟ ।

ରାଜା ବାସୁଦେବ ସୁଢ଼ଳଦେବ ଯେଉଁ ସମୟରେ ରାଜସିଂହାସନାଧିରୂଢ଼ ହେଲେ, ସେତେବେଳେ ବାମଣ୍ଡା ଅନୁନ୍ନତ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ରୂପେ ପରିଗଣିତ ହେଉଥିଲା । ଲୋକଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଘଟି ନଥିଲା । ସଭ୍ୟତାର ଆଲୋକ ପ୍ରବେଶ ଲାଭ କରି ନ ଥିଲା । ତେଣୁ ରାଜା ବ୍ରଜସୁନ୍ଦର ଯାହା କିଛି ସଂସ୍କାର ବିଧାନର ଅଗ୍ରୟାରମ୍ଭ କରିଥିଲେ । ରାଜା ବାସୁଦେବ ନିତ୍ୟ ନୂତନ ରୂପେ ପର୍ଯ୍ୟାପ୍ତ ପରିମାଣରେ ତାର ପୂର୍ଣ୍ଣାଙ୍ଗତା ସାଧନ କରିବାରେ ବ୍ରତୀ ହେଲେ । ତେଣୁ ରାଜ୍ୟ ଅଧିବାସୀଙ୍କ ଜୀବନ ଯାପନ ରୀତିର ପରିମାର୍ଜନ ନିମନ୍ତେ ସର୍ବପ୍ରଥମେ ବାଧ୍ୟତାମୂଳକଭାବେ ପ୍ରାଥମିକ ଶିକ୍ଷାର ପ୍ରଚଳନ କଲେ । ଫଳତଃ ଲୋକଙ୍କ ମଧ୍ୟରେ ଅଜ୍ଞାନତା ଅନ୍ଧକାର କ୍ରମଶଃ ଦୂର ହେବାକୁ ଲାଗିଲା ।

ବିଭିନ୍ନ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟମାନ (ନିମ୍ନ ଓ ଉଚ୍ଚ) ପ୍ରତିଷ୍ଠା ଦିଗରେ ଆପ୍ରାଣ ଉଦ୍ୟମ କଲେ । ସେ ଓଡ଼ିଆ ଭାଷା ତଥା ଓଡ଼ିଆ ସାହିତ୍ୟର ଉନ୍ନତି ସାଧନରେ ତତ୍ପର ହେଲେ ।

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାରେ ଶିକ୍ଷାର ସ୍ୱରୂପ ୧୮୮୧, ୮୯୧ ଓ ୧୯୦୧ ଜନଗଣନା (Census)ରୁ ଜଣାଯାଏ ଯେ ଭାରତରେ ଯଥାକ୍ରମେ ଅଶିକ୍ଷିତ ସଂଖ୍ୟା ୯୭.୫%, ୯୫.୪% ଓ ୯୪.୭% ଅର୍ଥାତ୍ ଶିକ୍ଷିତ

ସଂଖ୍ୟା ୩.୫%, ୪.୬% ଓ ୫.୩% । ୧୮୮୮-୮୯ରେ ସରକାରୀ-ବେସରକାରୀ ବିଦ୍ୟାଳୟ ସଂଖ୍ୟା ଥିଲା ୧,୩୧,୦୭୧ ଓ ଛାତ୍ର ସଂଖ୍ୟା ଥିଲା ୩୫,୪୪,୨୦୭ ।

ମାତ୍ର ଚାରି ପରବର୍ଷ ବୃଦ୍ଧି ଲାଭ କରି ବିଦ୍ୟାଳୟ ସଂଖ୍ୟା ହେଲା ୧,୩୪,୦୭୧ ଓ ଛାତ୍ର ସଂଖ୍ୟା ହେଲା ୩୭,୨୭,୩୮୦ । ୧୮୮୮-୮୯ରେ ଉଚ୍ଚଶିକ୍ଷା ପ୍ରାପ୍ତ ଛାତ୍ର ସଂଖ୍ୟା ୧୧,୨୫୦ ଓ ଓକିଲ ସଂଖ୍ୟା ୨୭୯୦ ଥିଲା ମାତ୍ର ଚାରି ପରବର୍ଷ ସେହି ସଂଖ୍ୟା ହେଲା ଯଥାକ୍ରମେ ୧୧,୨୧୯ ଓ ୩୦୪୯ ।

ଏହି ଦୁଇବର୍ଷରେ ଶିକ୍ଷା ପାଇଁ ବିନିଯୁକ୍ତ ଅର୍ଥ ପରିମାଣ ଯଥାକ୍ରମେ ଟ ୨,୭୦,୯୨,୩୨୪/ ଓ ଟ ୨,୭୭,୫୮,୬୯୭/ । ୧୯୦୨ ମସିହା ବେଳକୁ ସମଗ୍ର ଭାରତରେ ମହାବିଦ୍ୟାଳୟ (College) ସଂଖ୍ୟା ଥିଲା ୮୦୭୦ ।

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ୧୮୭୪-୧୯୦୧ ଖ୍ରୀ: ମଧ୍ୟରେ ଓଡ଼ିଶାରେ ଏମ. ଏ. ଡିଗ୍ରୀଧାରୀ ୪ ଜଣ, ବି. ଏ. ଡିଗ୍ରୀଧାରୀ ୯୪ ଜଣ ଓ ବି.ଏଲ. ଡିଗ୍ରୀଧାରୀ ୨୩ ଜଣ ମାତ୍ର ଥିଲେ ।

ତଦନୁରୂପ ବାମଣ୍ଡାରେ ରାଜା ବ୍ରଜସୁନ୍ଦରଦେବ ଗୋଟିଏ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ୧୮୭୨ ସାଲରେ ଆଉ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୮୯୦ ମସିହା ବେଳକୁ ୧୮ଟି ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୮୯୪ ସାଲରେ ୧୩ଟି ବିଦ୍ୟାଳୟରୁ ମୋଟ ୯୦ ଜଣ ଛାତ୍ର ଉତ୍ତୀର୍ଣ୍ଣ ହେଲେ ଓ ସେମାନଙ୍କ ମଧ୍ୟରୁ ୭୦ ଜଣ ରାଜକର୍ମଚାରୀରୂପେ ରାଜା ବାସୁଦେବଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ ।

୧୮୯୦ ସାଲରେ ୬୫୦ ଜଣ ଛାତ୍ରଛାତ୍ରୀ ବିଦ୍ୟାଶିକ୍ଷା ଲାଭ କରୁଥିଲେ । ସେମାନଙ୍କ ମଧ୍ୟରୁ ଉଚ୍ଚ ପ୍ରାଥମିକ ପରୀକ୍ଷାରେ ୧୯ ଜଣରୁ ମାତ୍ର ୭ ଜଣ ବୃତ୍ତି ଲାଭ କରି ଉତ୍ତୀର୍ଣ୍ଣ ହେଲେ ।

୧୮୯୧ ମସିହାରେ ଛତିଶଗଡ଼ ବିଭାଗୀୟ କମିଶନରଙ୍କ ବାମଣ୍ଡା ଶୁଭ-ଗମନ ଉପଲକ୍ଷେ ରଚିତ ସମ୍ବର୍ଦ୍ଧନା ତଥା ଅଭିନନ୍ଦନ ଉପଲକ୍ଷେ ବିରଚିତ କବିତାରୁ ତତ୍କାଳୀନ ଶିକ୍ଷାର ସ୍ପଷ୍ଟ ଚିତ୍ର ପ୍ରତିଭାତ ହୋଇଥାଏ ।

"ନ ଥିଲା ଏ ରାଜ୍ୟେ ଏକ ମାତ୍ର ବିଦ୍ୟାଗାର,
ବାମଣ୍ଡାକୁ ଘୋଟିଥିଲା ଅଜ୍ଞାନ ଅନ୍ଧାର,
ନ ଜାଣନ୍ତି ଲେଖାପଢ଼ା ନାହିଁ ପାଠଶାଠ
ସମସ୍ତେ ଥିଲେ କେବଳ ମୂରୁଖ ନିରାଟ ।

× × ×

ବର୍ତ୍ତମାନ ନୃପତିଙ୍କ ପ୍ରବଳ ଯତ୍ନରେ
ବହୁ ବିଦ୍ୟାଳୟ ପ୍ରତିଷ୍ଠିତ ବାମଣ୍ଡାରେ
ଦିନକୁ ଦିନ ହେଉଛି ବିଦ୍ୟାର ଉନ୍ନତି ।

× × ×

(ସମ୍ବଲପୁର ହିତୈଷିଣୀ ୧୮୯୧)

ରାଜା ବାସୁଦେବ ସୁଢ଼ଳଦେବ ବିଦ୍ୟାଶିକ୍ଷାର ଉନ୍ନତିକୁ ଓଡ଼ିଆ ସାହିତ୍ୟ ଉନ୍ନତିର ଏକ ମୌଳିକ ମାଧ୍ୟମ ରୂପେ ଗ୍ରହଣ କରି ଏଥିରେ ମନପ୍ରାଣ ଗଭୀର ଭାବେ ନିଯୋଗ କଲେ ।

## ଓଡ଼ିଶାର ଜ୍ଞାନାଲୋକ ବର୍ତ୍ତିକା —

## ଦେବଗଡ଼ର ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ

ରାଜା ସାର୍ ବାସୁଦେବ ବଡ଼ ଜ୍ଞାନୀ, ସୁଚତୁର ଓ ଉଚ୍ଚ ମେଧା ସମ୍ପନ୍ନ ବ୍ୟକ୍ତି ଥିଲେ । ସେ ରାଜକୁମାର ଓ ଉଚ୍ଚ ଶିକ୍ଷାଭିଳାଷୀ ପ୍ରଜା ସାଧାରଣଙ୍କ ସନ୍ତାନଙ୍କ ସୁଶିକ୍ଷା ଲାଭ ନିମନ୍ତେ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କଲେ ୧୮୮୬ ମସିହାରେ । ଏହା କଲିକତା ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଲାଭ କଲା । ଏଥିରେ ପ୍ରଥମେ ପ୍ରଧାନ ଶିକ୍ଷକ ଆବଶ୍ୟକ ହେବାରୁ ରାଜା ବାସୁଦେବଙ୍କ ଅନ୍ତରଙ୍ଗ ବନ୍ଧୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ କଲିକତାର ସାହିତ୍ୟିକ ବିଜୟଚନ୍ଦ୍ର ମଜୁମଦାର B. A.ଙ୍କୁ ପ୍ରେରଣକଲେ । ସେ (୧୮୮୬-୧୮୮୮) ଦୁଇ ବର୍ଷ, ତା ପରେ ଗଣେଶ୍ୱର ପଟ୍ଟନାୟକ ଚାରିବର୍ଷ (୧୮୮୮-୧୮୯୨), ତା ପରେ ରେବତୀମୋହନ ଦାସଗୁପ୍ତ M. A. ଓ ଯୋଗେଶ ଚନ୍ଦ୍ର ଦାସ B. A. ପ୍ରଧାନ ଶିକ୍ଷକତା ସମ୍ପାଦନ କଲେ ରାଜା ବାସୁଦେବଙ୍କ ଅନ୍ତିମ ରାଜତ୍ୱକାଳ ପର୍ଯ୍ୟନ୍ତ ।

ଉଚ୍ଚ ଶିକ୍ଷିତ ଶିକ୍ଷକ ବୃନ୍ଦ ଏଥିରେ ଶିକ୍ଷକତା ସମ୍ପାଦନ ପୂର୍ବକ ଏକ ଉଚ୍ଚକୋଟୀର ବାତାବରଣ ସୃଷ୍ଟି କରିଥିଲେ । ରାଜା ବାସୁଦେବ ମୁଖ୍ୟତଃ ପ୍ରଧାନ ଶିକ୍ଷକ ରେବତୀ ମୋହନ ଦାସଗୁପ୍ତଙ୍କୁ ପ୍ରାଇଭେଟ ସେକ୍ରେଟେରୀ ଓ ଦ୍ୱିତୀୟ ଶିକ୍ଷକ ତଥା ପରେ ପ୍ରଧାନ ଶିକ୍ଷକ ଯୋଗେଶ ଚନ୍ଦ୍ର ଦାସଙ୍କୁ ଦେବଗଡ଼ କାଉନସିଲର ସେକ୍ରେଟେରୀ ରୂପେ କାର୍ଯ୍ୟ ସମ୍ପାଦନ ନିମନ୍ତେ ନିଯୁକ୍ତି ପ୍ରଦାନ କରିଥିଲେ ।

ବାମଣ୍ଡାରେ ଏହାର ପରିଣାମ ସମ୍ପର୍କରେ ୧୮୯୬ ବେଳକୁ ପ୍ରଶାସନ ବିବରଣୀ (Administration Report) ନିର୍ଦ୍ଦେଶ ଦିଅନ୍ତି :—

Raja Sudhal Deo is a thoroughly competent and enlightened ruler not only has he himself done a great

deal to improve his state, but by giving his sons the excellent education both in English and Vernacular he has done his best to secure the future prosperity of his People. (H. H. Priest) ଶିକ୍ଷାର କ୍ରମବିକାଶ ଧାରା ସମ୍ପର୍କରେ ପ୍ରଶାସନ ବିବରଣୀ ୧୮୯୩ରେ କହନ୍ତି—

His attention to the Higher education of his subjects is also praiseworthy.

ଏତଦ୍‌ବ୍ୟତୀତ ୧୮୯୫ ମସିହାରେ—

The Headquarters School at Deogarh which Provides a high education both in vernacular and English and presided over by highly qualified masters, having long since established a reputation which appears to have fully sustained in the year under Report.

ଏହାର ଗୌରବ ୧୮୯୮ ମସିହା ବେଳକୁ ପ୍ରଶାସନ ବିବରଣୀ ପ୍ରକାଶ କଲେ—

Bamra has maintained its reputation for a sound system of rural education, its Rajkumar School is the best in the State. ରାଜା ବାସୁଦେବ ଶେଷ ପର୍ଯ୍ୟନ୍ତ ଅର୍ଥାତ ୧୯୦୨ ମସିହା ବେଳକୁ ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପରିଚାଳନା ଅତି ଉତ୍ତମ ଥିଲା । ତେଣୁ Notes on Feudatory States କହିଲେ, (1902.)

The Rajkumar School appears to be well managed It is reported that the Minor Chief of Bonaigarh was sent to the school during the year under the orders of the Government of Bengal.

ଏହି ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ଭୂମିକା ଶିକ୍ଷା ତଥା ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ଅତ୍ୟନ୍ତ ଆଦର୍ଶ ସ୍ଥାନୀୟ ଥିଲା ।

ତାର ଜ୍ୱଳନ୍ତ ନିଦର୍ଶନ "ବାମଣ୍ଡା ଛାତ୍ର ସମିତି" ୧୮୯୦ ।

## "ବାମଣ୍ଡା ଛାତ୍ର ସମିତି"ର ସ୍ୱରୂପ ଓ ଆଭିମୁଖ୍ୟ

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ୧୮୯୦ ମସିହାରେ ରାଜକୁମାର ଉଚ୍ଚଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଗଣେଶ୍ୱର ପଟ୍ଟନାୟକଙ୍କ ସମୟରେ

ବାମଣ୍ଡା ଛାତ୍ର ସମିତି ଗଠିତ ହେଲା । ଏହି ସମିତିର ସଭାପତି ଥିଲେ ଗ୍ରନ୍ଥ ଟୀକାସ୍ମୃତ ସଚ୍ଚିଦାନନ୍ଦ ଦେବ ଓ ସମ୍ପାଦକ ଥିଲେ ତାଙ୍କର ସହାଧ୍ୟାୟୀ ଜଳନ୍ଧର ଦେବ । ସେତେବେଳେ ଓଡ଼ିଆ ସାହିତ୍ୟର ମଧ୍ୟଯୁଗୀୟ ଧାରାର ଅବସାନ ଘଟି ଆଧୁନିକ ଯୁଗର ଆରମ୍ଭ ହୋଇଥିଲେ ହେଁ ଗଦ୍ୟ ତଥା ପ୍ରବନ୍ଧ ସାହିତ୍ୟର ଆଶାନୁରୂପ ଉନ୍ନତି ସାଧିତ ହୋଇ ପାରି ନ ଥିଲା । ପ୍ରବନ୍ଧ ରଚନା ପ୍ରତି ସାଧାରଣତଃ ମାନେ ବିମୁଖ ଥିଲେ । ତେଣୁ ପ୍ରବନ୍ଧ ସାହିତ୍ୟର ଉନ୍ନତି ସାଧନ ଏ ବାମଣ୍ଡା ଛାତ୍ର ସମିତିର ପ୍ରଧାନ ଉଦ୍ଦେଶ୍ୟ ତଥା ଆଭିମୁଖ୍ୟ ଥିଲା । ଯେହେତୁ ପଦ୍ୟ ସାହିତ୍ୟର ପ୍ରଭାବ ଅତ୍ୟୁତ୍କଟ ଥିଲା, ତେଣୁ କାବ୍ୟକବିତା ମାଧ୍ୟମରେ ଭାବ ପରିପ୍ରକାଶ ସହଜସାଧ୍ୟ ଥିଲା । ଏହି ପରିପ୍ରେକ୍ଷୀରେ ପ୍ରବନ୍ଧ ସାହିତ୍ୟର ଉନ୍ନତି କଲେ ସମଗ୍ର ଓଡ଼ିଶାରେ ବାମଣ୍ଡାରେ ଏ ପ୍ରକାର ଉଦ୍ୟମ ପ୍ରଶଂସନୀୟ ।

ଆଭିମୁଖ୍ୟ :—

ଶିକ୍ଷକମାନେ ପ୍ରତ୍ୟେକ ସପ୍ତାହର ସୋମବାର ଦିନ ଗୋଟିଏ ବିଷୟ ନିର୍ଦ୍ଧାରଣ କରି ଦିଅନ୍ତି । ଛାତ୍ରମାନେ ପ୍ରବନ୍ଧ ରଚନା କରି ସେହି ସପ୍ତାହର ରବିବାର ଦିନ ସମବେତ ହୋଇ ସ୍ୱୀୟ ପ୍ରବନ୍ଧ ପାଠ କରନ୍ତି । ପ୍ରତ୍ୟେକ ପ୍ରବନ୍ଧର ତାତ୍ତ୍ୱିକ ସମାଲୋଚନା ଅନୁଷ୍ଠିତ ହୁଏ । ତାର ମୂଲ୍ୟାୟନ ହୁଏ ।

ଶ୍ରେଷ୍ଠ ବିବେଚିତ ପ୍ରବନ୍ଧର ଲେଖକଙ୍କୁ ପୁରସ୍କୃତ କରାଯାଏ । ତଦ୍ଦ୍ୱାରା ଛାତ୍ରମାନଙ୍କ ମଧ୍ୟରେ ପ୍ରବନ୍ଧ ରଚନା କରି ପୁରସ୍କାର ତଥା ପ୍ରଶଂସା ପାଇବା ନିମିତ୍ତ ପ୍ରତିଯୋଗିତା ଭିତ୍ତିରେ ଅନୁରାଗ ବୃଦ୍ଧି ପାଏ । ଏ ପ୍ରକାର ପରିବେଶରେ ବହୁ ପ୍ରାବନ୍ଧିକଙ୍କୁ 'ବାମଣ୍ଡା ଛାତ୍ର ସମିତି' ଗଠନ କରି ଉଚ୍ଚ ସମ୍ମାନ ପ୍ରଦାନରେ ସମର୍ଥ ହୋଇଛି । ତାର ଜ୍ୱଳନ୍ତ ଉଦାହରଣ ଓଡ଼ିଶାର ସ୍ୱନାମଧନ୍ୟ କୃତବିଦ୍ୟ ପ୍ରାବନ୍ଧିକ ଜଳନ୍ଧର ଦେବ ।

## ରାଜା ସାର୍ ବାସୁଦେବଙ୍କ ବୈଜ୍ଞାନିକ ମନୋବୃତ୍ତି :

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଜଣେ ଉଚ୍ଚକୋଟୀର ରସିକ, ଦାର୍ଶନିକ କବି ହେଲେ ହେଁ ପ୍ରାଚୀନ ଓ ଆଧୁନିକ ରୁଚିର ସମନ୍ୱୟ ସାଧନ ତାଙ୍କର ପ୍ରଶାସନିକ ପ୍ରଣାଳୀର ପ୍ରଧାନ ବୈଶିଷ୍ଟ୍ୟ । ପତ୍ନୀ ବିୟୋଗ ପରେ ତୀର୍ଥାଟନ ତଥା ଦେଶ ଭ୍ରମଣରେ ଉତ୍ତର ଭାରତର କାଶୀ ପ୍ରଭୃତି ସ୍ଥାନ ପରିଦର୍ଶନ କଲେ । ତାଙ୍କର ବିଶିଷ୍ଟ ଲକ୍ଷଣ, ସେ ଯେଉଁ ସ୍ଥାନରେ ଯାହା କିଛି ନୂତନ ବୈଶିଷ୍ଟ୍ୟ ଲକ୍ଷ୍ୟ କରନ୍ତି ତାର ଅନୁକୃତ ରାଜଧାନୀ ଦେବଗଡ଼ରେ ପ୍ରତି । କରି ସୌଷ୍ଠବ ସମ୍ପାଦନରେ ବ୍ରତୀ ଥାନ୍ତି । ତେଣୁ କାଶୀକୁ ଭ୍ରମଣ କାଳରେ ତାର ବୈଜ୍ଞାନିକ ତଥ୍ୟ ଭିତ୍ତିକ ମାନମନ୍ଦିର (Observatory) ତାଙ୍କ ବୈଜ୍ଞାନିକ ମନୋବୃତ୍ତିକୁ

ସ୍ପର୍ଶ କଲା । ତେଣୁ କାଶୀ ଓ ମିଥିଳାରୁ ବହୁ ଜ୍ୟୋତିର୍ବିଦ୍ ପଣ୍ଡିତ ଆଣି ଦେବଗଡ଼ରେ ପ୍ରତିଷ୍ଠିତ ମାନମନ୍ଦିରର ମର୍ଯ୍ୟାଦା ବୃଦ୍ଧି କଲେ । ପ୍ରାଚୀନ ତନ୍ତ୍ରର ଅନୁଶୀଳନ କଲେ । ଏହି ଅଭିପ୍ରାୟରେ ଏକ ବିଜ୍ଞାନାଗାର ପ୍ରତିଷ୍ଠିତ କରାଇ ରାଜକୁମାର ତଥା ସାଧାରଣ ଛାତ୍ରମାନଙ୍କର ବିଜ୍ଞାନାନୁଶୀଳନ ପ୍ରବୃତ୍ତି ଚରିତାର୍ଥ କରିପାରିଥିଲେ । ଏଥିପାଇଁ ତାଙ୍କୁ ୫୧୫,୦୦୦/-ହାରାହାରି ବିନିଯୋଗ କରିବାକୁ ପଡ଼ିଥିଲା । ଏହି ମାନମନ୍ଦିର ତଥା ବିଜ୍ଞାନାଗାରର ଉପଯୁକ୍ତ ବ୍ୟବହାର ନିମିତ୍ତ ରେଭେନ୍‌ସା ମହାବିଦ୍ୟାଳୟର ବରିଷ୍ଠ ବିଜ୍ଞାନ ଅଧ୍ୟାପକ ବିଜ୍ଞାନାଗ୍ରଣୀ ବିଦ୍ୟାବାରିଧି ଯୋଗେଶଚନ୍ଦ୍ର ରାୟ, ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ନିମନ୍ତ୍ରଣ କ୍ରମେ ଆସି ଦେବଗଡ଼ରେ ସାମୟିକ ଅବସ୍ଥାନ ପୂର୍ବକ ବିଭିନ୍ନ ଯନ୍ତ୍ରପାତି (Apparatus) ତଥା ଦୂରବୀକ୍ଷଣ, ଅଣୁବୀକ୍ଷଣ, ବିଦ୍ୟୁତ ଉତ୍ପାଦନ ଯନ୍ତ୍ର ପ୍ରଭୃତିର ବ୍ୟବହାର ପ୍ରଣାଳୀ ଓ ଫଳାଫଳ ସମ୍ପର୍କରେ ଛାତ୍ରମାନଙ୍କୁ ସମ୍ୟକ୍, ବୈଜ୍ଞାନିକ ଧାରଣା ପ୍ରଦାନ ପୂର୍ବକ ଉକ୍ତ ମାନମନ୍ଦିର ତଥା ବିଜ୍ଞାନାଗାରର ସୌଷ୍ଠବ ସମ୍ପାଦନା କଲେ ।

ବିଶେଷତଃ ରାଜକବି ସଚ୍ଚିଦାନନ୍ଦ ଓ ମହାମହୋପାଧ୍ୟାୟ ଜଳନ୍ଧରଦେବ ପ୍ରଭୃତି ଛାତ୍ରବୃନ୍ଦ ବୈଜ୍ଞାନିକଶିକ୍ଷା ଲାଭ କରି ପ୍ରକୃତିର ପର୍ଯ୍ୟବେକ୍ଷଣ, ଜ୍ୟୋତିଷ ଶାସ୍ତ୍ରବାଦ, ଗ୍ରହନକ୍ଷତ୍ରାଦିର ଗତିବିଧି ଓ କ୍ରିୟାକଳାପ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଜ୍ଞାନ ଲାଭ କଲେ । ତେଣୁ ରାଜକବି ସଚ୍ଚିଦାନନ୍ଦଙ୍କ 'ବିଜ୍ଞାନ ବିନୋଦ' ଉପାଧି ଲାଭ ଏବଂ ତତ୍ ପୂର୍ବ ବିଷୟକ ('ବୃଷ୍ଟି ବିଜ୍ଞାନ', ଯୌନ ବିଜ୍ଞାନ) ସାହିତ୍ୟକୃତି ସମ୍ପାଦନରେ । ପ୍ରାବନ୍ଧିକ ଜଳନ୍ଧରଦେବ ସେହିପରି ଉପଲବ୍ଧ ଜ୍ୟୋତିର୍ବିଦ୍ୟା ବିଷୟକ ଜ୍ଞାନକୁ ବିଭିନ୍ନ ପ୍ରବନ୍ଧାକାରରେ ପରବର୍ତ୍ତୀ କାଳରେ ପ୍ରକାଶ କରି ବୈଜ୍ଞାନିକ ସାହିତ୍ୟର ଚିନ୍ତାଧାରାର ପ୍ରବାହରେ ଓଡ଼ିଆ ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କଲେ । (ସୂର୍ଯ୍ୟ, ନକ୍ଷତ୍ର ବାର, ଜ୍ୟୋତିର୍ବିଦ୍ୟାର ଜନ୍ମ ପ୍ରଭୃତି) କହିବା ବାହୁଲ୍ୟ ଯେ ଯଦ୍ୟପି ରାଜା ସାର୍ ବାସୁଦେବ ପ୍ରାଚୀନ ପରମ୍ପରାର ଉପାସକ ଥିଲେ ତଥାପି ଆଧୁନିକ ରୁଚିସମ୍ପନ୍ନ ବୈଜ୍ଞାନିକ ପରମ୍ପରାର ଶ୍ରେଷ୍ଠ ପୃଷ୍ଠପୋଷକ ଥିଲେ ।

ସଂକ୍ଷେପରେ ପ୍ରକାଶ କରିବାକୁ ଗଲେ ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାର 'ମାନମନ୍ଦିର ଶୋଭିତ ବିଜ୍ଞାନାଗାର' ସମଗ୍ର ମଧ୍ୟପ୍ରଦେଶର ଛତିଶଗଡ଼ ତଥା ଓଡ଼ିଶାର ଅନ୍ୟ ସାମନ୍ତ ରାଜାମାନଙ୍କ ମଧ୍ୟରେ ଦୃଷ୍ଟିଗୋଚର ହୁଏ ନାହିଁ । ଏହି ଶାନ୍ତିପ୍ରିୟ କାଳରେ ବାମଣ୍ଡାର ନାଗରିକ ଜୀବନ ଅତ୍ୟନ୍ତ ସୁଖ ଶାନ୍ତିମୟ ଓ ଉନ୍ନତ ରୁଚିସମ୍ପନ୍ନ ଥିଲା । ସାଧାରଣ ପ୍ରଜାବର୍ଗ ସୌଖିନ ଜୀବନ ଯାପନ କରୁଥିଲେ । ଏହାର ବିଦ୍ୟାଳୟ, ସଭାସମିତି, ବିଦ୍ୟାଚର୍ଚ୍ଚା ପ୍ରଭୃତି ଅତ୍ୟନ୍ତ

ଆଦର୍ଶ ସ୍ଥାନୀସ୍ଥ ଥିଲା । ଉନବିଂଶ ଶତାବ୍ଦୀର ଶେଷଭାଗରେ ବୈଜ୍ଞାନିକ ଆଲୋକର ଅନୁପ୍ରବେଶ ବାମଣ୍ଡାର ସଭ୍ୟତା ଓ ସଂସ୍କୃତିକୁ ପରିମାର୍ଜିତ କଲା । ତେଣୁ ଟେଲିଫୋନ ବ୍ୟବସ୍ଥା, ମାନମନ୍ଦିର ଓ ଚିତ୍ରାନାଗାର ପ୍ରତିଷ୍ଠା, ବିଦ୍ୟୁତାଲୋକର ବ୍ୟବହାର ପ୍ରଭୃତି ଆଧୁନିକ ରୁଚିସମ୍ପନ୍ନ ବୈଜ୍ଞାନିକ ତଥ୍ୟଭିତ୍ତିକ କାର୍ଯ୍ୟମାନ ବାମଣ୍ଡାର ସାଂସ୍କୃତିକ ଜୀବନକୁ ଋଦ୍ଧିମନ୍ତ କଲା ।

ରାଜା ସାର୍ ବାସୁଦେବ ସୁଢ଼ଲଦେବ ଦେଶହିତୈଷୀ, ପ୍ରଜାବତ୍ସଳ ରାଜା ଥିଲେ । ତେଣୁ ବିଦ୍ୟାଶିକ୍ଷାର ଉନ୍ନତିକଳ୍ପେ ବିଭିନ୍ନ ସ୍ଥାନରେ ବିଦ୍ୟାଳୟମାନ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଅନୁଷ୍ଠାନମାନଙ୍କର ରକ୍ଷଣାବେକ୍ଷଣ ଓ ସୁପରିଚାଳନା ନିମିତ୍ତ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ । ବିଦ୍ୟାଳୟମାନଙ୍କର ବାର୍ଷିକ ଉତ୍ସବ-ମାନଙ୍କରେ ସଭାପତିତ୍ୱ କରି କୃତୀ ଛାତ୍ରଛାତ୍ରୀଗଣଙ୍କୁ ପୁରସ୍କାର ଓ ଅର୍ଥ ବିତରଣ ପୂର୍ବକ ଆନନ୍ଦ ଲାଭ କରୁଥିଲେ । କେବଳ ନିଜ ରାଜ୍ୟରେ ନୁହେଁ, ଏପରିକି ରାଜ୍ୟର ବାହାରେ ବହୁ ଶିକ୍ଷାନୁଷ୍ଠାନକୁ ଆର୍ଥିକ ସାହାଯ୍ୟ ପ୍ରଦାନ ତାଙ୍କର ମହାନୁଭବତାର ଶ୍ରେଷ୍ଠ ନିଦର୍ଶନ । ଦରିଦ୍ର ମେଧାବୀଛାତ୍ରଙ୍କୁ ବୃତ୍ତିଦାନ ବ୍ୟବସ୍ଥା, ପିତୃମାତୃହୀନ ବାଳକ ବାଳିକାଙ୍କର ଭରଣପୋଷଣ ଦାୟିତ୍ୱ ଓ ସୁଶିକ୍ଷା ଦାନ ବ୍ୟବସ୍ଥା, ତାଙ୍କର ଜୀବନର ଅନ୍ୟତମ ଲକ୍ଷ୍ୟ ଥିଲା । ତେଣୁ ଶିକ୍ଷା କ୍ଷେତ୍ରରେ ଏ ପ୍ରକାର ବୈପ୍ଳବିକ ପରିବର୍ତ୍ତନ ଆନୟନ ପୂର୍ବକ ବାମଣ୍ଡାରେ ଏକ ନୂତନ ଶିକ୍ଷାଯୁଗର ସୃଷ୍ଟି କରିପାରିଥିଲେ ।

୧୮୯୯ ଖ୍ରୀଷ୍ଟାବ୍ଦରେ ରାଜା ସାର୍ ବାସୁଦେବ ସୁଢ଼ଲଦେବ ମଧ୍ୟପ୍ରଦେଶର ବିଦ୍ୟାଳୟ ସମୂହର ପାଠ୍ୟପୁସ୍ତକ ନିର୍ବାଚନ-କମିଟିର ସଦସ୍ୟ ଥିଲେ । ସେ ପାଠ୍ୟପୁସ୍ତକ ସବୁ ନିରପେକ୍ଷ ଭାବେ ପୁଙ୍ଖାନୁପୁଙ୍ଖ ରୂପେ ପରୀକ୍ଷା କରି ସ୍ୱୀୟ ମନ୍ତବ୍ୟ ଶୀଘ୍ର ପ୍ରଦାନ କରିବାରେ ତତ୍ପର ଥିଲେ ।

ଏତଦ୍‌ବ୍ୟତୀତ ତାଙ୍କର ଶ୍ରେଷ୍ଠ ସାହିତ୍ୟକୃତି "ଅଳଙ୍କାର ବୋଧୋଦୟ" ଶିକ୍ଷାକ୍ଷେତ୍ରରେ ଛାତ୍ରମାନଙ୍କର ପାଠ୍ୟପୁସ୍ତକ ରୂପେ ଅନୁମୋଦନ ଲାଭ କରି ଆଦୃତ ଲାଭ କରିଥିଲା ଛାତ୍ର ତଥା ପାଠକ ସମାଜରେ ।

ରାଜା ବାସୁଦେବ କଟକରେ ଅବସ୍ଥାନ କାଳରେ ରେଭେନ୍‌ସା ମହାବିଦ୍ୟାଳୟ, ଚିତ୍ରାନାଗାର, କଟକର ନର୍ମାଲ ସ୍କୁଲ, ଟାଉନ ସ୍କୁଲ, ଭିକ୍ଟୋରିଆ ସ୍କୁଲ ପ୍ରଭୃତି ପରିଦର୍ଶନ କରିଥିଲେ । ଚାରି ବର୍ଷକାଳ ପର୍ଯ୍ୟନ୍ତ ଟାଉନ ସ୍କୁଲର ଛାତ୍ରମାନଙ୍କୁ ସହାୟତା ପ୍ରଦାନ ନିମିତ୍ତ ପ୍ରତିଶ୍ରୁତି ପ୍ରଦାନ କରିଥିଲେ । ସେହି ସ୍କୁଲର ଛାତ୍ରମାନଙ୍କ ଆନନ୍ଦ ବର୍ଦ୍ଧନ ନିମିତ୍ତ କେଉଁଠାରେ ଟ ୨୦୦/ ଟ ୧୦୦ ଓ ଟ ୫୦/ ପ୍ରଦାନ ପୂର୍ବକ ଜଳଯୋଗର ବ୍ୟବସ୍ଥା କରୁଥିଲେ । ଏତଦ୍‌ବ୍ୟତୀତ ଗରିବ ଛାତ୍ରମାନଙ୍କୁ ଆର୍ଥିକ ସାହାଯ୍ୟ ଯଥାଶକ୍ତି ପ୍ରଦାନ କରୁଥିଲେ । ଏହା ତାଙ୍କର

ବିଦ୍ୟାଳୟ ପରିଦର୍ଶନର ପ୍ରଧାନ ଲକ୍ଷ୍ୟ ଥିଲା । ମୁଖ୍ୟତଃ ପ୍ରଜାମାନଙ୍କର ହିତସାଧନ ଓ ପ୍ରୀତି ସମ୍ପାଦନ ନିମିତ୍ତ ତାଙ୍କ ପ୍ରାଣ ବ୍ୟାକୁଳ ଥିଲା ସଦା ସର୍ବଦା । ଏହା ତାଙ୍କ ଚରିତ୍ରଗତ ପ୍ରଧାନ ବୈଶିଷ୍ଟ୍ୟ । ପକ୍ଷାନ୍ତରରେ ସେ ଥିଲେ ଜଣେ ଶ୍ରେଷ୍ଠ ପ୍ରଜାବତ୍ସଳ ତଥା ପ୍ରଜାବତ୍ସଳ ପ୍ରଶାସକ । ଏହା କହିବା ବାହୁଲ୍ୟ ମାତ୍ର ।

## ରାଜା ବାସୁଦେବଙ୍କ ପଣ୍ଡିତ-ସମାଦର :

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଜଣେ ବିଜ୍ଞ, ଉଚ୍ଚକୋଟୀର ପଣ୍ଡିତ ତଥା ସୁସାହିତ୍ୟିକ ଥିଲେ । ଗୁଣ ଚିହ୍ନେ ଗୁଣିଆ ନୀତିରେ ସେ ଗୁଣୀ ପଣ୍ଡିତ ସାହିତ୍ୟିକମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ପାଇଁ ଆଗ୍ରହାନ୍ୱିତ ହେଉଥିଲେ । ତାଙ୍କ ରାଜତ୍ୱ କାଳରେ ବହୁ ପଣ୍ଡିତ, ସାହିତ୍ୟିକ, କବି, ଉଚ୍ଚଶିକ୍ଷିତ, ସମ୍ଭ୍ରାନ୍ତ ବ୍ୟକ୍ତି ରାଜ୍ୟର ଶୋଭା ତଥା ସମ୍ମାନ ବର୍ଦ୍ଧନ କରୁଥିଲେ । ମିଥିଳା ରାଜାଙ୍କର ସଭାପଣ୍ଡିତ ବାପୁଓଝା, ଓ ଭାରତ ମାର୍ତ୍ତଣ୍ଡ ଶିବ କୁମାର ଶାସ୍ତ୍ରୀ ଉତ୍ତର ଭାରତରୁ ଆସି ବାମଣ୍ଡା ରାଜଧାନୀ ଦେବଗଡ଼ରେ ଅବସ୍ଥାନ କରି ଶାସ୍ତ୍ରୀୟ ଆଲୋଚନାରେ ପ୍ରବୃତ୍ତ ଥିଲେ । ରାୟ ବାହାଦୁର ରାଧାନାଥ ରାୟ ବହୁବାର ବାମଣ୍ଡା ଆସି ତାଙ୍କ ସହିତ ଶାସ୍ତ୍ରାଲୋଚନା କରୁଥିଲେ । କହିବା ବାହୁଲ୍ୟ ଯେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ପୃଷ୍ଠପୋଷକତା ଲାଭ କରି ବହୁ କବି, ପଣ୍ଡିତ ତଥା ସାହିତ୍ୟିକଙ୍କର ଜୀବନରେ ନବ ଅଭ୍ୟୁଦୟ ସଙ୍ଘଟିତ ହୋଇଛି ।

ତେଣୁ ୧୮୯୭ ଖ୍ରୀ: ରେ ରାଧାନାଥରାୟ ରାୟବାହାଦୁର ଉପାଧି ପାଇବା ପରେ ବାମଣ୍ଡାରେ ଅନୁଷ୍ଠିତ ସମ୍ବର୍ଦ୍ଧନା ସଭା ଉପଲକ୍ଷେ କବିବର ପତ୍ରରେ ଉଲ୍ଲେଖ କଲେ, (୨୭-୭-୧୮୯୭)

"ପଣ୍ଡିତମାନଙ୍କୁ ଆସ୍ଥା ପ୍ରଦର୍ଶନ ଓ ସାହାଯ୍ୟ ପ୍ରଦାନ ବିଷୟରେ ସମ୍ପ୍ରତି ବାମଣ୍ଡା ଓଡ଼ିଶାରେ ଆଦର୍ଶ ସ୍ଥାନୀୟ ହୋଇଅଛି । ଶ୍ରୀ ସୁଢ଼ଳ ଦେବାଧିଷ୍ଠିତ ଦେବଗଡ଼ ପଣ୍ଡିତମାନଙ୍କର ଆଶ୍ରୟସ୍ଥଳୀ ରୂପେ ଉତ୍କଳରେ ଦେଦୀପ୍ୟମାନ । ବାମଣ୍ଡାର ପ୍ରତିଷ୍ଠା ଉତ୍କଳର ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନୁହେଁ, ସୁବିସ୍ତୃତ ବଙ୍ଗଦେଶର ପଣ୍ଡିତମାନେ ମଧ୍ୟ ବାମଣ୍ଡାର ଯଶୋଗାନ କରୁଥିଲେ ।" (ସମ୍ବଲପୁର ହିତୈଷିଣୀ-୧୮୯୭)

ବାମଣ୍ଡା ଓ ସାର୍ ବାସୁଦେବଙ୍କ ସହିତ କବିବର ରାଧାନାଥଙ୍କ ସମ୍ପର୍କ '

"ଓଡ଼ିଆ ସାହିତ୍ୟ ପ୍ରତି ମୋର ଆବାଲ୍ୟରୁ ପ୍ରଗାଢ଼ ଅନୁରାଗ ଥିଲା । ଅତି ଅଳ୍ପ ବୟସରୁ ମୁଁ ସେହି ସାହିତ୍ୟର ଅନୁଶୀଳନରେ ବ୍ରତୀ ହୋଇଥିଲି । ୨/୩ ବର୍ଷ ପରେ ନାନା କାରଣରୁ ବିଶେଷତଃ ସାହିତ୍ୟିକ ସହାନୁଭୂତିର ଅଭାବ ହେତୁରୁ

ଉତ୍କଳ ସାହିତ୍ୟର ଚର୍ଚ୍ଚା ମୁଁ ପ୍ରାୟ ପରିତ୍ୟାଗ କରିଥିଲି । ପୂର୍ବୋକ୍ତ ୮/୯ ବର୍ଷ ପରେ ମହାରାଜା ସୁଢ଼ଳଦେବ ସ୍ୱତଃ ପ୍ରବୃତ୍ତ ହୋଇ ମୋହର ନିର୍ବାଣ ପ୍ରାୟ ଉତ୍କଳ ସାହିତ୍ୟାନୁରାଗ ସନ୍ଧୁକ୍ଷିତ କରାଇଲେ ଏବଂ ଅଳ୍ପ ଦିନରେ ମୋତେ ଦେବଗଡ଼ ଯିବା ସକାଶେ ଆମନ୍ତ୍ରଣପତ୍ର ପ୍ରେରଣ କଲେ । × × × । ମୋର ସାହିତ୍ୟିକ ଜୀବନରେ ଯୁଗାନ୍ତର ପ୍ରବର୍ତ୍ତିତ ହେଲା । × × ।

ପଶ୍ଚିମ ଓଡ଼ିଶାର ତଦାନୀନ୍ତନ ବରେଣ୍ୟ କବି ଗଙ୍ଗାଧର ମେହେର ରାଜା ବାସୁଦେବଙ୍କ ପୃଷ୍ଠପୋଷକତାର ପ୍ରଶସ୍ତି ଗାନ କରିଯାଇଅଛନ୍ତି ।

"ଧନ୍ୟ ଧନ୍ୟ ବାସୁଦେବ ମହୀପାଳ ମଣି,  
ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି ।  
କରିଅଛ ମୋର ଯେତେ ଯେତେ ଉପକାର,  
ମୋ ହୃଦେ ରହିଛି ସବୁ ସ୍ୱର୍ଣ୍ଣମୟ ଗାର ।"

ରାଜା ବାସୁଦେବ ସୁଢ଼ଳଦେବ ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପାଇଁ ଉପଯୁକ୍ତ ଶିକ୍ଷିତ ବିଦ୍ୱାନ୍‌ମାନଙ୍କୁ ଶିକ୍ଷକ ରୂପେ ନିଯୁକ୍ତ ପ୍ରଦାନ ତାଙ୍କର ଶିକ୍ଷିତ ସମାଜ ପ୍ରତି ସମାଦରର ଶ୍ରେଷ୍ଠ ନିଦର୍ଶନ । ଏହା ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ବହୁ ପଣ୍ଡିତଙ୍କର ସମାବେଶ ତାଙ୍କ ପଣ୍ଡିତ ସଭାକୁ ମହିମାନ୍ୱିତ କରୁଥିଲା । (ବାଙ୍କୀର ବୈଦ୍ୟେଶ୍ୱର ନିବାସୀ) ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ଦୀକ୍ଷାଗୁରୁ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା (ବଡ଼ମ୍ବା) ପଣ୍ଡିତ ସୁଦର୍ଶନ ନ୍ୟାୟରତ୍ନ, ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର, ପଣ୍ଡିତ ବନମାଳୀଗୁରୁ, ପଣ୍ଡିତ ଭାଗୀରଥି ରଥ, ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି, ପଣ୍ଡିତ ପରମେଶ୍ୱର ନନ୍ଦକାବ୍ୟତୀର୍ଥ, ପଣ୍ଡିତ ବ୍ରଜବନ୍ଧୁ ମିଶ୍ରଶର୍ମା (ତାଳଚେର) ପ୍ରଭୃତି ପ୍ରବୀଣ ପଣ୍ଡିତ-ଗଣଙ୍କୁ ରାଜା ସାର୍ ବାସୁଦେବ ସୁଢ଼ଳଦେବ ବହୁ ସମ୍ମାନ ତଥା ସମାଦର ପ୍ରଦର୍ଶନ ପୂର୍ବକ ବହୁବିଧଶାସ୍ତ୍ରାଦି ଚର୍ଚ୍ଚା ତଥା ସାହିତ୍ୟ ଆଲୋଚନାରେ ପ୍ରବୃତ୍ତ ହେଉଥିଲେ । ତେଣୁ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟଙ୍କ ସଦୃଶ ନବରତ୍ନ ସଭାରେ ଶୋଭା ପାଉଥିଲେ ଏବଂ ନବରତ୍ନଙ୍କ ମଧ୍ୟରେ ଦୀକ୍ଷାଗୁରୁ କୁଳ ପୁରୋହିତ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ଅନ୍ୟତମ ଯେ କି ଉଜ୍ଜୟିନୀର କାଳିଦାସଙ୍କ ସଦୃଶ ପଣ୍ଡିତ ସଭା ମଣ୍ଡନ କରୁଥିଲେ । ତାଙ୍କ ବିରଚିତ ବାମଣ୍ଡା ରାଜବଂଶାନୁଚରିତରତ୍ନ" ସଂସ୍କୃତ ସାହିତ୍ୟରେ ଏକ ଅନବଦ୍ୟକୃତି । ତେଣୁ ବ୍ୟାସକବି ସରସ୍ୱତୀ ଫକୀରମୋହନଙ୍କ ଭାଷାରେ, ହେ ରାଜନ ମାତୃଭାଷା ଉନ୍ନତି କାରଣେ, ଉତ୍ସାହିତ କରୁଅଛ ଗ୍ରନ୍ଥକର୍ତ୍ତାଗଣେ ।

କବକୃ ସାହିତ୍ୟଚର୍ଚ୍ଚା ଶିଳ୍ପାଦି ସହିତ
ଉତ୍କଳର ଉଜ୍ଜୟିନୀ ବାମଣ୍ଡା ବଦିତ ।
ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ ।"

ତେଣୁ ବାମଣ୍ଡା ରାଜଧାନୀ ଦେବଗଡ଼ "ବୁଧହଂସକେଳିସର" ରୂପେ ଏକଦା ଶୋଭା ପାଉଥିଲା, ଯେଉଁଥିରେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ମରାଳ-କୁଳ-ପଦ୍ମାକର ସ୍ୱରୂପ ଦେଦୀପ୍ୟମାନ ଥିଲେ । ପଣ୍ଡିତ ରାଜା ସାର୍ ବାସୁଦେବଙ୍କର ଅଗାଧ ପାଣ୍ଡିତ୍ୟର ନିଦର୍ଶନ କେବଳ ବାମଣ୍ଡା ରାଜ୍ୟ ମଧ୍ୟରେ ସୀମିତ ନ ଥିଲା । ମିଥିଳା, କାଶୀ ପ୍ରଭୃତି ସ୍ଥାନରେ ପଣ୍ଡିତ ସଭାରେ ସମସ୍ତ ସୁବିଧା ଓ ସୁଯୋଗ ଅନୁକ୍ରମେ ଯୋଗଦାନ କରି ସ୍ୱୀୟ ଅଗାଧ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିଥିଲେ । ଏହାର ଅନ୍ୟ ଏକ ଉଦାହରଣ ବମ୍ବେରେ ଅବସ୍ଥାନ କାଳରେ ପଣ୍ଡିତା ରମାବାଈଙ୍କ ସହିତ ସଂସ୍କୃତ ଶାସ୍ତ୍ରାଲୋଚନା ଓ ତାଙ୍କ ପ୍ରତିଷ୍ଠିତ ସାରଦା ସଦନରେ ବୟସ୍କା ବାଳିକାମାନଙ୍କର ଶିକ୍ଷାପଦ୍ଧତି ସନ୍ଦର୍ଶନରେ ପ୍ରୀତ ହୋଇ ଆଶ୍ରମକୁ ଆର୍ଥିକ ସାହାଯ୍ୟ ପ୍ରଦାନ ଏକ ବିଶିଷ୍ଟ ଘଟଣା ।

କବିକଳ୍ପଲତା ଦୁର୍ଲଭ ସଂସ୍କୃତ ସାହିତ୍ୟର ଏକ ଶ୍ରେଷ୍ଠ ଗ୍ରନ୍ଥ । ଏହାର ମୁଦ୍ରଣର ନିମିତ୍ତ ରାଜା ସାର୍ ବାସୁଦେବ କଲିକତାର ସଂସ୍କୃତ ମହାବିଦ୍ୟାଳୟର ତଦାନୀନ୍ତନ ଅଧ୍ୟାପକ ପଣ୍ଡିତ ରାମଗୋପାଳ କବିରତ୍ନ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ଏହାର ସଠିକ୍ ସଂସ୍କରଣ ପ୍ରକାଶ କଲେ । ଏଥିପାଇଁ ବହୁ କାଞ୍ଚନ ଅର୍ଥ ବ୍ୟୟ କରିବାକୁ ପଡ଼ିଥିଲା । ତେଣୁ କେନୈକ ଗ୍ରନ୍ଥକାର ଭାରତାଦର୍ଶ ଗ୍ରନ୍ଥରେ ରାଜା ସାର୍ ବାସୁଦେବଙ୍କ ଅଗାଧ ପାଣ୍ଡିତ୍ୟ ତଥା ଅନନ୍ୟ ସାଧାରଣ ପ୍ରଶାସନିକ ଦକ୍ଷତାର ଆଦର୍ଶ ସମ୍ପର୍କରେ ବର୍ଣ୍ଣନା ପୂର୍ବକ ଗୁଣଗାନ କରିଛନ୍ତି ।

ଓଡ଼ିଶାର ବିଶିଷ୍ଟ ପଣ୍ଡିତ ଗଦାଧର ମିଶ୍ର କର୍ତ୍ତୃକ ସ୍ମୃତିଶାସ୍ତ୍ର (ବ୍ୟାଖ୍ୟାସହ) ପୂର୍ବେ ପ୍ରଚଳିତ ଥିଲେ ହେଁ ଏହା ଦୁଷ୍ପ୍ରାପ୍ୟ ହେତୁ ରାଜା ସାର୍ ବାସୁଦେବ ପଣ୍ଡିତ ମଧୁସୁଦନ ମିଶ୍ର ତର୍କ ବାଚସ୍ପତିଙ୍କ ଦ୍ୱାରା ଗଦାଧର ସ୍ମୃତିଶାସ୍ତ୍ରର ସଠିକ୍ ସଂସ୍କରଣ ପ୍ରକାଶରେ ଅର୍ଥବ୍ୟୟ କଲେ । ଗଦାଧରପଦ୍ଧତି ଏକ ଉପାଦେୟ ସଂସ୍କୃତ ଶାସ୍ତ୍ର । ଏତଦ୍‌ବ୍ୟତୀତ ସଂସ୍କୃତ ସାହିତ୍ୟାନୁରାଗୀ ରାଜା ବାସୁଦେବ ଦଶକର୍ମ ପଦ୍ଧତି, ମୁଣ୍ଡକୋପନିଷଦ୍, ସାହିତ୍ୟରତ୍ନାକର ପ୍ରଭୃତି ସଂସ୍କୃତ ଗ୍ରନ୍ଥର ସଠିକ୍ ଅନୁବାଦ ପ୍ରକାଶ ପୂର୍ବକ ଓଡ଼ିଶାର ତଥା ପଣ୍ଡିତ ସମାଜର ପ୍ରଭୂତ ଉପକାର ସାଧନ କରିଥିଲେ । ସାର୍ ବାସୁଦେବ ସୁଢ଼ଳଦେବ ଯେଉଁ ସ୍ଥାନକୁ ତୀର୍ଥାଟନ ତଥା ପରିଭ୍ରମଣ ଅଭିପ୍ରାୟରେ ଯାଉଥିଲେ ସେଠାରେ ଥିବା ପଣ୍ଡିତମାନଙ୍କୁ ସମାଦର

କରୁଥିଲେ । ସେଠାରେ କଚ୍ଛଦନ ଅବସ୍ଥାନ ପୂର୍ବକ ବହୁ ଅନୁଷ୍ଠାନ ପରିଦର୍ଶନ ସଙ୍ଗେ ସଙ୍ଗେ ବହୁ ଉଚ୍ଚ ପଦସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସୁଥିଲେ ଓ ବାମଣ୍ଡା ରାଜଧାନୀ ଦେବଗଡ଼କୁ ଆସିବା ପାଇଁ ଆମନ୍ତ୍ରଣ କରୁଥିଲେ । ଯେତେବେଳେ ତାଙ୍କର ଅନ୍ତରଙ୍ଗ ସାହିତ୍ୟିକ ବନ୍ଧୁ ରାଧାନାଥ ରାୟ ତା ୨୨-୬-୧୮୯୭ ଦିନ ବ୍ରିଟିଶ ସରକାରଙ୍କଠାରୁ ରାୟବାହାଦୁର ଉପାଧିପ୍ରାପ୍ତ ହେଲେ ତା ପାଇଁ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ ବାମଣ୍ଡା ରାଜଧାନୀ ଦେବଗଡ଼ରେ । ତା ୨୬-୬-୯୭ ଏହି ସମ୍ବର୍ଦ୍ଧନା ସଭାରେ ୧-ବଡ଼କୁମାର ବଳଭଦ୍ରଦେବ ୨-ଜଳନ୍ଧର ଦେବ ୩-ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ୪-ଜଗଦାନନ୍ଦ ଦାସ ୫-ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ୬-ଯୋଗେଶ ଚନ୍ଦ୍ର ଦାସ ୭-ପଣ୍ଡିତ କାଳୀଚରଣ ବିଦ୍ୟାଭୂଷଣ ୮-ଜଗନ୍ନାଥ ପଟ୍ଟନାୟକ ୯-ଶରତ୍ କୁମାର ଦାସ୍ ପ୍ରଭୃତି ସାହିତ୍ୟିକ ତଥା ପଣ୍ଡିତମାନଙ୍କ ଉପସ୍ଥିତିରେ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ତେଣୁ ସମ୍ବଲପୁର ହିତୈଷିଣୀ (ତା ୨୬-୬-୧୮୯୭)ରେ ରାୟବାହାଦୁରଙ୍କ ପକ୍ଷରେ ପ୍ରକାଶ ପାଇଲା, "ରାଜଦତ୍ତ ଉପାଧି ମୋ ପକ୍ଷରେ ଯେପରି ମୂଲ୍ୟବାନ୍ ବାମଣ୍ଡା ସଭାର ଏହି ଅଭିନନ୍ଦନ ମଧ୍ୟ ସେହିପରି ମୂଲ୍ୟବାନ୍ ।"

ସାର୍ ବାସୁଦେବ ସୁଢ଼ଳଦେବ ବମ୍ବେ ଭ୍ରମଣ କାଳରେ ସେଠାରେ କଚ୍ଛଦନ ଅବସ୍ଥାନ କାଳରେ ପ୍ରତିଷ୍ଠିତ ମହିଳା ଆଶ୍ରମ ସାରଦାସଦନର ଅଧ୍ୟକ୍ଷ ପଣ୍ଡିତା ରମାବାଈଙ୍କ ସଂସ୍ପର୍ଶରେ ଆସି ସଂସ୍କୃତ ଶାସ୍ତ୍ରାଦି ଆଲୋଚନା ପୂର୍ବକ ଉକ୍ତ ଅନୁଷ୍ଠାନକୁ କିଛି ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ । ସେ ଆଶ୍ରମରେ କଚ୍ଛଦନ ଅବସ୍ଥାନ କରି ତାଙ୍କର ଧର୍ମାନ୍ତର ଗ୍ରହଣ ସମ୍ପର୍କରେ ସଂସ୍କୃତରେ ପ୍ରଶ୍ନ କଲେ

"ଯୋ ବୈ ବିଶ୍ୱେଶ ଲକ୍ଷ୍ମୀପତି ମୁଖକମଳାନ୍ନିର୍ଗଲଦ୍‌ବାକ୍ ସୁଧାବ୍ଧି
ପ୍ରୋଦ୍ଧୃତ କଲ୍ଲୋଳ ଜାଳେ ତବ ପରମ ସୁଖଂ ତୃପ୍ତୟେ ହିନ୍ଦୁ ଧର୍ମଃ
ତସ୍ମାନ୍ନିର୍ବ୍ୟାଜ ଧର୍ମାତ୍ ସୁବିମଳ କୁଳଜେ ! ନିଷ୍କଳଙ୍କାତ୍ କଥଂତେ,
ପ୍ରତ୍ୟାବୃତ୍ତାଃ ପବିତ୍ରାଃ ସୁଲଳିତ ମତୟୋ ରେମିରେଽନ୍ୟଂ ବିଧର୍ମେ"

(ଯେ ହିନ୍ଦୁଧର୍ମ ବିଶ୍ୱେଶ୍ୱରଓ ନାରାୟଣର ମୁଖପଦ୍ମରୁ ନିର୍ଗଳିତ ବାକ୍ୟରୂପ ସୁଧା ସମୁଦ୍ରର ଉତ୍ତାଳ ଓ ଚଞ୍ଚଳ ତରଙ୍ଗ ମାଳାରୁ ଆଗତ ଏବଂ ଯାହା ତୁମର ସୁଖର କାରଣ ଥିଲା, ହେ ବିମଳକୁଳଜାତ ! ସେହି ନିଷ୍କଳଙ୍କ ଓ ଅକପଟ ଧର୍ମରୁ ତୁମର ସୁଲଳିତମତି କିପରି ପ୍ରତ୍ୟାବୃତ୍ତ ହେଲା ।)

ତାର ଉତ୍ତର ପ୍ରଦାନ କଲେ ପଣ୍ଡିତା ରମାବାଈ
"ନାସ୍ମାକଂ ବିଧର୍ମଃ ବିସ୍ତୃତ ଈଶ୍ୱରେ ଜୀବସ୍ୟ ସମ୍ବନ୍ଧଃ ଏବ ଧର୍ମଃ"

ଯୁକ୍ତ ବେଦାଧ୍ୟୟନାତ୍ ଉକ୍ତଂଯଥ

କଲ୍ୟୁଷ୍ଟକଂ ବେଦାଧ୍ୟ କାଗ୍ରେନାସ୍ତି

ସ୍ତ୍ରୀ ଶୂଦ୍ରୌ ନାଧୀଯେ ତା ମିତ୍ୟାକ୍ତେଃ ଏବଂ ଚ ହ୍ନନ୍ମତେ,

ସ୍ତ୍ରୀଣାଂ ହ୍ନ ପତଦେବତା ଇତ୍ୟାକ୍ତଂ ମନୁଷ୍ୟ ପୂଜନଂ

ସିଦ୍ଧଂ ପଦଙ୍କ ପରମ୍ ।

ପ୍ରାପ୍ତି ନ ଭବଷ୍ୟତ ଶଙ୍କୟା

ହ୍ନନ୍ଧର୍ମ ପରତ୍ୟାଗୋ ବସ୍ମାନ୍ନତ୍ୟାଦଂ

(ମୁଁ ଯେଉଁ ଧର୍ମ ଗ୍ରହଣ କରିଛି ତା ସ୍ୱଧର୍ମ ନୁହେଁ । ଈଶ୍ୱର ଜୀବର ସମ୍ବନ୍ଧ ହିଁ ଧର୍ମ । ସେହି ସମ୍ବନ୍ଧ ବେଦାଧ୍ୟୟନରେ ଥାଇପାରେ ମାତ୍ର ଆମର ବେଦାଧ୍ୟୟନର ଅଧିକାର ନାହିଁ । କାରଣ ଶାସ୍ତ୍ରରେ ଉକ୍ତ ଅଛି, ସ୍ତ୍ରୀ ଏବଂ ଶୂଦ୍ରର ବେଦାଧିକାର ନାହିଁ । ସ୍ତ୍ରୀ ପକ୍ଷେ ପତି ହିଁ ଦେବତା । ମାତ୍ର ମୋ ଦ୍ୱାରା ମନୁଷ୍ୟ ପୂଜାରେ ପରମ ପ୍ରାପ୍ତି ନାହିଁ । ଏହି ଶଙ୍କାରେ ମୁଁ ହିନ୍ଦୁଧର୍ମ ପରିତ୍ୟାଗ କରିଅଛି ।) ଏହା ଏକ ପାଣ୍ଡିତ୍ୟପୂର୍ଣ୍ଣ ଉକ୍ତି । ଉଭୟଙ୍କ ମଧ୍ୟରେ ଏ ପ୍ରକାର ପାଣ୍ଡିତ୍ୟପୂର୍ଣ୍ଣ ଶାସ୍ତ୍ରାଲୋଚନା ତାଙ୍କର ମହାନୁଭବତାର ପରିଚାୟକ ।

୧୯୦୦ ମସିହାରେ କଟକରେ ରହି ସମସ୍ତ ଅବସ୍ଥାନ କାଳରେ ବହୁ ଉଚ୍ଚଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଗହଣରେ କନକା ଉଦ୍ୟାନରେ ସମ୍ବର୍ଦ୍ଧନା ସଭା ତଥା ବନ୍ଧୁମିଳନ କଟକର ଏକ ଉଲ୍ଲେଖଯୋଗ୍ୟ ଅଦ୍ୱିତୀୟ ଘଟଣା । ପୂର୍ବରୁ ଏପ୍ରକାର ସାଂସ୍କୃତିକ ସଭା ଅନୁଷ୍ଠାନ ବିରଳ—କହିଲେ ଅତ୍ୟୁକ୍ତି ହେବ ନାହିଁ ।

କଟକରୁ ପୁରୀ ଯାତ୍ରା କରି ଗଙ୍ଗବଂଶର କୀର୍ତ୍ତିରାଜିର ଅବଲୋକନ ଦେବତା ଦର୍ଶନ ସଙ୍ଗେ ବ୍ରାହ୍ମଣ ପଣ୍ଡିତମାନଙ୍କର ପଣ୍ଡିତସଭାରେ ସମ୍ବର୍ଦ୍ଧନା ଲାଭ କଲେ । ସେଠାରେ ବହୁ ଶାସ୍ତ୍ରର ଆଲୋଚନା ଓ ଗୂଢ଼ ତଥ୍ୟର ମୀମାଂସା ସମ୍ପନ୍ନ ହେଲା ।

ପଣ୍ଡିତମଣ୍ଡଳୀ ରାଜା ସାର୍ ବାସୁଦେବଙ୍କର ଅଗାଧ ପାଣ୍ଡିତ୍ୟ ବହୁବିଧ ଶାସ୍ତ୍ରଜ୍ଞାନ (ଅଲଙ୍କାର, କାବ୍ୟ ଓ ଦର୍ଶନଶାସ୍ତ୍ରାଦି) ତଥା ଅସାଧାରଣ ବ୍ୟୁତ୍ପତ୍ତିରେ ମୁଗ୍ଧ ହୋଇ ଉଚ୍ଚପ୍ରଶଂସା କଲେ । ରାଜା ସାର୍ ବାସୁଦେବ ପଣ୍ଡିତଗଣଙ୍କୁ ଉପଯୁକ୍ତ ପାଣ୍ଡିତ୍ୟପୂର୍ଣ୍ଣ ପଦମର୍ଯ୍ୟାଦା ପ୍ରଦାନ କଲେ । ଏଠାରେ ଅବସ୍ଥାନ କାଳରେ ସନାତନଧର୍ମ ରକ୍ଷିଣୀ ସଭା ପ୍ରତିଷ୍ଠା କଲେ । ଏହି ଅନୁଷ୍ଠାନର ଆନୁକୂଲ୍ୟରେ ସଂସ୍କୃତ ସାହିତ୍ୟ, କାବ୍ୟ, ନାଟକ, ଧର୍ମଶାସ୍ତ୍ରାଦିରେ ପାଠ ପରେ ନିର୍ଦ୍ଦିଷ୍ଟ ବିଷୟରେ ପରୀକ୍ଷା ପ୍ରଦାନ ଓ ଉତ୍ତୀର୍ଣ୍ଣ ଛାତ୍ରଗଣଙ୍କୁ ମୁଦ୍ରିତ ପ୍ରଶଂସାପତ୍ର ସହ କର୍ଣ୍ଣାଭରଣ ସ୍ୱର୍ଣ୍ଣକୁଣ୍ଡଳ ପ୍ରଦାନ ବ୍ୟବସ୍ଥା କଲେ ।

ତାଙ୍କର ଜୀବିତାବସ୍ଥାରେ ଏ ପ୍ରକାର ଉଚ୍ଚକୋଟୀର ସାଂସ୍କୃତିକ ପରୀକ୍ଷା ତଥା ଏ ପ୍ରକାର ପରୀକ୍ଷା ଗ୍ରହଣ ଓ ମୁଦ୍ରିତ ପ୍ରଶଂସାପତ୍ର ସହ ସ୍ୱର୍ଣ୍ଣକୁଣ୍ଡଳ ପ୍ରଦାନ ଯୋଗୁଁ ସେ ଯେ କେବଳ ବାମଣ୍ଡାର ତଥା ସମଗ୍ର ଓଡ଼ିଶାର ଯଶ ଶ୍ରୀବର୍ଦ୍ଧନ କରିବାକୁ ସମର୍ଥ ହୋଇପାରିଥିଲେ ତା ନୁହେଁ—ସମଗ୍ର ଭାରତର ସାଂସ୍କୃତିକ ସମ୍ମାନ ତଥା ମର୍ଯ୍ୟାଦାର ଅଭିବୃଦ୍ଧି ସାଧନ କରିବାକୁ ସକ୍ଷମ ହୋଇପାରିଥିଲେ ।

ଉତ୍ତର-ଭାରତ ପରିଭ୍ରମଣ କାଳରେ ବିଦ୍ୟାନଗରୀ କାଶୀରେ ଅବସ୍ଥାନ କାଳରେ ବହୁ ପଣ୍ଡିତଙ୍କ ସଂସ୍ପର୍ଶରେ ଆସି ଶାସ୍ତ୍ରାଦି ଆଲୋଚନାରେ ପ୍ରବୃତ୍ତ ହୋଇ ସ୍ୱୀୟ ଅଗାଧ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିପାରିଥିଲେ ।

କହିବା ବାହୁଲ୍ୟ ଯେ ରାଜା ବିକ୍ରମାଦିତ୍ୟଙ୍କ ନବରତ୍ନ ପଣ୍ଡିତ ସଭାର ଶ୍ରେଷ୍ଠ ରତ୍ନ ମହାକବି କାଳିଦାସଙ୍କ ସଦୃଶ ରାଜା ସାର୍ ବାସୁଦେବଙ୍କ ପଣ୍ଡିତ-ସଭାର ଦୀକ୍ଷାଗୁରୁ କୁଳପୁରୋହିତ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା ଶ୍ରେଷ୍ଠ ରତ୍ନ ରୂପେ ଶୋଭା ପାଉଥିଲେ । ତାଙ୍କର ଶାସ୍ତ୍ରାଲୋଚନା ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ତାଙ୍କୁ ଲକ୍ଷ୍ୟ କରି ଭାରତପ୍ରସିଦ୍ଧ ପଣ୍ଡିତ ଭାରତ ମାର୍ତ୍ତଣ୍ଡ ଶିବକୁମାର ଶାସ୍ତ୍ରୀ ପ୍ରକାଶ କଲେ ।

"ବାସୁଦେବ ନୃପତିଃ ପ୍ରତିଭାତିଯତ୍ର ସାଂପ୍ରତଂ ମହୀ ମରୁଭୂମୌ,
ସାର୍ବଭୌମ୍ୟ ଭୁବନେଶ୍ୱର ଯୋଗାତ୍ ଶୋଭିଦେବ କମଳା ସହିବାସ୍ତ୍ୱ" ।

ଉକ୍ତିର ସତ୍ୟତା ସ୍ତରେ ସ୍ତରେ ଉନ୍ମୋଚିତ ହୋଇଥାଏ ।

## ସାହିତ୍ୟର ବିକାଶ କ୍ଷେତ୍ରରେ ବାମଣ୍ଡାରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଓ ପ୍ରଭାବ

ରାଜା ବାସୁଦେବଙ୍କ ରାଜ୍ୟ ସିଂହାସନ ଆରୋହଣ କାଳରେ ତାଳପତ୍ରାଦିର ଲେଖନୀ ସାହାଯ୍ୟରେ ଯାବତୀୟ ତଥ୍ୟ ଆବଶ୍ୟକତା ଅନୁସାରେ ଲିପିବଦ୍ଧ କରାଯାଉଥିଲା । ତେଣୁ ରାଜ୍ୟର ହିସାବପତ୍ର (Account) ଆଦି ରାଜା ବ୍ରଜସୁନ୍ଦର ଦେବଙ୍କ ସମୟରେ ନିର୍ଦ୍ଦିଷ୍ଟ ରୂପେ ସଠିକ୍‌ଭାବେ ସୁରକ୍ଷିତ ନ ଥିଲା, ରାଜା ବାସୁଦେବ ତାହାର ସଂସ୍କାର ବିଧାନ କଲେ । ସେ କଟକରେ ବାଣିଜ୍ୟ କରିବା ଅବସରରେ ଏକ ମୁଦ୍ରାଯନ୍ତ୍ର 'ସୁରଲ ପ୍ରେସ୍' ନାମରେ ସ୍ଥାପନ କଲେ, ସେଠାରେ ଗ୍ରନ୍ଥାଦି ମୁଦ୍ରିତ ହେଲା । ମାତ୍ର ଅନ୍ୟ ବ୍ୟକ୍ତିର ତତ୍ତ୍ୱାବଧାନରେ ଏ କାର୍ଯ୍ୟ ସମ୍ପନ୍ନ ହେବାରୁ ଏବଂ ତହିଁରେ ବିଶେଷ ଉନ୍ନତି ପରିଲକ୍ଷିତ ନ ହେବାରୁ ତାହାର ଏକାଂଶ ସୀତାନାଥ ରାୟ (ପରିଚାଳକ)ଙ୍କୁ ପ୍ରଦାନ କରି ଅପରାଂଶ ୧୮୮୬ରେ ଦେବଗଡ଼ରେ ପ୍ରତିଷ୍ଠିତ 'ଜଗନ୍ନାଥ ବଲ୍ଲଭ' ପ୍ରେସ୍ ସଙ୍ଗେ ସଂଯୋଜିତ କଲେ ।

## ମୁଦ୍ରାଯନ୍ତ୍ରର ସ୍ୱରୂପ :

୧୮୮୫ ମସିହା ପର୍ଯ୍ୟନ୍ତ ପଶ୍ଚିମ ଓଡ଼ିଶାରେ ମୁଦ୍ରାଯନ୍ତ୍ରର ଅଭାବ ପରିଲକ୍ଷିତ ହେଉଥିଲା । ସେତେବେଳେ ସମଗ୍ର ଓଡ଼ିଶାରେ ସାତଟି ମାତ୍ର ମୁଦ୍ରାଯନ୍ତ୍ର କାର୍ଯ୍ୟକାରୀ ହେଉଥିଲା ଯଥା :—(i) କଟକ ମିସନ୍ ପ୍ରେସ (୧୮୩୭), (ii) କଟକ ପ୍ରିଣ୍ଟିଂ ପ୍ରେସ (୧୮୬୬), (iii) ଉତ୍କଳ ପ୍ରିଣ୍ଟିଂ କୋମ୍ପାନୀ (୧୮୬୩), (iv) ଦେ ପ୍ରେସ୍ (୧୮୬୩) ବାଲେଶ୍ୱର (v) ଉତ୍କଳ ହିତୈଷିଣୀ ପ୍ରେସ୍ (୧୮୬୩) କଟକ, (vi) ଭଞ୍ଜୋଦୟ ପ୍ରେସ୍ (କଟକ) (vii) ସୁଢ଼ଳ ପ୍ରେସ୍ (କଟକ) । 'ସୁଢ଼ଳ ପ୍ରେସ୍'ରୁ ପ୍ରଥମେ ଚତୁର୍ଭୁଜ ପଟ୍ଟନାୟକଙ୍କ ସମ୍ପାଦନାରେ ସମାଜ-ସଂସ୍କାର ଅଭିପ୍ରାୟରେ 'ସଂସ୍କାରକ' ନାମକ ମାସିକ ପତ୍ରିକା ପ୍ରକାଶ ଲାଭ କଲା । ପରେ ସ୍ୱବର୍ଗୀ ଦାସଙ୍କ ସମ୍ପାଦନାରେ 'ସେବକ' ନାମକ ମାସିକ ପତ୍ରିକା ଏଥିରୁ ପ୍ରକାଶ ପାଇଲା । ମାତ୍ର ଏଥିରେ କେତେକ ଅପ୍ରିୟ ଲେଖା ପ୍ରକାଶ ପାଇବାରୁ ବିବାଦ ସୃଷ୍ଟି ହେଲା । ପରେ ପରେ ସୁଢ଼ଳ ପ୍ରେସ୍‌ର କେତେକାଂଶ ରାଜଧାନୀ ଦେବଗଡ଼କୁ ସ୍ଥାନାନ୍ତରିତ ହେଲା ।

ବାମଣ୍ଡାରେ 'ଜଗନ୍ନାଥ ବଲ୍ଲଭ ପ୍ରେସ୍' ଓଡ଼ିଆ ସାହିତ୍ୟର ବିକାଶ କ୍ଷେତ୍ରରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛି । ଏହା ସେତେବେଳେ ଏକ ଉଜ୍ଜ୍ୱଳ ପ୍ରଦୀପ ସଦୃଶ କାର୍ଯ୍ୟ କଲା । ଏଥିରୁ ବହୁ ପୁସ୍ତକ ଓ ପତ୍ରପତ୍ରିକା ଆତ୍ମପ୍ରକାଶ ଲାଭ କରିବାରୁ ବାମଣ୍ଡାର ସାଂସ୍କୃତିକ ତଥା ସାହିତ୍ୟିକ ବାତାବରଣ ଏକ ଉଚ୍ଚକୋଟୀର ପରିବେଶରେ ଗଢ଼ି ଉଠିଲା । ଆବଶ୍ୟକ ହେବାରୁ 'କାଳିକା' ନାମକ ଏକ ମୁଦ୍ରାଯନ୍ତ୍ର ଏହା ସହିତ କାର୍ଯ୍ୟ କଲା । ଏକ ସମୟରେ ଦୁଇଟି ମୁଦ୍ରାଯନ୍ତ୍ର କାର୍ଯ୍ୟ କରି ବହୁ ଫର୍ମ, ପୁସ୍ତକ, ପତ୍ରପତ୍ରିକା ଆଦି ମୁଦ୍ରଣ କଲେ । ଏଥିରେ ଦେବନାଗରୀ, ଇଂରାଜୀ ଓ ଓଡ଼ିଆ ଅକ୍ଷରର କେଶ୍‌ମାନ ସଜ୍ଜିତ ଥିଲା ।

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମ୍ପର୍କୀୟ ଭ୍ରାତା ବୃନ୍ଦାବନଚନ୍ଦ୍ର ଦେବ ୧୮୮୯ରୁ ୧୯୦୦ ସାଲ ପର୍ଯ୍ୟନ୍ତ ପ୍ରେସ୍‌ର ସେକ୍ରେଟେରୀ (ସମ୍ପାଦକ) ରୂପେ କାର୍ଯ୍ୟ ସମ୍ପାଦନ କଲେ । ୧୯୦୧ ମସିହାରେ ବିଶ୍ୱନାଥ ପାଣିଗ୍ରାହୀ, ୧୯୦୨ ମସିହାରେ ରମାନନ୍ଦ ପ୍ରଧାନ ଓ ୧୯୦୩ ମସିହାରେ କୁମୁଦବନ୍ଧୁ ସେନ୍ ପ୍ରେସ୍ ସେକ୍ରେଟେରୀ ରୂପେ କାର୍ଯ୍ୟ ନିର୍ବାହ କଲେ । ୧୮୯୮ ସାଲରୁ ନବଘନ ନାୟକ ଜଣେକ ସୁଦକ୍ଷ କର୍ମଚାରୀ ମୁଦ୍ରଣ କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ବହୁଦିନ ପର୍ଯ୍ୟନ୍ତ କାର୍ଯ୍ୟ ନିର୍ବାହ କରି ମୁଦ୍ରାଯନ୍ତ୍ରର ସୌଷ୍ଠବ ସମ୍ପାଦନ କରିଥିଲେ । ଏହା ହସ୍ତଚାଳିତ ଯନ୍ତ୍ର ହେଲେ ମଧ୍ୟ ସଠିକ ଓ ନିର୍ଭୁଲ ରୂପେ ନୂତନ ରୁଚି ସମ୍ପନ୍ନ ରୀତିରେ ମନହରରେ, ସୁଲଭ ମୂଲ୍ୟରେ ପୁସ୍ତକାଦି ମୁଦ୍ରଣ କରି ଶିକ୍ଷା ଓ ସାହିତ୍ୟର



ବିକାଶ ଦିଗରେ ବିଶେଷ ସହାୟକ ହେଲା । ଫଳତଃ ତାଳପତ୍ର ଓ ହିନ୍ଦୀର ବ୍ୟବହାର କ୍ରମଶଃ ହ୍ରାସ ପାଇ ଏକ ଯୁଗାନ୍ତର ସୃଷ୍ଟି କହେଲା ।

## ରାଜା ସାର୍ ବାସୁଦେବ ସୁଢ଼ଳଦେବ ଓ ବାମଣ୍ଡାରୁ ମୁଦ୍ରିତ ତଥା ପ୍ରକାଶିତ ପତ୍ରପତ୍ରିକା

କହିବା ବାହୁଲ୍ୟ ଯେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ ବାମଣ୍ଡା ରାଜଧାନୀ ଦେବଗଡ଼ରେ 'ଜଗନ୍ନାଥ ବଲ୍ଲଭ' (ପ୍ରେସ୍) ମୁଦ୍ରଣାଳୟ ଓଡ଼ିଆ ସାହିତ୍ୟର ପରିପ୍ରକାଶ ସାଧନ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଏହି ମୁଦ୍ରଣାଳୟ ପ୍ରଥମେ 'ସମ୍ବଲପୁର ହିତୈଷିଣୀ'— (Sambalpur Patriot) ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରି ବାମଣ୍ଡାର ତଥା ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିପାରିଥିଲା । । ଏହାର ପୂର୍ବେ ୪୦ ବର୍ଷ ମଧ୍ୟରେ ୪୮ଟି ପତ୍ରପତ୍ରିକା ଆବିର୍ଭୂତ ହୋଇ ଓଡ଼ିଶାର ସାହିତ୍ୟାକାଶକୁ ଆଲୋକିତ କରିଥିଲେ । 'ସମ୍ବଲପୁର ହିତୈଷିଣୀ'ର ପୃଷ୍ଠ ପୀଠିକାରେ ବାମଣ୍ଡାରୁ ଖ୍ରୀ: ୧୮୯୬ରେ 'ବିଜୁଳି', ଖ୍ରୀ. ୧୯୦୦ରେ 'ଉତ୍କଳମଧୁପ' ଓ 'ଆଲୋଚନା' ପ୍ରଭୃତି ପତ୍ରିକା ଆତ୍ମପ୍ରକାଶ କରି ବାମଣ୍ଡାର ତଥା ଓଡ଼ିଶାର ସାହିତ୍ୟିକ ବାତାବରଣକୁ ଉଜ୍ଜ୍ୱଳ କଲେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ ।

### ସମ୍ବଲପୁର ହିତୈଷିଣୀର ଭୂମିକା

### ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ (୧୮୮୯-୧୯୦୩)

ରାଜା ସାର୍ ବାସୁଦେବ ସୁଢ଼ଳଦେବ 'ସମ୍ବଲପୁର ହିତୈଷିଣୀ'ର ପ୍ରଧାନ ପୃଷ୍ଠପୋଷକ । ତାଙ୍କର ରାଜକୀୟ ପୃଷ୍ଠପୋଷକତା ବଳରେ ଏହା ବିପୁଳ ଯଶ ସୌରଭରେ ଦିଗବିଦିଗ ଆମୋଦିତ କରିଥିଲା । ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ତଦାନୀନ୍ତନ ବରିଷ୍ଠ ଶିକ୍ଷକ ଗୁଣଜ୍ଞ ବିଦ୍ୱାନ୍ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ପତ୍ରିକାର ମୁଖ୍ୟ ସମ୍ପାଦନା କାର୍ଯ୍ୟ ବହନ କରି ପତ୍ରିକାଟିର ସୌଷ୍ଠବ ସମ୍ପାଦନ କଲେ ।

### ସମ୍ବଲପୁର ହିତୈଷିଣୀର ସ୍ୱରୂପ :

ସମ୍ବଲପୁର ହିତୈଷିଣୀ ସମଗ୍ର ଓଡ଼ିଶାର ୪୯ତମ ପତ୍ରିକା । ଏହା ୧୮୮୯ ସାଲ ମେ ମାସ ୩୦ ତାରିଖରେ ଆବିର୍ଭୂତ ହେଲା । ରାଜକୁମାର ଉଚ୍ଚବିଦ୍ୟାଳୟରେ ଶିକ୍ଷକତା ସମ୍ପାଦନ କରିବା ସଙ୍ଗେ ସଙ୍ଗେ ତାଙ୍କର ୧୪ ବର୍ଷ କାଳ ଅବସ୍ଥାନ ସମୟରେ (୧୮୮୭-୧୯୦୧) ସମ୍ବଲପୁର ହିତୈଷିଣୀର ମୁଖ୍ୟ

ସମ୍ପାଦନା କାର୍ଯ୍ୟ ସୁରୁରୁ ରୂପେ ୧୩ ବର୍ଷ ପର୍ଯ୍ୟନ୍ତ (୧୮୮୯-୧୯୦୨) ନବୀଢ଼ ଭଳ ଏକ ଯୁଗାନ୍ତର ସୃଷ୍ଟି କରିପାରିଥିଲେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ।

ଏହା 'ସମ୍ବଲପୁର ହିତୈଷିଣୀ' ଯୁଗ ବୋଲି ନାମିତ କଲେ ଅତ୍ୟୁକ୍ତି ହେବ ନାହିଁ । ରାଜା ବାସୁଦେବ ଏହାର ପ୍ରଧାନ ପୃଷ୍ଠପୋଷକ ଥାଇ ପ୍ରତିବର୍ଷ ପତ୍ରିକାର ପ୍ରକାଶନ ନିମନ୍ତେ ୫୫୦୦/-ମାତ୍ର ସାହାଯ୍ୟ ପ୍ରଦାନ କରୁଥିଲେ ।

ଆଭିମୁଖ୍ୟ (ଆମୁଖିକ) :

ପତ୍ରିକାର ଆମୁଖିକ ବିକାଶକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଏହାର ପ୍ରଧାନ ଆଭିମୁଖ୍ୟ ଥିଲା—

"ସମାଜ କାର୍ଯ୍ୟାଣି ଚ ରାଜନୀତିଃ, ବିଜ୍ଞାନ-ସାହିତ୍ୟ-ବିଶ୍ୱାସଯୁକ୍ତ
ଯଚ୍ଚୈବ ସନ୍ଦେଶଂ ନୃଚ ପ୍ରମେୟଂ ବରଂ ବିଶଦ୍‌ଗୀ ସୁପତ୍ରିକେୟମ୍ ।
ଗୁଣାନୁପାଦାୟ ମୁଦଂ ବହନ୍ତ୍ୟଃ ଶଚୈଃ ବିଚିତ୍ରୈଃ ଜଗତଷ୍ଟୁରନ୍ତ୍ୟଃ
ବଚ୍ଚୋ ବିଲାସୈଃ ହୃଦୟଂ ହରନ୍ତ୍ୟଃ, ସୌଜନ୍ୟ ପୁଣ୍ୟେନ ହରନ୍ତୁ ସନ୍ତ ।"

ଅର୍ଥାତ୍ ସାମାଜିକ, ରାଜନୈତିକ, ବୈଜ୍ଞାନିକ, ସାହିତ୍ୟିକ ତଥା ସାଂସ୍କୃତିକ ଚେତନା ଜାଗ୍ରତ କରି ସୁଧୀ ସୁହୃଦ ପାଠକ ସମାଜର ମନବିନୋଦନ ତଥା ହୃଦୟ ଆହ୍ଲାଦନ ସୃଷ୍ଟି କରିବା ଏହାର ମୌଳିକ ଲକ୍ଷ୍ୟ ତଥା ପ୍ରଧାନ ଲକ୍ଷ୍ୟ ତଥା ପ୍ରଧାନ ଆଭିମୁଖ୍ୟ ।

ତେଣୁ କୃଷ୍ଣ ପ୍ରସାଦ ଚୌଧୁରୀ (ସାହିତ୍ୟିକ ୧୮୯୪)

"ଯଦିଓ ସମ୍ବଲପୁର ବିଶେଷଣ ଯୋଗେ ହିତୈଷିଣୀ ଜନ୍ମଗ୍ରହଣ କରି ଅଛନ୍ତି ତଥାପି ଆମ୍ଭେ ବିନା ପ୍ରତିବାଦରେ କହିପାରୁ ଯେ, ସମଗ୍ର ଉତ୍କଳର ହିତସାଧନ ହିଁ ହିତୈଷିଣୀର ମୁଖ୍ୟ ଓ ପବିତ୍ର ଉଦ୍ଦେଶ୍ୟ ।" ଉକ୍ତିଟି ବିଶେଷ ପ୍ରଣିଧାନ ଯୋଗ୍ୟ ।

ଆଙ୍ଗିକ :

ପ୍ରଥମେ ଏହା ପ୍ରତ୍ୟେକ ସପ୍ତାହର ବୁଧବାର ଦିନ ଆତ୍ମପ୍ରକାଶ କରେ । ୧୮୯୫ ମସିହା ବେଳକୁ ଏହାର ଗ୍ରାହକ ସଂଖ୍ୟା ଥିଲା ୩୦୦ । ପତ୍ରିକାଟି ଆକାରରେ ଅନ୍ୟାନ୍ୟ ପତ୍ର ପତ୍ରିକା ଅପେକ୍ଷା ବୃହତ୍ତମ ଥିଲା । ତଥାପି ତାର ମୂଲ୍ୟ ସୁଲଭ ଥିଲା ଅର୍ଥାତ୍ କେବଳ ୫।୦ ମୂଲ୍ୟରେ ବର୍ଷସାରା ପତ୍ରିକା ମିଳି ପାରୁଥିଲା । ଉକ୍ତ ପତ୍ରିକାର ଡାକଖର୍ଚ୍ଚ ବର୍ଷିକ ବାରଅଣା ମାତ୍ର ଦେବାକୁ ପଡୁଥିଲା । ଛାତ୍ରମାନେ ବିନା ମୂଲ୍ୟରେ ପତ୍ରିକା ପାଇ ପାରୁଥିଲେ । ନିମନ୍ତ୍ରିତ ଲେଖକମାନେ ମଧ୍ୟ ଏ ପ୍ରକାର ସୁଯୋଗ ପାଇପାରୁଥିଲେ । ଯେହେତୁ ଏହା କୌଣସି ସାଂପ୍ରଦାୟିକ ପତ୍ରିକା ନ ଥିଲା, ତେଣୁ ଏହା ସମ୍ପୂର୍ଣ୍ଣ ରୂପେ ଆତ୍ମନିର୍ଭରଶୀଳ ଥିଲା । ଏହାର

ଉଦ୍ଦେଶ୍ୟ ମହତ୍ତ୍ୱ ଥିବାରୁ ଅର୍ଥାତ୍ ଅର୍ଥଲାଭ ଉପରେ ଗୁରୁତ୍ୱ ଆରୋପ କରାଯାଉ ନ ଥିବାରୁ ଆୟ ବ୍ୟୟ ପ୍ରାୟ ସମାନ ରହୁଥିଲା ରାଜା ବାସୁଦେବଙ୍କ ଶାସନ କାଳ ମଧ୍ୟରେ ।

ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ ସମ୍ବଲପୁର ହିତୈଷିଣୀରେ ଲେଖା ଓ ଲେଖକର ସଂକ୍ଷିପ୍ତ ସୂଚନା :

ସମ୍ବଲପୁର ହିତୈଷିଣୀର ଯଶ ସୌରଭ ଚତୁର୍ଦ୍ଦିଗରେ ବିକାଶିତ ହେବାରୁ ୧୮୯୪ ମସିହା ବେଳକୁ ଓଡ଼ିଶାର ବହୁ କୃତବିଦ୍ୟ ଲେଖକ ଏଥିରେ ସ୍ୱୀୟ ଲେଖାମାନ ପ୍ରକାଶ ପୂର୍ବକ ଏହାର ସୌଷ୍ଠବ ସମ୍ପାଦନ କଲେ । ବିଶେଷତଃ (୧୮୯୪-୧୯୦୩) ଶସ୍ଥିତ କାଳ ମଧ୍ୟରେ ବହୁ ଦୀର୍ଘ ପ୍ରବନ୍ଧ ଆତ୍ମପ୍ରକାଶ କଲା । ଏହି ଦଶନ୍ଧିରେ ଓଡ଼ିଶାର ବହୁ ପ୍ରାବନ୍ଧିକ, ଗାଳ୍ପିକ, ସମାଲୋଚକ, ଔପନ୍ୟାସିକ, ନାଟ୍ୟକାର ତଥା କବି ସ୍ୱୀୟ କୃତିମାନ ଏଥିରେ ପ୍ରକାଶ କରି ପ୍ରତିଭାର ପରିଚୟ ପ୍ରଦାନ କରିଅଛନ୍ତି ।

ସେହି କୃତବିଦ୍ୟ ପ୍ରତିଭାବାନ୍ ସାହିତ୍ୟିକମାନଙ୍କ ମଧ୍ୟରେ ରାଜା ବାସୁଦେବ ସୁଢ଼ଳଦେବ, ଯୁବରାଜ କବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଜଳନ୍ଧର ଦେବ, ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର, ସାହିତ୍ୟିକ ବିଜୟଚନ୍ଦ୍ର ମଜୁମଦାର (ଖଡ଼ିଆ ପରେ ବାମଣ୍ଡାବାସୀ) ରାଧାନାଥ ରାୟ (ବାଲେଶ୍ୱର), ଚିନ୍ତାମଣି ମହାନ୍ତି, ଚତୁର୍ଭୁଜ ପଟ୍ଟନାୟକ (କଟକ), ବିଶ୍ୱନାଥ କର (କଟକ), ଲାଲ ରାମନାରାୟଣ ରାୟ (କଟକ), ରାମକୃଷ୍ଣ ସାହୁ (କଟକ), ଚନ୍ଦ୍ରମୋହନ ମହାରଣା (କଟକ), ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (ବାଙ୍କୀର ବୈଦ୍ୟେଶ୍ୱର ନିବାସୀ ପରେ ୧୫ ବର୍ଷ ବାମଣ୍ଡାରେ ଅବସ୍ଥାନ), ସାଧୁଚରଣ ରାୟ (କଟକ), ଆର୍ତ୍ତତ୍ରାଣ ଶତପଥୀ (କଟକ), କପିଳେଶ୍ୱର ନନ୍ଦଶର୍ମା (ଭୁବନେଶ୍ୱର), ଜଗବନ୍ଧୁ ମହାପାତ୍ର (କଟକ), ଫକୀର ମୋହନ ସେନାପତି (ବାଲେଶ୍ୱର), ଦାମୋଦର ପଟ୍ଟନାୟକ (ଢେଙ୍କାନାଳ), ଲକ୍ଷ୍ମୀନାରାୟଣ ସାହୁ (କଟକ) ଧରଣୀଧର ମିଶ୍ର (ସମ୍ବଲପୁର), ଗଙ୍ଗାଧର ମେହେର (ବରପାଲି), ଲକ୍ଷ୍ମଣ ମିଶ୍ର (ସମ୍ବଲପୁର) ପ୍ରଭୃତି ଅନ୍ୟତମ ।

ଏହି ସମୟରେ ମଧ୍ୟପ୍ରଦେଶର ଛତିଶଗଡ଼ର କେତେକ ରାଜ୍ୟରେ ତଥା ସମ୍ବଲପୁରରେ ହିନ୍ଦିଭାଷାର ଗୁରୁତ୍ୱ ବୃଦ୍ଧି ଲାଭ କରିଥିଲା । ତେଣୁ ଓଡ଼ିଆ ଭାଷା ତଥା ସାହିତ୍ୟର ଶ୍ରୀବୃଦ୍ଧି ସାଧନ ଦିଗରେ ଏ ଅଞ୍ଚଳରେ ପତ୍ରିକାଟି ଏକ ସକ୍ରିୟ ଅଂଶ ଗ୍ରହଣ କରିଥିଲା । ତେଣୁ ଏକ ସ୍ୱତନ୍ତ୍ର ନବଯୁଗର ଅଭ୍ୟୁଦୟ ହେଲା ଏ ପତ୍ରିକାର ଅଖଣ୍ଡ ପ୍ରଭାବରେ ।

ତେଣୁ ସ୍ୱଭାବ କବି ଗଙ୍ଗାଧର ମେହେର ବର୍ଣ୍ଣନା କଲେ,

"ବୁଧହଂସକେଳିସର ଦେବଦୁର୍ଗ ଧାମେ,
ଜନମିଲା ସୁପତ୍ରିକା ହିତୈଷିଣୀ ନାମେ ।
ଉତ୍କଳରେ ହେଲା ନବଯୁଗର ଆରମ୍ଭ
ଦିଗେ ଦିଗେ ବ୍ୟାପିଗଲା ସାହିତ୍ୟ ସୌରଭ ।"

× × ×

ଚଉଦିଗେ କଲା ଜ୍ଞାନ ଚନ୍ଦ୍ରିକା ପ୍ରକାଶ,
ଅଜ୍ଞାନ ତିମିର ଦୂର ହେଲା ଲଭିନାଶ ।
ବୁଧ ହୃଦ ଜାବ ଜିବ ସେ ଚନ୍ଦ୍ରିକା ପାନ
କରି ସମୁଲ୍ଲାସେ କଲା ମଧୁମୟ ଗାନ
ନିର୍ମଳ ହୃଦୟ ସରେ ଭାଷା କୁମୁଦିନୀ
ବିକଶିତ ହୋଇ ହେଲା ଚିତ୍ତ ବିନୋଦିନୀ ।

ସମ୍ବଲପୁର ହିତୈଷିଣୀର ମହନୀୟ ଗୁଣ ଏକ କ୍ରାନ୍ତିକାରୀ ସାମାଜିକ ଚେତନା ଜାଗ୍ରତ କଲା । ତେଣୁ କବିଙ୍କ ଭାଷାରେ,

"ଫୁଟିଲା ପ୍ରବନ୍ଧ ଫୁଲ ଛୁଟିଲା ସୁବାସ,
ଲଗିଲା ପାଠକ ମଧୁଲିଟଙ୍କ ବିଳାସ
ଉଠିଲା କବିତା ସିନ୍ଧୁ ତରଙ୍ଗ ପଟଳ
ପ୍ରତିଭା ଔଷଧି କଲା ପ୍ରତିଭା ପ୍ରବଳ ।
ସମାଜ କାନନେ ପଶି ସେ ଚନ୍ଦ୍ର କିରଣ
କୁତ୍ସିତ ତିମିର କଲା ଯତନେ ହରଣ ।"

କବିବର ରାଧାନାଥ ରାୟଙ୍କ ଭାଷାରେ (ମାର୍ ବାସୁଦେବ ସୁନ୍ଦଳଦେବଙ୍କ C. I. E" ଶୀର୍ଷକ ପ୍ରବନ୍ଧରେ)

"ତାହାଙ୍କ ସାହାଯ୍ୟରେ ପରିଚାଳିତ ଓ ଅନୁଭବରେ ଅନୁଭାବିତ ଶ୍ରୀଯୁକ୍ତ ବାବୁ ନୀଳମଣି ବିଦ୍ୟାରତ୍ନ କର୍ତ୍ତୃକ ସମ୍ପାଦିତ "ସମ୍ବଲପୁର ହିତୈଷିଣୀ" ଦ୍ୱାରା ଉତ୍କଳ ସାହିତ୍ୟରେ ଯେ ଯୁଗାନ୍ତର ପ୍ରବର୍ତ୍ତିତ ହୋଇଅଛି ଏହା କିଏ ଅସ୍ୱୀକାର କରିବ ?"

ସମ୍ବଲପୁର ହିତୈଷିଣୀରେ ପ୍ରବନ୍ଧ, ଗଳ୍ପ, କବିତା ଧାରାବାହିକ ରୂପେ ଉପନ୍ୟାସ, ସମାଲୋଚନା, କାବ୍ୟ, ପ୍ରଭୃତି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ବିଭିନ୍ନ

ସମ୍ବାଦ (ସମ୍ବଲପୁର ସମ୍ବାଦ, ବାମଣ୍ଡା ସମ୍ବାଦ, ପୃଥିବୀ ସମ୍ବାଦ, ଭାରତ ସମ୍ବାଦ ତଥା ବିବିଧ ସମ୍ବାଦ) ପ୍ରକାଶ ପାଉଥିଲା । ଯାବତୀୟ ପ୍ରକାଶିତ ତଥ୍ୟର ମତାମତ ନିମନ୍ତେ ଲେଖକମାନେ ହିଁ ଦାୟୀ ହେଉଥିଲେ । ଏ ସବୁ ସମ୍ବାଦ ପ୍ରଦାନ ନିମନ୍ତେ ବିଭିନ୍ନ ସ୍ଥାନରେ ସମ୍ବାଦଦାତାମାନେ ନିଯୁକ୍ତ ଥିଲେ ।

ସମ୍ବଲପୁର ହିତୈଷିଣୀର ପ୍ରଥମ ପର୍ଯ୍ୟାୟରେ (୧୮୮୯-୧୯୦୩) ପଞ୍ଚାନ୍ତରେ ୧୯୦୫ ବାମଣ୍ଡା ସଭା ପଣ୍ଡିତ ତଥା ରାଜା ବାସୁଦେବଙ୍କ ଦୀକ୍ଷାଗୁରୁ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା, ପଣ୍ଡିତ ସୁଦର୍ଶନ ନ୍ୟାୟରତ୍ନ, ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାର, ପଣ୍ଡିତ ଭଗିରଥି ରଥ, ପଣ୍ଡିତ ମଧୁସୂଦନ ମିଶ୍ର ତର୍କବାଚସ୍ପତଙ୍କ ରଚନା ଆତ୍ମପ୍ରକାଶ ଲଭି ପତ୍ରିକାଟିର ସୌଷ୍ଠବ ସମ୍ପାଦନ କଲେ ।

ରାଜା ବାସୁଦେବଙ୍କର ଓ ସଚ୍ଚିଦାନନ୍ଦଙ୍କର ଶାସନପଦ୍ଧତିର ସୂକ୍ଷ୍ମାଭାସ ଏବଂ ସାହିତ୍ୟକୃତିର ସୂକ୍ଷ୍ମ ପର୍ଯ୍ୟାଲୋଚନା ହିଁ ସ୍ଥାନ ଲାଭ କରୁଥିଲା । ଏତଦ୍‌ବ୍ୟତୀତ ବାମଣ୍ଡା ଆଲୋଚନା ସଭା, ବ୍ରାହ୍ମଣ ସମିତିର ସୂକ୍ଷ୍ମ ସୂଚନା ପ୍ରକାଶିତ ହେଉଥିଲା । ତେଣୁ ବ୍ୟାସକବି ଫକୀରମୋହନଙ୍କ ଭାଷାରେ,

"ହେ ସୁଚିର ମହାରାଜ କରେ ନମସ୍କାର,
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର ।".

ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ବାମଣ୍ଡାର ଯେଉଁ କେତେକ ଲେଖକ ଏଥିରେ ସ୍ୱୀୟ କୃତମାନ ପ୍ରକାଶ ପୂର୍ବକ ପତ୍ରିକାଟିର ସୌଷ୍ଠବ ସମ୍ପାଦନ କରିଥିଲେ ସେମାନଙ୍କର ଓ ରଚନାକୃତର କାମୋଲ୍ଲେଖ ପ୍ରଦତ୍ତ ହେଲା ।

(i) ରତ୍ନାକର ଶର୍ମା (କୁଣ୍ଠିଆ)ଙ୍କ 'ମଦନ' (୧୮୯୨), 'ମେଘଦୂତ' (୧୮୯୩) 'ମାତବାଣୀ' (୧୯୦୧), 'ଶ୍ରୀବନ ଭଜନ' (୧୯୦୨) କବିତାମାନ ।

(ii) ରଘୁମଣିଦେବଙ୍କ 'ପ୍ରଭାତ ବର୍ଣ୍ଣନା' (୧୮୯୩), 'ଆଦର୍ଶ ରମଣୀ' (୧୮୯୪) ।

(iii) ପଣ୍ଡିତ ଯଜ୍ଞେଶ୍ୱର ନନ୍ଦ କାବ୍ୟତୀର୍ଥଙ୍କର 'ହେମମାଳୀ' (୧୯୦୨) 'ଉତ୍କଳେ ଯାଜାଜିଲ' ।

(iv) ପଣ୍ଡିତ ଦାମୋଦର ମିଶ୍ର ପଦ୍ୟାଳଙ୍କାରଙ୍କର 'ପଦ୍ମାବର୍ତ୍ତ', 'ଚନ୍ଦ୍ରିକାସ୍ତବ' (୧୮୯୬) 'ସ୍ୱପ୍ନ' 'ଭକ୍ତଜନଶାମଣିମାଳା' ପ୍ରଧାନପାଠ (୧୮୯୫ ଅଗଷ୍ଟ) 'ଉତ୍କଳେ ବାସନ୍ତିକ ଦଶା' (୧୮୯୭) 'ସ୍ୱର୍ଣ୍ଣପୁର' 'ସଂସାରର ଅନିତ୍ୟତା' 'ଜନ୍ମା' (୧୯୦୧) ।

(v) ପଣ୍ଡିତ ବ୍ରଜନନ୍ଦନ ମିଶ୍ର ଶର୍ମା 'ଆଠମଲ୍ଲିକର ପର୍ଯ୍ୟାପ୍ତ ପର୍ବତ' (୧୮୯୪)।

(vi) ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତିଙ୍କର 'ତାପ', 'ସୁନ୍ଦରୀର ପ୍ରଶସ୍ତି' (୧୮୯୭) ପ୍ରଭୃତି ସାହିତ୍ୟକୃତିମାନ ପ୍ରକାଶ ଲାଭ କରି ସମ୍ବଲପୁର-ହିତୈଷିଣୀର ଶ୍ରୀବୃଦ୍ଧି ସାଧନ ତଥା ଗୌରବ ଅଭିବୃଦ୍ଧି ସାଧନ କରିଥିଲା। ସମ୍ବଲପୁର ହିତୈଷିଣୀ ରାଜା ବାସୁଦେବ ସୁଢ଼ଳଦେବଙ୍କ ଜୀବଦ୍ଦଶାରେ ଅର୍ଥାତ୍ (୧୮୮୯-୧୯୦୩) ଦୀର୍ଘ ୧୪ ବର୍ଷ କାଳ ବାମଣ୍ଡାର ସାହିତ୍ୟିକ, ସାଂସ୍କୃତିକ ତଥା ସାମାଜିକ ଜୀବନ ପ୍ରବାହକୁ ଉଚ୍ଚାଙ୍ଗ ପରିବେଶରେ ନିୟନ୍ତ୍ରଣ କରିବାରେ ସମର୍ଥ ହୋଇପାରିଥିଲା ଏଥିରେ ସନ୍ଦେହ ନାହିଁ। ସମ୍ବଲପୁର ହିତୈଷିଣୀ ଯୋଗୁଁ ବାମଣ୍ଡାର ତଥା ଓଡ଼ିଶାର ସାହିତ୍ୟିକ ସଂଖ୍ୟା ବୃଦ୍ଧି ଓ ସାହିତ୍ୟିକ ସମାଗମରେ ଦେବଗଡ଼ ସାରସ୍ୱତତୀର୍ଥରୂପେ ପ୍ରତିଷ୍ଠିତ ହୋଇଥିଲା।

ତେଣୁ ସମସାମୟିକ କବିବର ରାଧାନାଥ ଦେବଗଡ଼ର ମହିମା ବର୍ଣ୍ଣନା ପୂର୍ବକ ସ୍ତୁତିପ୍ରଶସ୍ତି ଗାନ କଲେ,

"ହେ ନୃପ ସନ୍ତତି ପଶି କବିତା ଭଣ୍ଡାରେ
ସେ ଭଣ୍ଡାରୁ ବାଛି ବାଛି ସକାଞ୍ଚ କୌଶଳେ
ଦେଖାଇଲ ନବ ଭୂଷା ଉତ୍କଳ ସ୍ୱବୃନ୍ଦେ।

× × ×

ତୁମ୍ଭ ଶୁଭ ଆବର୍ଭାବେ ହୋଇଛି ଉତ୍କଳେ
ଦେବଗଡ଼ ଦେବ ଏବେ ତୀର୍ଥ ସାରସ୍ୱତ
ବୁଧହଂସ କେଳିସର ଅବିଦ୍ୟା ଉପାରେ।"[୮] (ମହାଯାତ୍ରା)

ବରିଷ୍ଠ ସାହିତ୍ୟିକ ବିଦ୍ୱାନ ବିଜୟଚନ୍ଦ୍ର ମଜୁମଦାରଙ୍କ ଭାଷାରେ "× × ×। ସମ୍ବଲପୁର ହିତୈଷିଣୀ ବାମଣ୍ଡାର ତଥା ଉତ୍କଳର ଏକ ଅକ୍ଷୟକୀର୍ତ୍ତି।"

ଡଃ ମାୟାଧର ମାନସିଂହଙ୍କ ଭାଷାରେ,

"କବି ବିଦ୍ୟାରତ୍ନଙ୍କ ସମ୍ପାଦକତ୍ୱରେ ଯେଉଁ ସମ୍ବଲପୁର ହିତୈଷିଣୀ ଓଡ଼ିଆ ସାହିତ୍ୟରେ ନବଯୁଗର ଆବାହକ ହୋଇଥିଲା, ତାର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ ଭାବରେ ରାଧାନାଥ, ଫକୀରମୋହନ, ମଧୁସୂଦନ ପ୍ରଭୃତି ଉତ୍କଳର କବିମାନଙ୍କର ମାନାଦରକାରୀ ପ୍ରତିଭା ପୂର୍ବକ ଯଶସ୍ୱୀ ରାଜପୁରୁଷ ଭାବରେ ସାର୍ ସୁଢ଼ଳଦେବଙ୍କ ସ୍ମୃତି ଓଡ଼ିଆ ସାହିତ୍ୟରେ ଚିର ସମ୍ମାନିତ ହୋଇରହିବ।" ଉକ୍ତିଟି ଯଥାର୍ଥ ବୋଲି ମନେ ହୁଏ।

ସର୍ବୋପରି ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ "ସମ୍ବଲପୁର ହିତୈଷିଣୀ" ଓଡ଼ିଆ ସାହିତ୍ୟ ଜଗତରେ ଯେ, ଏକ ଅକ୍ଷୟ କୀର୍ତ୍ତି କହିବା ବାହୁଲ୍ୟ ମାତ୍ର ।

**ରାଜା ବାସୁଦେବଙ୍କ ରାଜତ୍ୱ କାଳରେ ପ୍ରକାଶିତ ଅନ୍ୟାନ୍ୟ ପତ୍ରିକା ;**

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱକାଳରେ ତଥା ବାମଣ୍ଡାରେ 'ସମ୍ବଲପୁର ହିତୈଷଣୀ'ର ଆତ୍ମପ୍ରକାଶ କାଳରେ ଯେଉଁ ଆଉ କେତେକ ସାମୟିକ ପତ୍ରିକା ପ୍ରକାଶ ଲଭ କରିଥିଲେ 'ବିଜୁଳି' (୧୮୯୩) ସେମାନଙ୍କ ମଧ୍ୟରେ ଅନ୍ୟତମ ।

'ବିଜୁଳିର' ଆବିର୍ଭାବ ଓ ପରିବେଶ :

ଓଡ଼ିଆ ସାହିତ୍ୟର ମଧ୍ୟଯୁଗୀୟ କବି ଉପେନ୍ଦ୍ର ଭଞ୍ଜ ଓ ଆଧୁନିକ ଯୁଗୀୟ କବି ରାଧାନାଥ ରାୟଙ୍କ ଗୁଣାନୁଗୁଣ ଉପରେ ଏକ ସାହିତ୍ୟିକ ବିବାଦ, ୧୮୯୩ ମସିହାରେ ସୃଷ୍ଟି ହେଲା । ୧୮୯୧ ମସିହାରେ 'ଉତ୍କଳପ୍ରଭା' ଆତ୍ମପ୍ରକାଶ କରିବା ପରେ ଏହି ବିବାଦକୁ କେନ୍ଦ୍ର କରି କଟକରୁ ପ୍ରିଣ୍ଟିଂକମ୍ପାନୀ ପ୍ରେସରୁ ୧୮୯୩ ଅଗଷ୍ଟ ୧୭ ତାରିଖରେ 'ଦୀପିକା'ର ଆଶ୍ରୟରେ 'ଇନ୍ଦ୍ରଧନୁ' ନାମକ ମାସିକ ପତ୍ରିକା ପ୍ରକାଶିତ ହେଲା । ଠିକ୍ ଚାରି ମାସକ ପରେ ଅର୍ଥାତ୍ ୧୮୯୩ ଅଗଷ୍ଟ ୧୭ ତାରିଖରେ ବାମଣ୍ଡାର 'ଜଗନ୍ନାଥବଲ୍ଲଭ' ପ୍ରେସ୍‌ରୁ 'ବିଜୁଳି' ନାମକ ଏକ ମାସିକ ପତ୍ରିକା ପ୍ରକାଶିତ ହେଲା ।

ଇନ୍ଦ୍ରଧନୁ-ବିଜୁଳିର ସାହିତ୍ୟିକ ବିବାଦର ପୃଷ୍ଠଭୂମି :
(୧୮୯୩-୧୮୯୪)

ଉତ୍କଳଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟ ଇନ୍ଦ୍ରଧନୁ ପତ୍ରିକାର ସମର୍ଥକ ଥିଲେ । ଉତ୍କଳପ୍ରଭାରେ ସମାଲୋଚକ ଲାଲା ରାଜନାରାୟଣ ରାୟଙ୍କ ପ୍ରକାଶିତ ଉପେନ୍ଦ୍ର ଭଞ୍ଜ ସାହିତ୍ୟର ସମାଲୋଚନା ହିଁ ଏହି ସାହିତ୍ୟିକ ବିବାଦର ସୂତ୍ରପାତ କଲା । ଏଣେ ସମ୍ବଲପୁର ହିତୈଷିଣୀ ପତ୍ରିକାର ସମ୍ପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, କବିବର ରାଧାନାଥ ରାୟଙ୍କ ସାହିତ୍ୟର ସମର୍ଥକ ଥିଲେ । ମଧୁସୂଦନ ରାଓ, ଗଙ୍ଗାଧର ମେହେର, ଚନ୍ଦ୍ର ମୋହନ ମହାରଣା ପ୍ରଭୃତି କବି ତଥା ସାହିତ୍ୟିକବୃନ୍ଦ ରାଧାନାଥୀ ସାହିତ୍ୟର ସମର୍ଥକ । ଏମାନଙ୍କ ସାମୂହିକ ଚେଷ୍ଟା ତଥା ଆଲୋଚନା ପ୍ରତ୍ୟାଲୋଚନାରେ ବିଜୁଳି ଦୀର୍ଘ ଏକ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାର ସାହିତ୍ୟାକାଶରେ ଚମକ ସୃଷ୍ଟି କଲା । ଏହି ସାହିତ୍ୟିକ ବିବାଦ (୧୮୯୩-୧୮୯୪)କୁ କେନ୍ଦ୍ର କରି ଓଡ଼ିଶାରେ ବହୁ କବି, ସମାଲୋଚକ ତଥା ସାହିତ୍ୟିକ ଆତ୍ମପ୍ରକାଶ

କଲେ । ସେମାନେ ବିଭିନ୍ନ ବିଷୟରେ ଲେଖଣୀ ଚାଳନା କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନରେ ତତ୍ପର ହେଲେ ।

ବକୁଳ ରାଜକୀୟ ପୃଷ୍ଠପୋଷକତା ଲାଭ କରିଥିଲା ପୂର୍ଣ୍ଣ ରୂପେ ! ନକେ ନୀଳମଣି ବିଦ୍ୟାରତ୍ନ ଏହାର ସମ୍ପାଦକ ଥାଇ ପତ୍ରିକାଟିର ଗୌରବ ସମ୍ପାଦନ କରିଥିଲେ । ତେଣୁ ଏହାର ସାହିତ୍ୟିକ ମୂଲ୍ୟ ଉନ୍ନତ ହେତୁ ସାହିତ୍ୟାକାଶକୁ ନୂତନ ଆଲୋକରେ ଉଦ୍‌ଭାସିତ କଲା । ସେଥିପାଇଁ ସମ୍ବଲପୁର ହିତୈଷିଣୀ ୧୮୯୫ରେ ପ୍ରକାଶ ପାଇଲା, ଉତ୍କଳ ସାହିତ୍ୟାକାଶରେ ବକୁଳ ଚମକ ନ ଥିଲେ, ଇନ୍ଦ୍ରଧନୁ ଏତେ କାଳ ବିଭାସିତ ହୁଅନ୍ତା କ ନା ସନ୍ଦେହ । ଅତଏବ ଇନ୍ଦ୍ରଧନୁର ଉତ୍ସାହ, ଉଦ୍ୟମ ଓ ଅନୁଷ୍ଠାନ ବକୁଳ ସକାଶେ । ବକୁଳ ବାହ୍ୟତଃ ଇନ୍ଦ୍ରଧନୁର କିଛି କ୍ଷତି ନ କରି ପ୍ରକାରାନ୍ତରେ ତାହାର ହିତ ସାଧନ କରିଅଛି । ବର୍ଷେକ ପରେ ଉଭୟେ ଅନ୍ତର୍ଦ୍ଧାନ ହେଲେ ଓ ସାହିତ୍ୟ ଝଡ଼ର ଅବସାନ ଘଟିଲା ।

## ଆଲୋଚନାର ଅଭ୍ୟୁଦୟ : (୧୯୦୦)

୧୯୦୦ ସାଲ ବେଳକୁ ବାମଣ୍ଡା ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରଧାନଶିକ୍ଷକ ଯୋଗେଶଚନ୍ଦ୍ର ଦାସଙ୍କ ସହାୟତାରେ ବାମଣ୍ଡା ଛାତ୍ର ସମିତି ଆନୁକୂଲ୍ୟରେ ଏକ ମାସିକ ପତ୍ରିକା ଆଲୋଚନା ଆତ୍ମପ୍ରକାଶ କଲା । ଉକ୍ତ ପତ୍ରିକାଟି ୨୪ ପୃଷ୍ଠା ବିଶିଷ୍ଟ ଓ ତାର ମୂଲ୍ୟ ଥିଲା ଡାକ ମାସୁଲ ସହିତ ବାର୍ଷିକ ଏକଟଙ୍କା ମାତ୍ର । ପ୍ରେସ୍‌ସେକ୍ରେଟେରୀ ବୃନ୍ଦାବନଚନ୍ଦ୍ର ଦେବଙ୍କ ପ୍ରଯତ୍ନରେ ପ୍ରେସ୍‌ରେ ମୁଦ୍ରିତ ହେଉଥିଲା ସୁଲଭ ଦରରେ ।

ପ୍ରବନ୍ଧ ସାହିତ୍ୟ ତଥା ସମାଲୋଚନା ସାହିତ୍ୟର ନୂତନ ଦିଗ୍‌ଦର୍ଶନ ପ୍ରଦାନ ପୂର୍ବକ ରଚନା ଶକ୍ତିର ବିକାଶ ସାଧନ ଏହାର ପ୍ରଧାନ ଅଭିମୁଖ୍ୟ ଥିଲା । ଏଥିରେ ସାଂସ୍କୃତିକ, ସାମାଜିକ, ସାହିତ୍ୟିକ ତଥା ବୈଜ୍ଞାନିକ ତଥ୍ୟମାନ ସନ୍ନିବେଶିତ ହେଉଥିଲା । ଏହାର ଆଦର୍ଶ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ତେଣୁ ପ୍ରକାଶ ପାଉଥିଲା ।

"ସମ'ଲୁଭାଷା ବିଶଦୀଭବନ୍ତୁ,, ହୃଦ୍ୟୈବ ହୃଷ୍ଟତ୍ଵଥ ବନ୍ଧୁବର୍ଗାଃ,
ନାନା ପ୍ରବନ୍ଧାନ୍ ପରିତୋ ବିଭଜ୍ୟ ବୟଂ କୃତାର୍ଥାଃ ସତତଂ ଭବାମ ।"

ପତ୍ରିକା ସମ୍ବନ୍ଧୀୟ ଯାବତୀୟ ଚିଠିପତ୍ର ପ୍ରବନ୍ଧାଦି ଲେଖା ଓ ପତ୍ରିକାର ମୂଲ୍ୟାଦି ଜଳନ୍ଧରଦେବଙ୍କ ନାମରେ ପ୍ରେରିତ ହେଉଥିଲା । ସେ ସମୟରେ ଆଲୋଚନା ସମିତିର ସମ୍ପାଦକ ଥିଲେ ରସାନନ୍ଦ ପ୍ରଧାନ ।

ଉତ୍କଳମଧୁପ (୧୯୦୦)

ଆଲୋଚନାର ମାଧୁର୍ଯ୍ୟ ଆତ୍ମପ୍ରକାଶ କରିବାର ଛଅମାସ ପରେ ୧୯୦୦ ମସିହା ଜୁନ୍ ମାସରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦକତାରେ ଆଉ ଏକ ମାସିକ ପତ୍ରିକା ଉତ୍କଳମଧୁପ ଆତ୍ମପ୍ରକାଶ କଲା । ଏହା ଆଠପୃଷ୍ଠା ବିଶିଷ୍ଟ ବିବିଧ ବିଷୟକ ମାସିକ ପତ୍ରିକା ଥିଲା । ଏହାର ବାର୍ଷିକ ମୂଲ୍ୟ ଅତ୍ୟନ୍ତ ସୁଲଭ ଥିଲା । ପତ୍ରିକାଟିରେ ନୀତିବାକ୍ୟ, ସଦୁପଦେଶ, ଦ୍ରବ୍ୟଗୁଣ, ବିଚିତ୍ରବାର୍ତ୍ତା, ସାଧୁ ଦୃଷ୍ଟାନ୍ତ ମହାଜନଚରିତ, ସ୍ୱାସ୍ଥ୍ୟତତ୍ତ୍ୱ, କୃଷିପ୍ରଣାଳୀ, ରହସ୍ୟଜନକ ପ୍ରକରଣ ସରଳ ଜ୍ୟୋତିଷ, ସହଜ ଚିକିତ୍ସା, ସ୍ମରଣୀୟ ଘଟଣାବଳୀ, ଭ୍ରମଣ ବିବରଣ, କୌତୁକ ପ୍ରସଙ୍ଗ, ଶାସ୍ତ୍ରୀୟ ଅନୁଶାସନ, ଉଦାହରଣ ଉପଯୋଗୀ ଶ୍ଳୋକ, ସଙ୍ଗୀତ, ଦେଶାନ୍ତର, ପ୍ରବାଦ ବାକ୍ୟ ତଥା ବ୍ୟବହାରୀୟ ସଂସାରନୀୟ ନାନା ବିଷୟ ପ୍ରଭୃତି ଜ୍ଞାତବ୍ୟ ତଥ୍ୟ ସ୍ଥାନ ଲାଭ କରୁଥିଲା । ତେଣୁ ଏହାର ଆଦ୍ୟମୁଖ୍ୟ ଥିଲା—

"ଜ୍ଞାନର ପେଡ଼ା, ସଭିଙ୍କି ଲୋଡ଼ା
ସଭିଏଁ ପାଇବେ ଥୋଡ଼ା ଥୋଡ଼ା "

କହିବା ବାହୁଲ୍ୟ ଯେ, ପାଠକ ମଧୁପଙ୍କ ନିକଟରେ ଏହା ମଧୁଚକ୍ର ସଦୃଶ ସ୍ୱାଦ୍ୟ, ସୁମଧୁର, ହୃଦ୍ୟ ଏବଂ ରୁଚିକର ବୋଧ ହେଉଥିଲା । ଏହା ଆକାରରେ କ୍ଷୁଦ୍ର ହେଲେହେଁ ବହୁ ଉତ୍କୃଷ୍ଟ ଉପାଦେୟ ଜ୍ଞାନଗର୍ଭକ, ନୀତିତତ୍ତ୍ୱ ସୁମଧୁର ତଥ୍ୟପୂର୍ଣ୍ଣ ଥିବାରୁ ସମାଜର ସମସ୍ତ ଶ୍ରେଣୀର ପାଠକଙ୍କୁ ଆପ୍ୟାୟିତ ତଥା ଆକର୍ଷଣ ପୂର୍ବକ ଚିତ୍ତବିନୋଦନ ଓ ହୃଦୟ ଆହ୍ଲାଦନ ସୃଷ୍ଟି କରିପାରୁଥିଲା । ଏହା ରାଜା ବାସୁଦେବଙ୍କ ରାଜତ୍ୱ କାଳର ପ୍ରାନ୍ତ ଭାଗରେ ବିଶେଷ ଜନପ୍ରିୟତା ଲାଭ କରିପାରିଥିଲା । ତେଣୁ ବିଶିଷ୍ଟ ସାହିତ୍ୟ ସେବୀ ଦୀନବନ୍ଧୁ ପ୍ରଧାନଙ୍କ ଭାଷାରେ—

"କି ବର୍ଣ୍ଣିବି ତୋ ମହିମା ଉତ୍କଳମଧୁପ
ଅଟୁ ତୁ ସାହିତ୍ୟାକାଶେ ବିମଳ ଉଡୁପ
ଧରଣୀ ଜନନୀ ମୁଖ ଉଜ୍ଜ୍ୱଳକରଣେ
ତୋହ ସମ ଅଛୁ କିଏ ଉତ୍କଳ ଭୁବନେ ।"

କହିବା ବାହୁଲ୍ୟ ଯେ, ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜତ୍ୱ କାଳରେ ୧୯୦୦ ସାଲ୍ ବେଳକୁ ଏକ ସମୟରେ ତିନୋଟି ପତ୍ରିକା ଯଥା— ସମ୍ବଲପୁର ହିତୈଷିଣୀ, ଆଲୋଚନା, ଓ ଉତ୍କଳମଧୁପ ଆତ୍ମପ୍ରକାଶ ଲାଭ କରି ସମଗ୍ର ଓଡ଼ିଶାରେ ଏକ ଉଚ୍ଚକୋଟୀର ସାଂସ୍କୃତିକ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ଏକ ଉନ୍ନତ ଆଦର୍ଶ ସ୍ଥାନୀୟ ସାହିତ୍ୟିକ ବାତାବରଣ ସୃଷ୍ଟି କରିପାରିଥିଲେ । ଏହା ଅଖୋଜବାମଣ୍ଡା ପରି ଏକ ଘନବନାକୀର୍ଣ୍ଣ ରାଜ୍ୟ ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ତେଣୁ ରାଜା ବାସୁଦେବଙ୍କ ରାଜ୍ୟଶାସନର ଶେଷ ଦଶନ୍ଧି (୧୮୯୩–୧୯୦୩) ବାମଣ୍ଡାର ଜନ ଜୀବନକୁ ବିଶେଷ ରୂପେ ବିଭିନ୍ନ କ୍ଷେତ୍ରରେ ଯଥା ସାଂସ୍କୃତିକ, ଅର୍ଥନୈତିକ, ସାମାଜିକ, ପ୍ରଶାସନିକ ସର୍ବୋପରି ସାହିତ୍ୟିକ କ୍ଷେତ୍ରରେ ଅନୁପ୍ରାଣିତ ତଥା ଋଦ୍ଧିମନ୍ତ କରିପାରିଥିଲା, ଏଥିରେ ଦ୍ୱିରୁକ୍ତି ନାହିଁ ।

ଶଂସିତ କାଳରେ ବିଭିନ୍ନ ପତ୍ର ପତ୍ରିକାର ପ୍ରଚଳନ ସଙ୍ଗେ ବିଭିନ୍ନ ସାହିତ୍ୟକୃତି ସମ୍ପାଦନ ପଣ୍ଡିତ, କବି, ସାଧକ ତଥା ଆଲଙ୍କାରିକ ରାଜା ସାର୍ ବାସୁଦେବ ମୁଢ଼ଳଦେବଙ୍କ ଅସାଧାରଣ ସାହିତ୍ୟିକ ପ୍ରତିଭାର ପରିଚୟ ପ୍ରଦାନ କରେ । ଏହାର ଯଥାଯଥ ପରିଚୟ ପରବର୍ତ୍ତୀ ସାହିତ୍ୟ-କୃତି ପର୍ଯ୍ୟାଲୋଚନାରୁ ସହଜରେ ଅନୁମେୟ । ତେଣୁ ରାଜା ସାର୍ ବାସୁଦେବ ସୁଢ଼ଳଦେବ ବାମଣ୍ଡାର ଶିକ୍ଷାର ବିକାଶ ତଥା ସାହିତ୍ୟର ଉନ୍ନତି ନିମନ୍ତେ ଏକ ସୁଦୃଢ଼ ଭିତ୍ତିଭୂମି ତଥା ଅନୁକୂଳ ବାତାବରଣ ସୃଷ୍ଟି କରି ସମଗ୍ର ଓଡ଼ିଶାରେ ସ୍ୱନାମଧନ୍ୟ ହୋଇପାରିଥିଲେ ଏଥିରେ ଦ୍ୱିରୁକ୍ତି ନାହିଁ ।

## ଚତୁର୍ଥ ପରିଚ୍ଛେଦ

# ସାହିତ୍ୟିକ ପଣ୍ଡିତ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ କୃତିସମ୍ପଦର ସୂକ୍ଷ୍ମ ପର୍ଯ୍ୟାଲୋଚନା

### ବାମଣ୍ଡାର ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ ରାଜା ସାର୍ ବାସୁଦେବ ସୁଢ଼ଳଦେବ

ରାଜା ବାସୁଦେବ ବାଲ୍ୟକାଳରେ ସଂସ୍କୃତ ସାହିତ୍ୟାନୁରାଗୀ ଥିଲେ । ତେଣୁ ରାଜା ବ୍ରଜସୁନ୍ଦର ଦେବ ତାଙ୍କୁ ବହୁ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ ଓ ଜ୍ଞାନାର୍ଜନ ପାଇଁ ବିଶେଷ ସୁବିଧା ସୁଯୋଗ ପ୍ରଦାନ ତଥା ସୁବନ୍ଦୋବସ୍ତ କଲେ । ତେଣୁ ପଣ୍ଡିତମାନଙ୍କ ନିକଟରେ ସଂସ୍କୃତ ଶାସ୍ତ୍ରମାନ ଅଧ୍ୟୟନ ପୂର୍ବକ ଗଭୀର ବ୍ୟୁତ୍ପତ୍ତି ଲାଭ କରିଥିଲେ । ରାଜଧାନୀ ଦେବଗଡ଼ରେ ଜଗନ୍ନାଥ ବଲ୍ଲଭ ପ୍ରେସ୍ ପ୍ରତିଷ୍ଠିତ ହେଲା ପରେ ନିଜର ଲବ୍‌ଧ ଆଲଙ୍କାରିକ ଜ୍ଞାନର ପରିପ୍ରକାଶ ନିମିତ୍ତ ସତତ ଚେଷ୍ଟିତ ହେଲେ ।

ସଂସ୍କୃତ ସାହିତ୍ୟର ବିଶିଷ୍ଟ ଆଲଙ୍କାରିକ ପଣ୍ଡିତ ବିଶ୍ୱନାଥ କବିରାଜଙ୍କ ବିରଚିତ ଶ୍ରେଷ୍ଠ ଅଲଙ୍କାରଶାସ୍ତ୍ର ସାହିତ୍ୟ-ଦର୍ପଣ ଏକ ଅନବଦ୍ୟ କୃତି । ପଣ୍ଡିତ ବିଶ୍ୱନାଥ କବିରାଜଙ୍କ ସରଳ ଓ ପ୍ରାଞ୍ଜଳ ଭାଷା ସଂଯୋଜନା ରୀତିରେ ପ୍ରତ୍ୟେକ ସାହିତ୍ୟିକ ବିଭାଗର ମୌଳିକ ତତ୍ତ୍ୱ ଓ ସଂଜ୍ଞା ସ୍ୱରୂପ ଓ ବିଭାଗ ଆଦି ଶ୍ଳୋକାକାରରେ ବର୍ଣ୍ଣିତ ହେତୁ ସହଜ ଓ ସୁଖପାଠ୍ୟ ବିବେଚିତ ହୋଇଥାଏ ।

ଆଲଙ୍କାରିକ ସାହିତ୍ୟିକ ରାଜା ବାସୁଦେବ ଉକ୍ତ ସାହିତ୍ୟ ଦର୍ପଣର ତଥ୍ୟକୁ ପୁଙ୍ଖାନୁପୁଙ୍ଖ ରୂପେ ବିଶ୍ଳେଷଣ ପୂର୍ବକ ଆହରଣ କରି **ଅଳଙ୍କାର ବୋଧୋଦୟ** (୧୮୮୭) ନାମକ ଏକ ଉଚ୍ଚକୋଟୀର ଶାସ୍ତ୍ର ଓଡ଼ିଆ ଭାଷାରେ ରଚନା କରି ଓଡ଼ିଆ ସାହିତ୍ୟର ଏକ ଅପୂରଣୀୟ ଅଭାବର ପରିପୂର୍ତ୍ତି ବିଧାନ କରେ ।

### ଅଳଙ୍କାର ବୋଧୋଦୟର ସ୍ୱରୂପ ନିର୍ଦ୍ଧାରଣ :

କହିବା ବାହୁଲ୍ୟ ଯେ ରାଜା ବାସୁଦେବ ଜଣେ ଉଚ୍ଚକୋଟୀର ସଂସ୍କୃତଜ୍ଞ ପଣ୍ଡିତ ଓ ଆଦର୍ଶ ଆଲଙ୍କାରିକ କବି । ତେଣୁ ଓଡ଼ିଆ ସାହିତ୍ୟରୁ ବିଭିନ୍ନ ଉପାଦେୟ

ଦୃଷ୍ଟାନ୍ତମାନ ଆହରଣ କରି ତହିଁରେ ଆବଶ୍ୟକୀୟ ଅଳଙ୍କାରମାନଙ୍କର ଲକ୍ଷଣ ଓ ସ୍ୱରୂପ ନିର୍ଦ୍ଧାରଣ କରି ଅଗାଧ ପାଣ୍ଡିତ୍ୟର ପରିଚୟ ପ୍ରଦାନ କଲେ ।

ସମଗ୍ର ଅଳଙ୍କାର ବୋଧୋଦୟ ଗ୍ରନ୍ଥଟି ୭ଟି ପରିଚ୍ଛେଦରେ ବିଭକ୍ତ ଯଥା :—

| | | |
|---|---|---|
| ୧ମ ପରିଚ୍ଛେଦ | — | କାବ୍ୟ ସ୍ୱରୂପ ନିରୂପଣ |
| ୨ୟ ପରିଚ୍ଛେଦ | — | ବାକ୍ୟ ସ୍ୱରୂପ ନିରୂପଣ |
| ୩ୟ ପରିଚ୍ଛେଦ | — | ରସ ନିର୍ଣ୍ଣୟ— |
| ୪ର୍ଥ ପରିଚ୍ଛେଦ | — | ଦୋଷ ନିର୍ଣ୍ଣୟ— |
| ୫ମ ପରିଚ୍ଛେଦ | — | ଗୁଣ ନିର୍ଣ୍ଣୟ— |
| ୬ଷ୍ଠ ପରିଚ୍ଛେଦ | — | ଅର୍ଥାଳଙ୍କାର ନିର୍ଣ୍ଣୟ— |
| ୭ମ ପରିଚ୍ଛେଦ | — | ଧ୍ୱନି ନିର୍ଣ୍ଣୟ— |

ଅଳଙ୍କାର ଶାସ୍ତ୍ରଜ୍ଞ ପଣ୍ଡିତ ରାଜା ବାସୁଦେବ ପ୍ରଥମ ପରିଚ୍ଛେଦରେ କାବ୍ୟସ୍ୱରୂପ ନିରୂପଣ ପ୍ରସଙ୍ଗରେ ଶ୍ରୀ ଗଣେଶାୟ ନମଃ, ମଙ୍ଗଳାଚରଣ ପ୍ରକାଶ କଲେ । ପରେ ଏହାର ଉଦ୍ଦେଶ୍ୟ ବର୍ଣ୍ଣିତ ହୋଇ । ସତ୍କବି ପ୍ରଣୀତ ଗଦ୍ୟପଦ୍ୟମୟ କାବ୍ୟାଦିର (ରଘୁବଂଶ, କୁମାର ସମ୍ଭବମ୍ ପ୍ରଭୃତିର) ବାକ୍ୟାର୍ଥ ଏହି ଅଳଙ୍କାର ଗ୍ରନ୍ଥ ବ୍ୟତିରେକେ ହୋଇ ନ ପାରେ । ଅତଏବ ଏହାକୁ କାବ୍ୟାଦିର ଗୋଟିଏ ଅଙ୍ଗ ବୋଲିବାକୁ ହେବ । ହେଲେ କାବ୍ୟ ଫଳ ଦ୍ୱାରା ଏହାର ଫଳବତ୍ତା, ତେବେ ପ୍ରଥମତଃ କାବ୍ୟଫଳ ଜିଜ୍ଞାସ୍ୟ ।

ତାଙ୍କ ମତରେ କବି ବିରଚିତ ପ୍ରବନ୍ଧକୁ କାବ୍ୟ ବୋଲି ଯେପରି ଜଗନ୍ନାଥ ଦାସଙ୍କର ଉକ୍ତି 'ଭାଷା ପ୍ରବନ୍ଧେ ଭାଗବତ ।' ବିଦଗ୍ଧ ଚିନ୍ତାମଣିରେ କାବ୍ୟକୁ ପ୍ରବନ୍ଧ ଆଖ୍ୟା ପ୍ରଦାନ କରାଯାଇଛି, ତେଣୁ କାବ୍ୟଭେଦରେ ଏହା ଦୁଇପ୍ରକାର ଗଦ୍ୟ କାବ୍ୟ କବି ବାସୁଦେବଙ୍କ ଭାଷାରେ କାବ୍ୟାଦିଶାସ୍ତ୍ର ଅଧ୍ୟୟନ କଲେ, ଧର୍ମ, ଅର୍ଥ, କାମ, ମୋକ୍ଷ ଏପରି ଚତୁର୍ବର୍ଗ ପ୍ରାପ୍ତି ହୁଏ । × × × ଈଶ୍ୱରଙ୍କର ଗୁଣବର୍ଣ୍ଣନ ଅନୁବାଦ ଦ୍ୱାରା ଧର୍ମ ପ୍ରାପ୍ତି ହୁଏ । ଅର୍ଥପ୍ରାପ୍ତି (ଦ୍ରବ୍ୟପ୍ରାପ୍ତି) ପ୍ରତ୍ୟକ୍ଷସିଦ୍ଧ ।

ଅର୍ଥ ପ୍ରାପ୍ତି ହେଲେ ସୁତରାଂ କାମ ପ୍ରାପ୍ତି (ଇନ୍ଦ୍ରିୟ ପ୍ରୀତି) ହୁଏ । କାବ୍ୟରୁ ଧର୍ମଫଳର ଅନୁସନ୍ଧାନ ଦ୍ୱାରା ଓ ମୋକ୍ଷୋପଯୋଗୀ ବାକ୍ୟାର୍ଥକାଳ ଦ୍ୱାରା ମୋକ୍ଷପ୍ରାପ୍ତି ହୁଏ ।

କାବ୍ୟର ସ୍ୱରୂପ ନିରୂପଣ ବର୍ଣ୍ଣନା କରିବାକୁ ଯାଇ ପ୍ରକାଶ କଲେ— "ଦୋଷରହିତ ଓ ଗୁଣ ସହିତ ଏବଂ କୌଣସି ସ୍ଥଳରେ ବ୍ୟକ୍ତବ୍ୟକ୍ତାଳଙ୍କାର

ବଶିଷ୍ଟ ଶବ୍ଦାର୍ଥ ଦ୍ୱୟକୁ କାବ୍ୟ ବୋଲି । ଯେ କାବ୍ୟରେ ଅନତ୍ୟଦୋଷ ଦେଖାଯାଏ, ସେ ଯେବେ ଧ୍ୱନରେ ଭୂଷିତ ହୋଇଥିବ, ତେବେ ତାକୁ ଉତ୍ତମ କାବ୍ୟ ବୁଝାଯିବ ।

ଦ୍ୱିତୀୟ ପରିଚ୍ଛେଦରେ ବାକ୍ୟର ସଂଜ୍ଞା, ଆଲଙ୍କାରିକ ସ୍ୱଢରେ ଯୋଗ୍ୟତା ଆକାଙ୍‌କ୍ଷା, ଆପତ୍ତିଯୁକ୍ତ ପଦ ସମୂହକୁ ବାକ୍ୟ ବୋଲି । ପଦାର୍ଥମାନଙ୍କର ପରସ୍ପର ସମ୍ବନ୍ଧ ବିଷୟରେ ବାଧର ଅଭାବକୁ ଯୋଗ୍ୟତା ବୋଲି । × × । ଏକପଦ ବ୍ୟକ୍ତ କଲେ କ୍ରମାନ୍ୱୟ ଅନ୍ୟପଦମାନ ଜାଣିବାର ଇଚ୍ଛାକୁ ଆକାଙ୍‌କ୍ଷା ବୋଲି × × । ବାକ୍ୟ ମଧ୍ୟରେ ପଦର ବ୍ୟବଧାନ ନ ହୋଇ ବୁଦ୍ଧିର ଅବିଚ୍ଛେଦକୁ ଆପତ୍ତି ବୋଲି । × × । ଏପରି ଯୋଗ୍ୟତା, ଆକାଙ୍‌କ୍ଷା ଓ ଆପତ୍ତିଯୁକ୍ତ ବାକ୍ୟ ସମୂହକୁ ମହାବାକ୍ୟ ବୋଲଯାଏ । ଅତଏବ ବାକ୍ୟ ଦୁଇପ୍ରକାର-ବାକ୍ୟ ଓ ମହାବାକ୍ୟ । × × । ଅର୍ଥବୋଧକ ବର୍ଣ୍ଣକୁ ପଦବୋଲି ।"

ଅର୍ଥ ତିନିପ୍ରକାର—ଯଥା : ବାଚ୍ୟ, ଲକ୍ଷ୍ୟ ଓ ବ୍ୟଙ୍ଗ୍ୟ । ଅଭିଧାଶକ୍ତି ଦ୍ୱାରା ଯେଉଁ ଅର୍ଥ ଜଣାଯାଏ ତାକୁ ବାଚ୍ୟାର୍ଥ ବୋଲି, ଲକ୍ଷଣାଶକ୍ତି ଦ୍ୱାରା ଯେଉଁ ଅର୍ଥ ଜଣାଯାଏ ତାକୁ ଲକ୍ଷ୍ୟାର୍ଥ ବୋଲି, ବ୍ୟଞ୍ଜନା ବୃତ୍ତି ଦ୍ୱାରା ଯେଉଁ ଅର୍ଥ ଜଣାଯାଏ ତାକୁ ବ୍ୟଙ୍ଗାର୍ଥ ବୋଲି ।

"କୌଣସି ସ୍ଥଳରେ ପ୍ରସିଦ୍ଧ ପଦର ସମଭିବ୍ୟାହରରୁ ବାଚ୍ୟାର୍ଥ ବୋଧହୁଏ । × × । ମୁଖ୍ୟ ଅର୍ଥର ବାଧ ହୋଇ ମୁଖ୍ୟାର୍ଥ ସମ୍ବନ୍ଧ ଅନ୍ୟ ଅର୍ଥ ଯେଉଁ ଆରୋପିତ ଶକ୍ତି ଦ୍ୱାରା ରୂଢ଼ ପ୍ରୟୋଜନରୁ ଜଣାଯାଏ ତାକୁ ଲକ୍ଷଣା ବୁଝାଯାଏ । × × । ଏହି ଲକ୍ଷଣା ରୂଢ଼ରେ ଆଠ ପ୍ରକାର ଓ ପ୍ରୟୋଜନର ବତିଶ ପ୍ରକାର, ଏପରି ଚାଳିଶ ପ୍ରକାର । ଏ ପଦରେ ଚାଳିଶ ପ୍ରକାର ଓ ବାକ୍ୟରେ ଚାଳିଶ ପ୍ରକାର ଏପରି ସର୍ବସୁଦ୍ଧା ଅଶୀତି ପ୍ରକାର ହୁଏ । × × । ବାକ୍ୟାର୍ଥ ଲକ୍ଷ୍ୟାର୍ଥ ନିବୃତ୍ତ ହୋଇ ଯେଉଁ ବୃତ୍ତି ଦ୍ୱାରା ଅନ୍ୟ ଅର୍ଥ ଶବ୍ଦରେ ଓ ଅର୍ଥରେ ଜଣାଯାଏ ସେହି ବୃତ୍ତି ନାମ ବ୍ୟଞ୍ଜନା । ଏହି ବ୍ୟଞ୍ଜନା ଦ୍ୱାରା ଯେଉଁ ଯେଉଁ ଅର୍ଥ ଜଣାଯାଏ ତାକୁ ବ୍ୟଙ୍ଗାର୍ଥ ବୁଝାଯାଏ ।"

ବ୍ୟଞ୍ଜନା ଦୁଇପ୍ରକାର ଯଥା, ଶାବ୍ଦୀବ୍ୟଞ୍ଜନା ଓ ଆର୍ଥୀବ୍ୟଞ୍ଜନା । ଅର୍ଥାତ୍ ଶବ୍ଦାଶ୍ରୟ ଓ ଅର୍ଥାଶ୍ରୟ ହୋଇ ବ୍ୟଞ୍ଜନା ଦୁଇ ପ୍ରକାର ହୁଏ । ଏବଂ ଶବ୍ଦଜନ୍ୟ ଯେଉଁ ବ୍ୟଞ୍ଜନା ସେ ଦୁଇ ପ୍ରକାର ହୁଏ ଯଥା :—ଅଭିଧାମୂଳା ଶାବ୍ଦୀ ବ୍ୟଞ୍ଜନା ଓ ଲକ୍ଷଣାମୂଳା ଶାବ୍ଦୀ ବ୍ୟଞ୍ଜନା । ଅଭିଧାମୂଳା ଶାବ୍ଦୀ ବ୍ୟଞ୍ଜନା ଯଥା—

ସଂଯୋଗାଦି ଦ୍ୱାରା ଅନେକାର୍ଥ ଶବ୍ଦରେ ଯାହାଦ୍ୱାରା ଆପଣାର ଉଦ୍ଦେଶ୍ୟାର୍ଥ ଜଣାଯାଏ ତାକୁ ଅଭିଧାମୂଳାଶାବ୍ଦୀ ବ୍ୟଞ୍ଜନା ବୋଲଯାଏ । ଆଲଙ୍କାରିକ ରାଜା

ବାସୁଦେବ ସଙ୍ଗ ନିରୂପଣ ସଙ୍ଗେ କେଉଁ ସ୍ଥଳରେ ଏହା ସଙ୍ଗଠିତ ହୋଇଥାଏ ତାର ବିଭିନ୍ନ କାରଣ ପ୍ରକଟନ କରିଛନ୍ତି ।

ଅଭିଧାମୂଳାଶାବ୍ଦୀ ବ୍ୟଞ୍ଜନା ନିମ୍ନୋକ୍ତ କେତେକ କାରଣରେ ଯଥା :—(୧) ସଂଯୋଗ (୨) ବିଯୋଗ (୩) ସାହଚର୍ଯ୍ୟ (୪) ବିରୋଧ (୫) ଅର୍ଥ (୬) ପ୍ରକରଣ (୭) ଲିଙ୍ଗ (୮) ଅନ୍ୟ ଶବ୍ଦର ସାନ୍ନିଧ୍ୟ (୯) ସାନ୍ନିଧ୍ୟ (୧୦) ଔଚିତ୍ୟ (୧୧) ଦେଶ (୧୨) କାଳ (୧୩) ବ୍ୟକ୍ତି (୧୪) ସ୍ୱର ପ୍ରଦର୍ଶିତ ହୋଇଥାଏ ।

ଲକ୍ଷଣାମୂଳାଶାବ୍ଦୀ ବ୍ୟଞ୍ଜନା, ଲେଖକଙ୍କ ମତରେ, "ଯେଉଁ ପ୍ରୟୋଜନକୁ ଜାଣିବା ପାଇଁ ଲକ୍ଷଣାର ଆଦର ହୁଏ, ସେହି ପ୍ରୟୋଜନ ଯେଉଁ ବୃତ୍ତିଦ୍ୱାରା ଜଣାଯାଏ ତାକୁ ଲକ୍ଷଣାମୂଳାଶାବ୍ଦୀ ବ୍ୟଞ୍ଜନା ବୋଲିଯାଏ । × × ।" ଲକ୍ଷଣାମୂଳା ଆର୍ଥୀ ବ୍ୟଞ୍ଜନା ବକ୍ତା ବୋଧୋବ୍ୟ ଏବଂ ବାକ୍ୟ ଓ ଅନ୍ୟସନ୍ନିଧି ଓ ବାଚ୍ୟ ଓ ପସ୍ତାବ, ଦେଶ, କାଳ, କାକୁଚେଷ୍ଟାଦି ଏମାନଙ୍କ ସମ୍ବନ୍ଧରୁ ଯେଉଁ ଶକ୍ତି ଅନ୍ୟ ଅର୍ଥକୁ ବୋଧକରେ ତାକୁ ଆର୍ଥୀବ୍ୟଞ୍ଜନା ବୋଲିଯାଏ । ତୃତୀୟ ପରିଚ୍ଛେଦରେ ଲେଖକ ରାଜା ବାସୁଦେବ ରସ ନିର୍ଣ୍ଣୟ ପ୍ରସଙ୍ଗରେ ବର୍ଣ୍ଣନା କଲେ—

"ବିଭାବ, ଅନୁଭାବ, ବ୍ୟଭିଚାରୀ ଏମାନେ ପ୍ରଥମରେ ଏକ ଏକ ପ୍ରତୀତ ହୁଅନ୍ତି । ପରିଶେଷରେ ଏକତ୍ର ହୋଇ ଅଖଣ୍ଡତାକୁ ପ୍ରାପ୍ତ ହୁଅନ୍ତି । × × ।

ରତ୍ୟାଦିର ଉଦ୍‌ବୋଧ କାରଣ ନାୟିକାଦିମାନେ ଯେବେ କାବ୍ୟ ନାଟକରେ ବର୍ଣ୍ଣିତ ହୁଅନ୍ତି ତାକୁ ବିଭାବ କୁହାଯାଏ, ବିଭାବ ଦୁଇ ପ୍ରକାର, ଆଲମ୍ବନ ବିଭାବ ଓ ଉଦ୍ଦୀପନ ବିଭାବ । 'ନାୟକ'ର ସଙ୍ଗ ନିରୂପଣ କରିବାକୁ ଯାଇ ପ୍ରକାଶ କଲେ, ଦାତା, କୁଶଳ ସଦ୍‌ବଂଶଜ, ଧନଶାଳୀ, ରୂପଯୌବନଉତ୍ସାହୀ, ଶୀଘ୍ର କାର୍ଯ୍ୟକାରୀ, ଲୋକରଞ୍ଜକ, ତେଜସ୍ୱୀ ଓ ଚତୁର ଏବଂ ସୁଶୀଳ ଏହିପରି ଗୁଣବିଶିଷ୍ଟ ବ୍ୟକ୍ତିକୁ ନାୟକ ବୋଲିଯାଏ । ଏବଂ ଏହି ନାୟକ ବିଶେଷ ଗୁଣ ବିଶିଷ୍ଟ ହୋଇ ଚାରି ପ୍ରକାର ହୁଏ । ଯଥା:—(କ) ଧୀରୋଦାତ୍ତ (ଖ) ଧୀରୋଦ୍ଧତ (ଗ) ଧୀରଲଳିତ ଓ (ଘ) ଧୀରପ୍ରଶାନ୍ତ ।"

ପ୍ରତ୍ୟେକ ନାୟକର ଲକ୍ଷଣ ବର୍ଣ୍ଣନା ସମ୍ୟକ୍ ରୂପେ ପ୍ରଦାନ କରିଅଛନ୍ତି । ତାଙ୍କ ମତରେ—

ଆତ୍ମପ୍ରଶଂସାରହିତ, ସହିଷ୍ଣୁ, ଅତିଗମ୍ଭୀର, ହର୍ଷଶୋକାଦିରେ ଅନଭିଭୂତ ସ୍ୱଭାବ, ସ୍ଥିର ସ୍ୱଭାବ, ବିନୟଚ୍ଛନ୍ନ ଗର୍ବ ଅଙ୍ଗୀକୃତ ନିର୍ବାହକ ଏହିପରି ବ୍ୟକ୍ତିକୁ 'ଧୀରୋଦାତ୍ତ' କୁହାଯାଏ ଯଥା :- ରାମଚନ୍ଦ୍ର ଯୁଧିଷ୍ଠିରାଦି ।

ମାୟାବୀ, ଅତିତେଜସ୍ୱୀ, ଅତିଚଞ୍ଚଳ, ଅହଙ୍କାରୀ, ଆତ୍ମପ୍ରଶଂସାରତ ଏପରି ବ୍ୟକ୍ତିକୁ 'ଧୀରୋଦ୍ଧତ' କୁହାଯାଏ ଯଥା :- ଭୀମସେନ, ଦୁଃଶାସନ ।

ଚନ୍ତାରହିତ, ସର୍ବଦା କୋମଳ ବ୍ୟବହାର, ନୃତ୍ୟଗୀତାଦିରେ ଅନୁରକ୍ତ ଯେ, ତାକୁ 'ଧୀରଲଳିତ' କୁହାଯାଏ ଯଥା :-ରତ୍ନାବଳ୍ୟାଦି ନାଟକରେ ବତ୍ସରାଜ ।

ସାମାନ୍ୟ ଗୁଣ ବିଶିଷ୍ଟ ବ୍ରାହ୍ମଣଙ୍କୁ 'ଧୀରପ୍ରଶାନ୍ତ' କୁହାଯାଏ । ଯଥା :— ମାଳତୀ-ମାଧବ ନାଟକରେ ମାଧବାଦି । ଏମାନେ ଶୃଙ୍ଗାର ରସ ରୂପରୁ ଭେଦରେ ପ୍ରତ୍ୟେକରେ ଚାରି ପ୍ରକାର ହୋଇ ଷୋଡ଼ଶ ପ୍ରକାର ହୁଅନ୍ତି ଯଥା :—ଦକ୍ଷିଣ, ଧୃଷ୍ଟ, ଅନୁକୂଳ ଓ ଶଠ ରୂପରେ ଚାରି ପ୍ରକାର ।"

ଆପଣାର ନାୟିକାମାନଙ୍କଠାରେ ସମାନ ସ୍ନେହ ଥିବା ବ୍ୟକ୍ତିଙ୍କୁ 'ଦକ୍ଷିଣ ନାୟକ' ବୋଲଯାଏ ।

ନାୟିକାଠାରେ ନିର୍ଲଜ୍ଜ ବ୍ୟବହାରୀ ବ୍ୟକ୍ତିକୁ 'ଧୃଷ୍ଟ ନାୟକ' କୁହାଯାଏ । ଏକ ନାୟିକାଠାରେ ଆସକ୍ତ ନାୟକଙ୍କୁ 'ଅନୁକୂଳ ନାୟକ' ବୋଲଯାଏ । ଗୂଢ଼ାପକାରୀ ଧୂର୍ତ୍ତ ପୁରୁଷକୁ 'ଶଠ ନାୟକ' କୁହାଯାଏ ।

ଏହି ଷୋଡ଼ଶ ପ୍ରକାର ନାୟକମାନେ ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ଅଠଚାଳିଶ ପ୍ରକାର ହୁଅନ୍ତି ।

ନାୟକର ସାତ୍ତ୍ୱିକ ଗୁଣ ଆଠ ପ୍ରକାର—

ଯଥା :—ଶୋଭା, ବିଳାସ, ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ, ତେଜ, ଲଳିତ, ଔଦାର୍ଯ୍ୟ । ପ୍ରତ୍ୟେକର ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହେଲ,

ଶୋଭା—ଶୂରତା, ସମର୍ଥତା, ସତ୍ତ୍ୱ, ମହୋତ୍ସାହ, ଅନୁରାଗିତା, ନୀଚ ଲୋକରେ ଘୃଣା, ଉତ୍ତମ ଲୋକରେ ଶ୍ରଦ୍ଧା ଥିବା ନାମ ।

ବିଳାସ—ଧୀରଦୃଷ୍ଟି, ବିଚିତ୍ରଗତି, ମନ୍ଦହାସ, ହିତବଚନର ନାମ ।

ମାଧୁର୍ଯ୍ୟ—କ୍ଷୋଭ ବିଷୟରେ ଉଦ୍‌ବେଗ ନୋହିବାର ନାମ ।

ଗାମ୍ଭୀର୍ଯ୍ୟ—ଭୟ, କ୍ରୋଧ, ହର୍ଷାଦିରେ ନିର୍ବିକାରତାର ନାମ ।

ଧୈର୍ଯ୍ୟ—ମହାବିଘ୍ନ ହେଲେ ମଧ୍ୟ ବ୍ୟବସାୟରୁ ମନ ନ ଟଳାଇବାର ନାମ ।

ତେଜ—ତିରସ୍କାରକୁ ନ ସହିବାର ନାମ ।

ଲଳିତ—ମନୋହର ବଚନ ଓ ମନୋହର ବେଶ ଓ ରସାନୁଭବର ନାମ ।

ଔଦାର୍ଯ୍ୟ—ଦାନ ଦେବା ଓ ପ୍ରିୟ କହିବା ଓ ଶତ୍ରୁମିତ୍ରଠାରେ ସମଭାବ ରଖିବାର ନାମ ।

ଅଥ ନାୟିକା ତ୍ରିବିଧା—ଯଥା :—ସ୍ୱକୀୟା, ପରକୀୟା ଓ ସାଧାରଣୀ । ଏହି ନାୟିକା ଉପରୋକ୍ତ ନାୟକର ଦାତା ପ୍ରଭୃତି ସାମାନ୍ୟ ଗୁଣରେ ଯୁକ୍ତ ହୁଏ ।

ସ୍ୱକୀୟା—ବିନୟ ଓ ସରଳାଦରେ ଯୁକ୍ତା ଓ ଗୃହକାର୍ଯ୍ୟରେ ତତ୍ପର ଏବଂ ପତିବ୍ରତାର ନାମ ।

ଏହି ସ୍ୱକୀୟା, ମୁଗ୍ଧା, ମଧ୍ୟା ପ୍ରଗଲ୍ଭା ଭେଦରେ ତିନି ପ୍ରକାର । ମଧ୍ୟା ଓ ପ୍ରଗଲ୍ଭା ଏ ଦୁହେଁ ଧୀରା ଓ ଅଧୀରା ଏବଂ ଧୀରାଧୀରା ଏପରି ଭେଦରେ ଛଅ ପ୍ରକାର ହୁଅନ୍ତି । ଏମାନେ ନାୟକର ଅଳ୍ପ ଓ ବହୁ ପ୍ରଣୟ ଭେଦରେ ପ୍ରତ୍ୟେକରେ ଦୁଇ ପ୍ରକାର ହୋଇ ଦ୍ୱାଦଶ ପ୍ରକାର ହୁଅନ୍ତି ଏବଂ ସ୍ୱକୀୟା କେବଳ ମୁଗ୍ଧା ରୂପରେ ଏକ ପ୍ରକାର । × × ।”

ପରକୀୟା—ପରୋଢ଼ା ଓ କନ୍ୟକା ଭେଦରେ ଦୁଇ ପ୍ରକାର ।

ସାଧାରଣୀ—(ବେଶ୍ୟା) ଅନୁରକ୍ତା; ଅନୁରାଗବତୀ, ବିରକ୍ତା (ବିରାଗବତୀ) ଭେଦରେ ଦୁଇ ପ୍ରକାର ।

ପୂର୍ବୋକ୍ତ ନାୟିକାମାନେ ପ୍ରତ୍ୟେକରେ ନିମ୍ନଲିଖିତ ଅବସ୍ଥା ଭେଦରେ ଆଠ ପ୍ରକାର ହୁଅନ୍ତି, ଯଥା :—ସ୍ୱାଧୀନ ଭର୍ତ୍ତୃକା, ଖଣ୍ଡିତା, ଅଭିସାରିକା, କଳହାନ୍ତରିତା, ବିପ୍ରଲବ୍ଧା, ପ୍ରୋଷିତ ଭର୍ତ୍ତୃକା, ବାସକସଜ୍ଜା, ବିରହୋତ୍କଣ୍ଠିତା, ଏମାନେ ରକ୍ତା-ବିରକ୍ତା ଭେଦରେ ଷୋହଳ ପ୍ରକାର ହୁଅନ୍ତି ।

ଏହି ନାୟିକାମାନଙ୍କର ଯୌବନାବସ୍ଥାରେ ଅଠାଇଶ ପ୍ରକାର ଅଳଙ୍କାର-ମାନେ ହୁଅନ୍ତି ଯଥା :—

ଭାବ, ହାବ, ହେଳା, ଶୋଭା, କାନ୍ତି, ଦୀପ୍ତି, ମାଧୁର୍ଯ୍ୟ, ପ୍ରଗଲ୍ଭତା, ଔଦାର୍ଯ୍ୟ, ଧୈର୍ଯ୍ୟ, ଲୀଳା, ବିଳାସ, ବିଚ୍ଛିତ୍ତି, ବିବ୍ବୋକ, କିଳକିଞ୍ଚିତ୍, ମୋଟ୍ଟାୟିତ, କୁଟ୍ଟମିତ, ବିଭ୍ରମ, ଲଳିତ, ମଦ, ବିହୃତ, ତପନ, ମୋଗ୍ଧ୍ୟ, ବିକ୍ଷେପ, କୁତୂହଳ, ହସିତ, ଚକିତ, କେଳି, ଏଥିମଧ୍ୟରୁ ଭାବାଦିତ୍ରୟକୁ ଅଙ୍ଗଜ ବୋଲିଯାଏ । ଶୋଭାଦି ସପ୍ତକୁ ଅଯତ୍ନଜ ବୋଲିଯାଏ । ଧୀରୋଦ୍ଧତ ପାପକାରୀ, ବ୍ୟସନୀ ଯେ ତାହାକୁ ପ୍ରତିନାୟକ ବୋଲିଯାଏ ଯଥା—ରାମ ଚରିତେ ରାବଣ ।”

ଆଲଙ୍କାରିକ ପଣ୍ଡିତ ରାଜା ବାସୁଦେବ ସାହିତ୍ୟଦର୍ପଣ ଓ ଅନ୍ୟ ଅଳଙ୍କାର-ଶାସ୍ତ୍ରମାନ ଅଧ୍ୟୟନ କରି ତାର ଯଥାଯଥ ବିଶ୍ଳେଷଣ, ସଂଶ୍ଳେଷଣ ପୂର୍ବକ କେତେକ ଉପଲବ୍ଧ ତଥ୍ୟକୁ ଏଥିରେ ସନ୍ନିବେଶିତ କରିଅଛନ୍ତି । ତେଣୁ ରସ, ରସାଭାସ ବର୍ଣ୍ଣନା କ୍ଷେତ୍ରରେ ତାଙ୍କର ପାରଦର୍ଶିତା ପ୍ରକଟିତ ହୋଇଥାଏ ।

ତେଣୁ ଆଲମ୍ବନ ବିଭାବ, ଉଦ୍ଦୀପନ ବିଭାବ, ଅନୁଭାବ, ବ୍ୟଭିଚାରୀଭାବ ଓ ସ୍ଥାୟୀଭାବର ବିଶଦ୍ ବର୍ଣ୍ଣନା ନବଧାରସରେ ଯଥା : (୧) ଶୃଙ୍ଗାର (୨) ହାସ୍ୟ (୩) କରୁଣ (୪) ରୌଦ୍ର (୫) ବୀର (୬) ଭୟାନକ (୭) ବୀଭତ୍ସ (୮) ଅଦ୍ଭୁତ ଓ (୯) ଶାନ୍ତରସ ପ୍ରଦର୍ଶିତ ହୋଇଛି । ଅଲଙ୍କାରବୋଧୋଦୟର ମତାନୁସାରେ ଉଦ୍ଦୀପନ ବିଭାବ—ଚେଷ୍ଟା, ରୂପ, ଭୂଷଣ, ଦେଶ, କାଳ, ଚନ୍ଦ୍ର, ଚନ୍ଦନ, କୋକିଳାଳାପ, ଭ୍ରମର ଝଙ୍କାରାଦିମାନେ ନାୟକର ରସକୁ ଉଦ୍ଦୀପିତ କରନ୍ତି । ତେଣୁ ଏମାନଙ୍କୁ ଉଦ୍ଦୀପନ ବିଭାବ ବୋଲିଯାଏ ।"

ଅର୍ଥ ଅନୁଭାବ—କାବ୍ୟ ନାଟ୍ୟରେ ଆଲମ୍ବନୋଦ୍ଦୀପନ ଦ୍ୱାରା ପ୍ରକାଶିତ ରତ୍ୟାଦି ଭାବକୁ ବାହ୍ୟରେ ପ୍ରକାଶ କରି କାର୍ଯ୍ୟ ରୂପରେ ପରିଣତ ଯେ କଟାକ୍ଷାଦି ତାକୁ ଅନୁଭାବ ବୋଲି ।"

ସାତ୍ତ୍ୱିକଭାବ ଯଥା :—

"ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ ।

ବ୍ୟଭିଚାରଭାବ ସମ୍ପର୍କରେ ତାଙ୍କର ଧାରଣା, "ରସର ଉଦୟ କାଳରେ ଅଭିମୁଖରେ ସଞ୍ଚାର କରିବାରୁ ନିର୍ବେଦାଦିମାନେ ବ୍ୟଭିଚାରୀଭାବ କୁହାଯାନ୍ତି ।

ବ୍ୟଭିଚାରୀଭାବ ଲେଖକଙ୍କ ମତରେ ୩୩ ପ୍ରକାର ଯଥା :—ନିର୍ବେଦ, ଆବେଗ, ଦୈନ୍ୟ, ଶ୍ରମ, ଦମ, ଜଡ଼ତା, ଔଗ୍ର, ମୋହ, ବିବୋଧ, ସ୍ୱପ୍ନ, ଅପସ୍ମାର, ଗର୍ବ, ମରଣ, ଅଳସତା, ଅମର୍ଷ, ନିଦ୍ରା, ଅବହିତ୍ଥା, ଔତ୍ସୁକ୍ୟ, ଉନ୍ମାଦ, ଶଙ୍କା, ସ୍ମୃତି, ମତି, ବ୍ୟାଧି, ବ୍ରୀଡ଼ା, ସନ୍ତ୍ରାସ, ହର୍ଷ, ଅସୂୟା, ବିଷାଦ, ଧୃତି, ଚପଳତା, ଗ୍ଲାନି, ଚିନ୍ତା, ବିତର୍କ ।

ରାଜା ବାସୁଦେବଙ୍କ ମତାନୁସାରେ

ସ୍ଥାୟୀଭାବ :—

"ଅବିରୋଧୀଭାବ ଓ ବିରୋଧୀଭାବ ଯାହାକୁ ଆଚ୍ଛାଦିତ କରିବାକୁ ଅସମର୍ଥ ହୁଅନ୍ତି ସେହି ଆସ୍ୱାଦାଙ୍କୁରର ମୂଳଭୂତ ଯେ ରତ୍ୟାଦି ତାକୁ ସ୍ଥାୟୀଭାବ ବୋଲିଯାଏ ।

ଯଥା :—ଶୃଙ୍ଗାରରେ ରତି, ହାସ୍ୟରସରେ ହାସ, କରୁଣରେ ଶୋକ, ରୌଦ୍ରରେ କ୍ରୋଧ, ବୀରରେ ଉତ୍ସାହ, ଭୟାନକରେ ଭୟ, ବୀଭତ୍ସରେ ଜୁଗୁପ୍ସା, ଅଦ୍ଭୁତରେ ବିସ୍ମୟ, ଶାନ୍ତରସରେ ଶମ ।

ଅଲଙ୍କାରଶାସ୍ତ୍ରୀଙ୍କ ରାଜା ବାସୁଦେବ ସୁଢ଼ଳଦେବଙ୍କ ରସ ଓ ରସାଭାବ ବର୍ଣ୍ଣନାରୁ ନିମ୍ନୋକ୍ତ ଟିପ୍ପଣୀ ପ୍ରଣିଧାନଯୋଗ୍ୟ ।

| ରସର ନାମ | ସ୍ଥାୟୀଭାବ | ଆଲମ୍ବନ ବିଭାବ | ଉଦ୍ଦୀପନ ବିଭାବ | ଅନୁଭାବ | ବ୍ୟଭିଚାରୀଭାବ |
| --- | --- | --- | --- | --- | --- |
| ୧ | ୨ | ୩ | ୪ | ୫ | ୬ |
| ୧ । ଶୃଙ୍ଗାର ସମ୍ଭୋଗ, ବିପ୍ରଲମ୍ଭ | ରତି | ନାୟକ, ନାୟିକା | ଚନ୍ଦ୍ରଚନ୍ଦନ ରୋଲମ୍ବ , ରୁତାଦି | ଭ୍ରୂବିକ୍ଷେପ କଟାକ୍ଷାଦି | ଔଗ୍ର, ମରଣ, ଆଳସ୍ୟ |
| ୨ । ହାସ୍ୟ-୬ ପ୍ରକାର (ସ୍ମିତ, ହସିତ ବିହସିତ, ଅପହସିତ (ଅତିହସିତ, ଅବହସିତ) | ହାସ | ବିକୃତାକାର ବଚନ ଚେଷ୍ଟାବନ୍ତ ବ୍ୟକ୍ତି | ତଦୀୟ ବିକୃତାଦିର ଚେଷ୍ଟାଦି | ଅକ୍ଷି ସଙ୍କୋଚନ ବିକୃତହାସ୍ୟାଦି | ନିଦ୍ରା ଆଳସ୍ୟ ଅବହିତ୍ଥ |
| ୩ । କରୁଣ | ଶୋକ | ଶୋଚନୀୟ ବ୍ୟକ୍ତି | ଶୋଚନୀୟ ଶୋକ କରିବା ବ୍ୟକ୍ତିର ଚେଷ୍ଟା | ଦୈବନିନ୍ଦା,-ବୈବର୍ଣ୍ଣ୍ୟ ଭୂମିପତନ କ୍ରନ୍ଦନ | ଆକାର ସଙ୍ଗୋପନ, ମୂର୍ଚ୍ଛା, ଦୀର୍ଘଶ୍ୱାସ, ପ୍ରଳପନ, ଉନ୍ମାଦ, ଚିନ୍ତା, ଗ୍ଳାନି, ସ୍ମୃତି, ଶ୍ରମ ବିଷାଦ, ଜଡ଼ତା ସ୍ମୃତି |
| ୪ । ରୌଦ୍ର | କ୍ରୋଧ | ଶତ୍ରୁ | ଶସ୍ତ୍ର ଚେଷ୍ଟାଦି, ମୁଷ୍ଟି, ପ୍ରହାର, ପତନ, ମୁଖ ବିକୃତ, ଛେଦନ ବିଦାରଣ ସଂଗ୍ରାମ | ଭ୍ରୂବିକ୍ଷେପ, ତର୍ଜନ, ବାହୁ ସ୍ଫୋଟନ, ଆତ୍ମ-ଶ୍ଳାଘା କଥନ, ଓଷ୍ଠ ନିଦର୍ଶନ | ଉଗ୍ରତା, ରୋମାଞ୍ଚ, ଅବେ ଖେଦ, ବେପଥୁ, ଅମର୍ଷ ମଦ ମୋହ |

| ୧ | ୨ | ୩ | ୪ | ୫ | ୬ |
|---|---|---|---|---|---|
| ୫ । ବୀର-୪ ପ୍ରକାର (ଦାନ, ପରଶୁରାମ ଦୟା—ଜୀମୂତବାହନ ଧର୍ମ—ଯୁଧିଷ୍ଠିର ଯୁଦ୍ଧ—ରାମଚନ୍ଦ୍ର) | ଉତ୍ସାହ | ଜେତବ୍ୟ ବ୍ୟକ୍ତି | ଜେତବ୍ୟ ବ୍ୟକ୍ତିର ଚେଷ୍ଟାଦି | ସହାୟାନ୍ୱେଷଣ | ଧୃତି, ମତି, ଗର୍ବ ତର୍କ, ସ୍ମୃତି, ରୋମାଞ୍ଚ |
| ୬ । ଭୟାନକ | ଭୟ | ଯାହାଠାରୁ ଭୟ ଉତ୍ପନ୍ନ ହୁଏ | ସେହି ବ୍ୟକ୍ତିର ଚେଷ୍ଟା | ପ୍ରଳୟ, ସ୍ୱେଦ ରୋମାଞ୍ଚ, କମ୍ପ ଦିଗନ୍ତ ପ୍ରେକ୍ଷଣାଦି | ଜୁଗୁପ୍ସା, ଆବେଗ, ସମ୍ମୋହ, |
| ୭ । ବିଭତ୍ସ | ଜୁଗୁପ୍ସା | ଦୁର୍ଗନ୍ଧ, ମାଂସ, ରକ୍ତ ବସାଦି | ମାଂସପେଶୀରେ କୃମିପାତାଦି | ନିଷ୍ଠୀବନ ମୁଖଚଳନ ନେତ୍ର ସଂକୋଚନ | ସନ୍ତାସ, ଗ୍ଲାନି ଦୀନତା, ଶଙ୍କା, ଅପସ୍ମାର, ସ୍ମରଣ ସମ୍ଭ୍ରାନ୍ତ |
| ୮ । ଅଦ୍ଭୁତ | ବିସ୍ମୟ | ଲୋକାତୀତ ପଦାର୍ଥ | ଲୋକୋତ୍ତର ପଦାର୍ଥ ଚମତ୍କାରୀ ଗୁଣ | ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ ଗଦ୍‌ଗଦ ସ୍ୱର ସମ୍ଭ୍ରମ | ମୋହ, ଅପସ୍ମାର ଆବେଗ ବ୍ୟାଧି ମରଣାଦି-ବିତର୍କ ଆବେଗ ସମ୍ଭ୍ରାନ୍ତ ହର୍ଷ |
| ୯ । ଶାନ୍ତ | ଶମ | ପରମାତ୍ମାଙ୍କର ସ୍ୱରୂପ | ପୁଣ୍ୟାଶ୍ରମ, ହରିକ୍ଷେତ୍ର ତୀର୍ଥ, ରମ୍ୟବନ, ମହାପୁରୁଷ | ରୋମାଞ୍ଚ, ଧୃତି, ବିବୋଧ | ନିର୍ବେଦ, ହର୍ଷ, ସ୍ମରଣ ଭୂତଦୟା |
| ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ମତରେ | | | | | |
| ୧୦ । ଦଶମରସ ବାତ୍ସଲ୍ୟ | ସ୍ନେହ | ପୁତ୍ରାଦି | ପୁତ୍ରଚେଷ୍ଟା ବିଦ୍ୟା, ସୌନ୍ଦର୍ଯ୍ୟ | ଆଲିଙ୍ଗନ, ଅଙ୍ଗସ୍ପର୍ଶ ଇକ୍ଷଣ, ପୁଲକ | × × |

ରସର ବିରୋଧୀରସ ସମ୍ପର୍କରେ ପଣ୍ଡିତ ରାଜା ବାସୁଦେବଙ୍କର ମତରେ

| ରସ | ବିରୋଧୀରସ |
|---|---|
| ୧ । ଶୃଙ୍ଗାର— | କରୁଣ, ବୀଭତ୍ସ, ରୌଦ୍ର, ବୀର, ଭୟାନକ |
| ୨ । ହାସ୍ୟ— | ଭୟାନକ, କରୁଣ |
| ୩ । ରୌଦ୍ର— | ହାସ୍ୟ, ଶୃଙ୍ଗାର, ଭୟାନକ |
| ୪ । ବୀର— | ଭୟାନକ, ଶାନ୍ତ — |
| ୫ । ଭୟାନକ— | ଶୃଙ୍ଗାର, ବୀର, ରୌଦ୍ର, ଶାନ୍ତ, ହାସ୍ୟ |
| ୬ । ଶାନ୍ତ— | ବୀର, ଶୃଙ୍ଗାର, ରୌଦ୍ର, ହାସ୍ୟ, ଭୟାନକ |
| ୭ । ଅଦ୍‌ଭୁତ — | କେହି ନାହିଁ । |

ଚତୁର୍ଥ ପରିଚ୍ଛେଦରେ ପଣ୍ଡିତ ରାଜା ସାର୍‌ ବାସୁଦେବ କାବ୍ୟର ଦୋଷ ନିରୂପଣ କରିଅଛନ୍ତି ।

ଲେଖକଙ୍କ ମତରେ 'ରସର ଅପକର୍ଷିକାଗୁଡ଼ିକୁ ଦୋଷ ବୋଲି' × × × । ପ୍ରଥମତଃ ସାମାନ୍ୟରେ ନିମ୍ନଲିଖିତ ଦୋଷମାନେ ପଦରେ ଓ ବାକ୍ୟରେ ପ୍ରତୀତ ହେବେ । ଯଥା ୧୬ ପ୍ରକାର ପଦଦୋଷ ଓ ବାକ୍ୟଦୋଷ ଯଥା—(i) ଦୁଃଶ୍ରବଣ (ii) ବ୍ରୀଡ଼ା ଅଶ୍ଳୀଳତା (iii) ଯୁଗୁପ୍‌ସା (iv) ଅଶ୍ଳୀଳତା (v) ଅମଙ୍ଗଳ ଅଶ୍ଳୀଳତା (vi) ଅନୁଚିତାର୍ଥତା (vii) ଗ୍ରାମ୍ୟତ୍ୱ (viii) ଅପ୍ରତୀତତା (ix) ଦେୟାର୍ଥତା (x)) ନିହିତାର୍ଥତା (xi) କ୍ଳିଷ୍ଟତ୍ୱ (xii) ବିରୁଦ୍ଧମତିକାରିତା (xiii) ଅପ୍ରଯୁକ୍ତତା (xiv) ସନ୍ଦିଗ୍ଧତା (xiv) ଅବାଚକତା (xv) ଅବିମୃଷ୍ଟ ବିଧେୟାଂଶ ଭାବ । × × ।

ତାଙ୍କର ମତରେ ନିରର୍ଥକତା, ଅସମର୍ଥତା, ଚ୍ୟୁତସଂସ୍କାରତା । ଏହି ତିନିଗୋଟି ଦୋଷ କେବଳ ପଦରେ ହେବ ।

ମାତ୍ର ନିମ୍ନୋକ୍ତ ଦୋଷମାନେ କେବଳ ବାକ୍ୟରେ ପରିଲକ୍ଷିତ ହୁଅନ୍ତି । (୧) ପ୍ରତିକୂଳ ବର୍ଣ୍ଣନା (୨) ଅଧିକପଦତା (୩) ନ୍ୟୂନପଦତା (୪) କଥିତପଦତା (୫) ସମାପ୍ତ ପୁନରାତ୍ତତା (୬) ଅର୍ଦ୍ଧାନ୍ତ ରୈକପଦତା (୭) ସନ୍ଧିରେ କଷ୍ଟତା (୮) ଅକ୍ରମତା (୯) ଭଗ୍ନପ୍ରକ୍ରମତା, (୧୦) ବାଚ୍ୟାନଭିଧାନ (୧୧) ଅଭବନ୍ମତ ସମ୍ବନ୍ଧତା (୧୨) ଅମତପରାର୍ଥତା (୧୩) ପ୍ରସିଦ୍ଧି ତ୍ୟାଗ (୧୪) ଅସ୍ଥାନପଦତା (୧୫) ସଙ୍କୀର୍ଣ୍ଣତ୍ୱ (୧୬) ସନ୍ଧିରେ ଅଶ୍ଳୀଳତ୍ୱ (୧୭) ପତଦ୍‌ ପ୍ରକର୍ଷତା (୧୮) ସନ୍ଧି-ବିଶ୍ଳେଷଣତା (୧୯) ହତବୃତ୍ତତା (୨୦) ଆହତବିସର୍ଗତା (୨୧) ଲୁପ୍ତ ବିସର୍ଗତା (୨୨) ଗର୍ଭିତତା (୨୩) ଅସ୍ଥାନସମାସତା ।

ଅଳଙ୍କାରବୋଧୋଦୟକାର ରାଜା ବାସୁଦେବଙ୍କ ମତରେ ନିମ୍ନୋକ୍ତ ଦୋଷମାନେ ଅର୍ଥରେ ପରିଲକ୍ଷିତ ହୁଅନ୍ତି । ଯଥା—(i) ଅପୁଷ୍ଟତା (ii) ପୁନରୁକ୍ତତା (iii) ବିଦ୍ୟାବିରୁଦ୍ଧତା (iv) ଖ୍ୟାତ ବିରୁଦ୍ଧତା (v) ସାକାଙ୍‌କ୍ଷତା (vi) ସହଚରଭିନ୍ନତା (vii) ଦୁଷ୍କ୍ରମତା (viii) ଗ୍ରାମ୍ୟତା (ix) ବ୍ୟାହତତା (x) ଅବମୀକୃତତା (xi) ନିର୍ହେତୁତା (xii) ନିୟମେ ଅନିୟମ (xiii) ଅନିୟମେ ନିୟମ (xiii) ପ୍ରକାଶିତ ବିରୁଦ୍ଧତା (xiv) ସନ୍ଦିଗ୍‌ଧତା (xv) ଅବିଶେଷେ ବିଶେଷ (xvi) ବିଶେଷେ ଅବିଶେଷ (xvii) ବିଧ୍ୟୁକ୍ତତା (xviii) ଅନୁବାଦାଯୁକ୍ତତା (xix) ଅଶ୍ଳୀଳତା (xx) କଷ୍ଟତା (xxx) ଅସ୍ଥାନଯୁକ୍ତତା (xxii) ନିର୍ମୁକ୍ତପୁନରୁକ୍ତତା ।

ରସଦୋଷ ନିମ୍ନୋକ୍ତ ପ୍ରକାରେ ରସରେ ପରିଦୃଷ୍ଟ ହୋଇଥାଏ । (i) ରସର ସ୍ୱଶବ୍ଦରେ ଉକ୍ତି (ii) ସ୍ଥାୟୀଭାବର ସ୍ୱଶବ୍ଦ ବାଚ୍ୟତା (iii) ସଞ୍ଚାରୀର ସ୍ୱଶବ୍ଦବାଚ୍ୟତା (iv) ଅନୁଭାବର କଷ୍ଟରେ କଳ୍ପିତାକ୍ଷେପ (v) ବିଭାବର କଷ୍ଟରେ କଳ୍ପିତାକ୍ଷେପ (vi) ପରିପନ୍ଥୀ ରସର ଅଙ୍ଗ ଓ ବିଭବାଦର ପରିଗ୍ରହ (vii) ଅକାଣ୍ଡେ ପ୍ରଥନ (viii) ଅକାଣ୍ଡେଛେଦ (ix) ପୁନଃ ପୁନଃ ଦୀପ୍ତି (x) ଅଙ୍ଗୀର ଅନନୁସନ୍ଧାନ (xi) ଅନଙ୍ଗର କୀର୍ତ୍ତନ (xii) ଅଙ୍ଗର ଅତିବିସ୍ତାର (xiii) ପ୍ରକୃତି ବିପର୍ଯ୍ୟୟ (xiv) ଅର୍ଥର ଅନୌଚିତ୍ୟ ।

ଏତଦ୍‌ବ୍ୟତୀତ ଅଳଙ୍କାରଦୋଷ ମଧ୍ୟ ସ୍ଥଳ ବିଶେଷରେ ପରିଲକ୍ଷିତ ହୋଇଥାଏ—ଯଥା :

i) ଉପମାରେ ଅସାଦୃଶ୍ୟ, ii) ଉପମାରେ ଅସମ୍ଭବ ।
iii) ଜାତିନ୍ୟୂନତା iv) ପ୍ରମାଣଶୂନ୍ୟତା v) ଜାତପ୍ରମାଣନ୍ୟୂନତା
vi) ଶବ୍ଦର ଉତ୍‌ପ୍ରେକ୍ଷା ଦ୍ୟୋତକତ୍ୱ ବିଷୟରେ ଅବାଚକତ୍ୱ,
vii) ଅନୁପ୍ରାସରେ ବୃତ୍ତିବିରୁଦ୍ଧ ପ୍ରତିକୂଳବର୍ଣ୍ଣିତ୍ୱ,
viii) ଉପମା ଅଳଙ୍କାରରେ ଅଧିକତା ନ୍ୟୂନତାଦୋଷ ।

ix) ଉପମାନ, ଉପମେୟ ଦୁହିଁଙ୍କର ଲିଙ୍ଗ, ବଚନ, କାଳ, ପୁରୁଷ, ବିଧାଦି ଭେଦରେ ଭଗ୍ନପ୍ରକ୍ରମତା ଦୋଷ ପରିଦୃଷ୍ଟ ହୋଇଥାଏ । "ଉପରୋକ୍ତ ଦୋଷମାନେ ସ୍ଥଳବିଶେଷରେ ଅଦୋଷ ହେବେ ଓ କୌଣସିଠାରେ ଗୁଣ ମଧ୍ୟ ହେବେ ।"

i) ଶୃଙ୍ଗାର ରସରେ ବକ୍ତାକୁପିତ
ii) ବାଖାର୍ଥ ଉଦ୍ଧତ iii) ଦୁଃଶ୍ରବତ୍ୱଦୋଷ ରୌଦ୍ରବୀଭତ୍ସାଦି ରସରେ ଗୁଣ । iii) ଅଶ୍ଳୀଳତ୍ୱ ଗୁଣ iv) ଆପଣାଦ୍ୱାରା ପରାମର୍ଶରେ

ଅପ୍ରତୀତତ୍ୱଗୁଣ v) କଥିତପଦତା ଗୁଣ କ) ବିହିତାନୁବାଦ୍ୟତାରେ ଖ) ବିଷାଦରେ ଗ) ବିସ୍ମୟରେ ଘ) କ୍ରୋଧରେ ଙ) ଦୈନ୍ୟରେ ଚ) ଲାଟାନୁପ୍ରାସରେ ଛ) ଅନୁକମ୍ପାରେ ଜ) ପ୍ରସାଦନରେ ଝ) ଅର୍ଥାନ୍ତର ସଂକ୍ରମିତ ବାଚ୍ୟରେ x) ହର୍ଷରେ xi) ଅବଧାରଣରେ ।

ବକ୍ତା ଯେବେ ବୈୟାକରଣ ହୋଇଥିବ ଓ ବାକ୍ୟାର୍ଥ ଯେବେ ବ୍ୟାକରଣାର୍ଥ ପ୍ରତିପାଦ୍ୟ ହୋଇଥିବ ତେବେ କଷ୍ଟତ୍ୱ, ଦୁଃଶ୍ରବତ୍ୱ ଗୁଣ ହେବ ।

ଅଧମୋକ୍ତିମାନଙ୍କରେ ଗ୍ରାମତ୍ୱ ଦୋଷଗୁଣ ହୁଏ ।

ନିର୍ହେତୁତା ଦୋଷ ଖ୍ୟାତ ଅର୍ଥରେ ଗୁଣ ହୁଏ । କବିମାନଙ୍କର ବ୍ୟବହାରରେ ଖ୍ୟାତିବିରୁଦ୍ଧ ଦୋଷଗୁଣ ହୁଏ । ଆନନ୍ଦମଗ୍ନାଦି ଉକ୍ତିରେ ନ୍ୟୂନପଦତା ଗୁଣ ହୁଏ । ମାତ୍ର ଏହା କୌଣସିଠାରେ ଦୋଷ ବା ଗୁଣ ଉଭୟଥା ହୋଇ ନ ପାରେ । କୌଣସିଠାରେ ଅଧିକ ପଦତା ମଧ୍ୟ ଗୁଣ ହୁଏ । ସମାପ୍ତ ପୁନରାତ୍ତତାରେ କୌଣସିଠାରେ ଦୋଷ ବା ଗୁଣ ହୁଏ ନାହିଁ ।

ଯେଉଁଠାରେ କର୍ତ୍ତା ବା କର୍ମର ବିଶେଷଣ କିମ୍ବା ବିହିତ୍ଭୂତ ହୋଇ ପୁନର୍ବାର ଗୃହୀତ ହୁଏ ସେଠାରେ ସମାପ୍ତ ପୁନରାତ୍ତତା ଦୋଷ ହୁଏ । ବାକ୍ୟ ମଧ୍ୟରେ ବାକ୍ୟାନ୍ତର ପ୍ରବିଷ୍ଟ ହେଲେ ଯେ ଗର୍ଭିତତା ଦୋଷ ସେ ଯେବେ ବାକ୍ୟାର୍ଥକୁ ପୁଷ୍ଟ କରେ ତେବେ ସେଠାରେ ଗୁଣ ହୁଏ । ସ୍ଥଳବିଶେଷରେ ପତତ୍ ପ୍ରକର୍ଷତା ଦୋଷ ମଧ୍ୟ ଗୁଣ ହୁଏ । ସଞ୍ଚାରୀମାନେ ଯାହା ସହିତରେ ବିରୁଦ୍ଧ ହୋଇଥିବେ ତାକୁ ବାଧ କରି କହିଲେ ଗୁଣ ହେବ ।

ସମସ୍ତ ଦୁଃଶ୍ରବତ୍ୱାଦି ଦୋଷମାନଙ୍କର ଅନୁକରଣରେ ଗୁଣ ହୁଏ ନାହିଁ । ପଣ୍ଡିତ ରାଜା ବାସୁଦେବ ସୁଢ଼ଳଦେବ 'ଅଳଙ୍କାରବୋଧୋଦୟ'ର ପଞ୍ଚମ ପରିଚ୍ଛେଦରେ ଗୁଣ ବର୍ଣ୍ଣନା ଅତି ଚମତ୍କାର ଭାବେ ପ୍ରଦାନ କରିଛନ୍ତି । ଲେଖକଙ୍କ ମତରେ 'ରସର ମାଧୁର୍ଯ୍ୟାଦି ଗୁଣମାନେ ଆତ୍ମାର ଶୌର୍ଯ୍ୟାଦି ଗୁଣ ପରି କାବ୍ୟର ଶୋଭା ସମ୍ପାଦନ କରନ୍ତି ।' ଏହି ଗୁଣମାନେ ତିନି ପ୍ରକାର—ଯଥା : ମାଧୁର୍ଯ୍ୟ, ଓଜ ଓ ପ୍ରସାଦ ।

ମାଧୁର୍ଯ୍ୟ ସମ୍ପର୍କରେ ତାଙ୍କର ମତ—

'ଚିତ୍ତର ଦ୍ରବୀଭୂତକାରୀ ଆହ୍ଲାଦକୁ ମାଧୁର୍ଯ୍ୟ ବୋଲି ।'

ଏହି ମାଧୁର୍ଯ୍ୟ ସମ୍ଭୋଗ, କରୁଣ, ବିପ୍ରଲମ୍ଭ ଓ ଶାନ୍ତରେ କ୍ରମାନ୍ୱୟ ଅଧିକ ହୁଏ ।

'ସ୍ୱବର୍ଗୀୟ ଅନ୍ତ୍ୟବର୍ଣ୍ଣରେ ଯୁକ୍ତ ଅର୍ଥାତ୍ ଙ୍କ, ଞ୍ଚ, ନ୍ତ, ମ୍ପ ଇତ୍ୟାଦି ଏବଂ ଚ, ଟ, ଠ, ଡ, ଢ ଓ ଲଘୁ ର, ଣ, ଏତଦ୍ ବର୍ଜିତ ବର୍ଣ୍ଣମାନେ ଓ ଅସମାସ, ଅଳ୍ପସମାଜ ଓ ମଧୁର ରଚନା ଏମାନେ ମାଧୁର୍ଯ୍ୟ ରସର ବ୍ୟଞ୍ଜକ ।'

ପଣ୍ଡିତ ରାଜା ବାସୁଦେବ ଓଜର ସଂଜ୍ଞା ନିରୂପଣ କଲେ ।
'ଚିତ୍ତବିସ୍ତାର ରୂପ ଦୀପ୍ତତ୍ୱକୁ ଓଜ ବୋଲି ।
ବୀର, ବୀଭତ୍ସ, ରୌଦ୍ରମାନଙ୍କରେ ଏହାର କ୍ରମରେ ଆଧିକ୍ୟ ।'

'ବର୍ଗର ଆଦ୍ୟ, ତୃତୀୟ ଅକ୍ଷରମାନେ ଆପଣାର ଅନ୍ତ୍ୟବର୍ଣ୍ଣ ଅର୍ଥାତ୍ ଖ୍ର, ଘ ଇତ୍ୟାଦି ବର୍ଣ୍ଣରେ ଯୁକ୍ତ ହୋଇଥିବେ ଯଥା—କଗଖଟ, ବାଗ୍‌ଘର ଏବଂଚ ଅଧଉର୍ଦ୍ଧ୍ୱରେ ରେଫ୍‌ଯୁକ୍ତ ହୋଇଥିବ ଯଥା :—ଅର୍କ, ବକ୍ର, ଅର୍ଘ, ବ୍ୟାଘ୍ର ଏବଂ ଚଟଠଡଢ ଓ ଶ ଷ କ୍ଷ ସମାସ ବାହୁଲ୍ୟ ଓ ଉଦ୍ଧତ ଘଟନା ଏମାନେ ଓଜଗୁଣର ଦ୍ୟୋତକ ହୁଅନ୍ତି ।'

ପ୍ରସାଦ ଗୁଣର ଲକ୍ଷଣ ବର୍ଣ୍ଣନା କରିବାକୁ ଯାଇ ଲେଖକ ପ୍ରକାଶ କଲେ । 'ଅଗ୍ନି ଯେପରି ଶୁଷ୍କ କାଷ୍ଠରେ ବ୍ୟାପ୍ତ ହୁଏ ସେହିପରି ଯେଉଁ ଗୁଣ ଚିତ୍ତକୁ ଶୀଘ୍ର ପ୍ରବିଷ୍ଟ ହୁଏ ଏବଂ ସମସ୍ତ ରଚନାରେ ଓ ରସରେ ସାଧାରଣ ରୂପରେ ରହେ ତାକୁ ପ୍ରସାଦ ବୋଲି ଏବଂଚ ଶ୍ରବଣ ମାତ୍ରରେ ଅର୍ଥବୋଧକ ଶବ୍ଦମାନେ ପ୍ରସାଦ ଗୁଣର ବ୍ୟଞ୍ଜକ ।'

ଷଷ୍ଠ ପରିଚ୍ଛେଦରେ ଅଳଙ୍କାରଶାସ୍ତ୍ରବିଦ୍ ରାଜା ବାସୁଦେବ ଅଳଙ୍କାର ପ୍ରକରଣ (Rhetorics) ପ୍ରସଙ୍ଗରେ ପ୍ରକାଶ କଲେ,

"ଅଳଙ୍କାରମାନେ ଶବ୍ଦ ଅର୍ଥରେ ଅସ୍ଥିର ସ୍ୱରୂପେ ରହି, କନକ କୁଣ୍ଡଳାଦି ପରି ଶରୀର ଶୋଭାକୁ ଅତିଶୟିତ କରି ରସାଦିର ଉପକାର କରନ୍ତି । ଏହି ଅଳଙ୍କାର ଦୁଇ ପ୍ରକାର, ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ।"

ଶବ୍ଦାଳଙ୍କାର ପ୍ରସଙ୍ଗରେ—

ପୁନରୁକ୍ତବଦାଭାସ, ଅନୁପ୍ରାସ, ଯମକ, ଶ୍ଳେଷ, (୮ ପ୍ରକାର) (ବର୍ଣ୍ଣ, ପ୍ରତ୍ୟୟ, ଲିଙ୍ଗ, ପ୍ରକୃତି, ପଦ, ବିଭକ୍ତି, ବଚନ, ଭାଷା ଭେଦରେ ୮ ପ୍ରକାର ।) ୩ ପ୍ରକାର, ଅନୁପ୍ରାସ—ବୃତ୍ତ୍ୟନୁପ୍ରାସ, ଛେକାନୁପ୍ରାସ ଓ ଲାଟାନୁପ୍ରାସ—ବିଶେଷତଃ ୩ ପ୍ରକାର ସଭଙ୍ଗ, ଅଭଙ୍ଗ ଓ ଭଙ୍ଗାଭଙ୍ଗ । ନ୍ୟୂନାକ୍ଷର, ଦତ୍ତାକ୍ଷର ଓ

ଦଣ୍ଡୀଙ୍କ୍ୟାତାକ୍ଷର ପ୍ରଭୃତି ଶବ୍ଦାଳଙ୍କାରର ଉଦାହରଣ ବର୍ଣ୍ଣନାମାନ ପ୍ରଦାନ କରି ଗମ୍ଭୀର ଅଳଙ୍କାର ଜ୍ଞାନର ପରିଚୟ ପ୍ରଦାନ କରିଅଛନ୍ତି ।

ଅର୍ଥାଳଙ୍କାର ମାନଙ୍କର ଉଲ୍ଲେଖ ଅତ୍ୟନ୍ତ ସ୍ପଷ୍ଟ ।

୧ । ଉପମା-ଲୁପ୍ତୋପମା ୮ ପ୍ରକାର ।

(କ) ବାଚକ ଲୁପ୍ତୋପମା (ଖ) ଧର୍ମବାଚକଲୁପ୍ତୋପମା
(ଗ) ଧର୍ମ ଲୁପ୍ତୋପମା (ଘ) ବାଚକୋପମେୟଲୁପ୍ତୋପମା
(ଙ) ଉପମାନ ଲୁପ୍ତା (ଚ) ବାଚକୋମାନଲୁପ୍ତା
(ଛ) ଧର୍ମୋପମାନଲୁପ୍ତା (ଜ) ଧର୍ମୋପମାନବାଚକଲୁପ୍ତ ।

୨ । ଅନନ୍ୱୟ ଅଳଙ୍କାର ୩ । ଉପମେୟୋପମାଳ ଅଳଙ୍କାର ୪ । ପ୍ରତୀପ-ଅଳଙ୍କାର ୫ ପ୍ରକାର ।

(କ) ପ୍ରତୀପ, (ଖ) ଦ୍ୱିତୀୟ ପ୍ରତୀପ, (ଗ) ତୃତୀୟ ପ୍ରତୀପ, (ଘ) ଚତୁର୍ଥ ପ୍ରତୀପ, (ଙ) ପଞ୍ଚମ ପ୍ରତୀପ ।

୫ । ରୂପକ ୩ ପ୍ରକାର ।

(କ) ଅଭେଦରେ ଆଧିକ୍ୟ, (ଖ) ଅଭେଦରେ ନ୍ୟୂନତା (୩ ପ୍ରକାର), (ଗ) ଅଭେଦରେ ଅନୁଭୟୋକ୍ତି ।

୬ । ପରିଣାମାଳଙ୍କାର । ୭ । ଉଲ୍ଲେଖ ଅଳଙ୍କାର । ୮ । ସ୍ମରଣ ଅଳଙ୍କାର । ୯ । ଭ୍ରାନ୍ତି । ୧୦ । ସନ୍ଦେହ । ୧୧ । ଅପହ୍ନୁତି ।

(କ) ଶୁଦ୍ଧାପହ୍ନୁତି, (ଖ) ହେତୁ ଅପହ୍ନୁତି, (ଗ) ପର୍ଯ୍ୟାପ୍ତପହ୍ନୁତି, (ଘ) ଭ୍ରାନ୍ତ୍ୟାପହ୍ନୁତି, (ଙ) ଛେକାପହ୍ନୁତି, (ଚ) କୈତବାପହ୍ନୁତି ।

୨ । ଉତ୍ପ୍ରେକ୍ଷାଳଙ୍କାର ୩ ପ୍ରକାର—

(କ) ବସ୍ତୂତ୍ପ୍ରେକ୍ଷା, (ଖ) ହେତୂତ୍ପ୍ରେକ୍ଷା, (ଗ) ଫଳୋତ୍ପ୍ରେକ୍ଷା

ବସ୍ତୂତ୍ପ୍ରେକ୍ଷା ୨ ପ୍ରକାର : (i) ଉକ୍ତ ବିଷୟାବସ୍ତୂତ୍ପ୍ରେକ୍ଷା, (ii) ଅନୁକ୍ତ ବିଷୟାବସ୍ତୂତ୍ପ୍ରେକ୍ଷା । ହେତୂତ୍ପ୍ରେକ୍ଷା ୨ ପ୍ରକାର : (i) ସିଦ୍ଧବିଷୟା ହେତୂତ୍ପ୍ରେକ୍ଷା, (ii) ଅସିଦ୍ଧ ବିଷୟା ହେତୂତ୍ପ୍ରେକ୍ଷା । ଫଳୋତ୍ପ୍ରେକ୍ଷା ୨ ପ୍ରକାର : (i) ସିଦ୍ଧବିଷୟାହେତୂତ୍ପ୍ରେକ୍ଷା, (ii) ଅସିଦ୍ଧବିଷୟାହେତୂତ୍ପ୍ରେକ୍ଷା ।

୧୩ । ଅତିଶୟୋକ୍ତି ଅଳଙ୍କାର, ଏହା ମୁଖ୍ୟତଃ ୮ ପ୍ରକାର

(କ) ରୂପକାତିଶୟୋକ୍ତି (ଖ) ସାପହ୍ନବାତିଶୟୋକ୍ତି
(ଗ) ଭେଦକାତିଶୟୋକ୍ତି (ଘ) ସମ୍ବନ୍ଧାତିଶୟୋକ୍ତି

(ଙ) ଅସମ୍ଭାବିତଶସ୍ତୋକ୍ତି (ଚ) ଅତ୍ୟନ୍ତାବିଶସ୍ତୋକ୍ତି
(ଛ) ଅକ୍ରମାତିଶସ୍ତୋକ୍ତି (ଜ) ଚପଳାତିଶସ୍ତୋକ୍ତି

୧୪ । ତୁଲ୍ୟଯୋଗିତା ୨ ପ୍ରକାର ।

i ଅବର୍ଣ୍ଣ୍ୟତୁଲ୍ୟଯୋଗିତା ii ଅନ୍ୟତୁଲ୍ୟଯୋଗିତା

୧୫ । ଦୀପକ । ୧୬ । ପ୍ରତିବସ୍ତୂପମା ଅଳଙ୍କାର । ୧୭ । ଦୃଷ୍ଟାନ୍ତ । ୧୮ । ନିଦର୍ଶନା— ଅନ୍ୟ ପ୍ରକାର, ଅପସ୍ତ । ୧୯ । ବ୍ୟତିରେକ । ୨୦ । ସହୋକ୍ତି । ୨୧ । ବିନୋକ୍ତି । ୨୨ । ସମାସୋକ୍ତି । ୨୩ । ପରିକର । ୨୪ । ପରିକରାଙ୍କୁର । ୨୫ । ଅପ୍ରସ୍ତୁତ ପ୍ରଶଂସା । ୨୬ । ପ୍ରସ୍ତୁତାଙ୍କୁର । ୨୭ । ପର୍ଯ୍ୟାୟୋକ୍ତି । ୨୮ । ବ୍ୟାଜସ୍ତୁତି । ୨୯ । ନିନ୍ଦାସ୍ତୁତି । ୩୦ । ବ୍ୟାଜନିନ୍ଦା । ୩୧ । ଆକ୍ଷେପ । ୩୨ । ବିରୋଧାଭାସ । ୩୩ । ବିଭାବନା ୬ ପ୍ରକାର । ଯଥା '

କ) କାରଣବ୍ୟତିରେକେ କାର୍ଯ୍ୟୋତ୍ପତ୍ତି । ଖ) ଅସମ୍ପୂର୍ଣ୍ଣ ହେତୁ ଦ୍ୱାରା କାର୍ଯ୍ୟୋତ୍ପତ୍ତି । ଗ) ପ୍ରତିବନ୍ଧକଯୁକ୍ତ କାର୍ଯ୍ୟୋତ୍ପତ୍ତି । ଘ) ଅନ୍ୟ କାରଣରୁ କର୍ଯ୍ୟୋତ୍ପତ୍ତି । ଙ) ବିରୁଦ୍ଧ କାର୍ଯ୍ୟୋତ୍ପତ୍ତି । ଚ) କାର୍ଯ୍ୟରୁ ଯେବେ କାରଣ ଉତ୍ପନ୍ନ ହୁଏ ।

୩୪ । ବିଶେଷୋକ୍ତି ଅଳଙ୍କାର । ୩୫ । ଅସମ୍ଭବ ଅଳଙ୍କାର । ୩୬ । ଅସଙ୍ଗତି ଅଳଙ୍କାର । ୩୭ । ବିଷମ ଅଳଙ୍କାର—

(i) ଅନନୁରୂପ ପଦାର୍ଥ ଦ୍ୱୟର ବର୍ଣ୍ଣନା ହେଲେ । (ii) ଭିନ୍ନ ରୂପ କାର୍ଯ୍ୟୋତ୍ପତ୍ତି ହେଲେ । (iii) ଇଷ୍ଟାର୍ଥ ଉଦ୍ୟମରୁ ଅନଷ୍ଟାର୍ଥ ପ୍ରାପ୍ତି ହେଲେ ।

୩୮ । ସମ—

(i) ଦୁଇ ଅନୁରୂପ ପଦାର୍ଥର ବର୍ଣ୍ଣନା ହେଲେ ।
(ii) କାରଣ ସହିତରେ କାର୍ଯ୍ୟର ସମାନ ରୂପତା ହେଲେ ।
(iii) ଯେଉଁ ଅର୍ଥର ଉଦ୍ୟମ ହୋଇଥାଏ ଅନିଷ୍ଟ ବ୍ୟତିରେକେ ସିଦ୍ଧ ହୁଏ ।

୩୯ । ବିଚିତ୍ର ଅଳଙ୍କାର । ୪୦ । ଅଧିକ ଅଳଙ୍କାର । ୪୧ । ଅଳ୍ପ ଅଳଙ୍କାର । ୪୨ । ଅନ୍ୟୋନ୍ୟମାଳଙ୍କାର । ୪୩ । ବିଶେଷ ଅଳଙ୍କାର—

(i) ପ୍ରସିଦ୍ଧ ଆଧାର ବ୍ୟତିରେକେ ଆଧେୟର ବର୍ଣ୍ଣନା କଲେ ।
(ii) ଏକ ପଦାର୍ଥକୁ ଅନେକ ସ୍ଥାନରେ ବର୍ଣ୍ଣନା କଲେ ।
(iii) କିଞ୍ଚିତ ଆରମ୍ଭରୁ ଅଶକ୍ୟ ପଦାର୍ଥାନ୍ତର ଲାଭ ହେଲେ ।

୪୪ । ବ୍ୟାଘାତ ଅଳଙ୍କାର—

(i) ଯାହାଦ୍ୱାରା ଯେଉଁ କାର୍ଯ୍ୟ ନ ହୁଏ, ତାହାଦ୍ୱାରା ସେହି କାର୍ଯ୍ୟ କରଣ ହେଲେ । (ii) ସୁକରଣ ନିମିତ୍ତ କର୍ତ୍ତବ୍ୟ କିମ୍ବା ଯେବେ କାର୍ଯ୍ୟ ବିରୋଧୀ ହୁଏ ।

୪୫ । କାରଣମାଳାଲଙ୍କାର—

(i) କାରଣମାନେ ଯଥାପୂର୍ବରେ ଥିଲେ । (ii) କାରଣମାନେ ଉତ୍ତରରେ ଥିଲେ ।

୪୬ । ଏକାବଳୀ ଅଳଙ୍କାର । ୪୭ । ସାର ଅଳଙ୍କାର । ୪୮ । ଯଥାସଂଖ୍ୟା ଅଳଙ୍କାର । ୪୯ । ପର୍ଯ୍ୟାୟ ଅଳଙ୍କାର ।

୫୦ । ପରିବୃତ୍ତି ଅଳଙ୍କାର । ୫୧ । ପରିସଂଖ୍ୟା ଅଳଙ୍କାର । ୫୨ । ବିକଳ୍ପ ଅଳଙ୍କାର । ୫୩ । ସମୁଚ୍ଚୟ ଅଳଙ୍କାର । ୫୪ । ସମାଧି ଅଳଙ୍କାର । ୫୫ । ପ୍ରତ୍ୟନୀକ ଅଳଙ୍କାର । ୫୬ । କାବ୍ୟାର୍ଥାପତ୍ତି ଅଳଙ୍କାର । ୫୭ । କାବ୍ୟଲିଙ୍ଗ ଅଳଙ୍କାର ।

୫୮ । ଅର୍ଥାନ୍ତରନ୍ୟାସ—(i) ସାମାନ୍ୟ ବିଶେଷ ଦୁହିଙ୍କର ଉକ୍ତିକୁ । (ii) ଗୁଣବନ୍ତ ସଂସର୍ଗରୁ ଅଳ୍ପ ବ୍ୟକ୍ତିର ଗୌରବ ପ୍ରାପ୍ତିକୁ ।

୬୦ । ପ୍ରୌଢ଼ୋକ୍ତି ଅଳଙ୍କାର । ୬୧ । ସମ୍ଭାବନା । ୬୨ । ମିଥ୍ୟାଧ୍ୟବସିତାଲଙ୍କାର । ୬୩ । ଲଳିତ ଅଳଙ୍କାର । ୬୪ । ପ୍ରହର୍ଷଣ ଅଳଙ୍କାର । ୬୫ । ବିଷାଦ ଅଳଙ୍କାର । ୬୬ । ଉଲ୍ଲାସ ଅଳଙ୍କାର । ୬୭ । ଅବଜ୍ଞା ଅଳଙ୍କାର—ଗୁଣରେ ଗୁଣାଭାବ, ଦୋଷରେ ଦୋଷାଭାବ । ୬୮ । ଅନୁଜ୍ଞା ଅଳଙ୍କାର । ୬୯ । ଲେଶ ଅଳଙ୍କାର—ଦୋଷରେ ଗୁଣ, ଗୁଣରେ ଦୋଷ । ୭୦ । ଗୁଣ ଅଳଙ୍କାର ।

୭୧ । ପୂର୍ବରୂପ ଅଳଙ୍କାର—

(i) ସ୍ୱଗୁଣ ତ୍ୟାଗାନନ୍ତର ପୁନଃ ସ୍ୱଗୁଣ ପ୍ରାପ୍ତି । (ii) ବିକୃତ ଦ୍ରବ୍ୟର ପୂର୍ବାବସ୍ଥା ଲାଭ ।

୭୨ । ଅତଦ୍‌ଗୁଣ ଅଳଙ୍କାର । ୭୩ । ଅନୁଗୁଣ ଅଳଙ୍କାର । ୭୪ । ମିଳିତ ଅଳଙ୍କାର । ୭୫ । ଉନ୍ମୀଳିତ ଅଳଙ୍କାର । ୭୬ । ବିଶେଷକ ଅଳଙ୍କାର । ୭୭ । ଗଢୋତ୍ତର ଅଳଙ୍କାର ।

୭୮ । ସ୍ୱଭାବୋକ୍ତି ଅଳଙ୍କାର । ୭୯ । ଅତ୍ୟୁକ୍ତି ଅଳଙ୍କାର । ୮୦ । ନିରୁକ୍ତି ଅଳଙ୍କାର । ୮୧ । ହେତୁ ଅଳଙ୍କାର ।

ଉପରୋକ୍ତ ଅଳଙ୍କାରମାନଙ୍କ ସବୁସ୍ଥାନ୍ତ ବର୍ଣ୍ଣନା ଲକ୍ଷଣାଦ ସହତ ପ୍ରଦାନ କର ସଂସ୍କୃତ ଅଳଙ୍କାରଶାସ୍ତ୍ରଜ୍ଞ ପଣ୍ଡିତ ରାଜା ବାସୁଦେବ ସ୍ୱୀୟ ଅନନ୍ୟସାଧାରଣ ପ୍ରତଭାର ପ୍ରଦାନ କରଅଛନ୍ତ ।

ସପ୍ତମ ପରଚ୍ଛେଦରେ 'ଧ୍ୱନ' ପ୍ରକରଣ ସ୍ଥାନ ଲଭ କରଛ । 'ଧ୍ୱନ' ସମ୍ବନ୍ଧରେ ଆଲଙ୍କାରକ ରାଜା ବାସୁଦେବ ଉଲ୍ଲେଖ କଲେ "କାବ୍ୟ ଦୁଇ ପ୍ରକାର— ଧ୍ୱନ ଓ ଗୁଣୀଭୂତ ବ୍ୟଙ୍ଗ୍ୟ।ବ୍ୟଙ୍ଗ୍ୟ ଅଧିକ ଚମତ୍କାରୀ ହେଲେ 'ଧ୍ୱନ' ନାମକ ଉତ୍ତମ କାବ୍ୟ ହୁଏ । ଏହ ଧ୍ୱନ ଦୁଇ ପ୍ରକାର; ଲକ୍ଷଣାମୂଳ ଓ ଅଭିଧାମୂଳ । ଅବିବକ୍ଷିତ ବାଚ୍ୟକୁ ଲକ୍ଷଣାମୂଳ ବୋଲଯାଏ । ଧ୍ୱନ ଲକ୍ଷଣାମୂଳ ହେବାରୁ ବାଚ୍ୟାର୍ଥ ଅବିବକ୍ଷିତ/ଅନାଦୃତ ହୁଏ ।

"ବିବକ୍ଷିତ ନ୍ୟପର ବାଚ୍ୟକୁ ଅଭିଧାମୂଳ ବୋଲଯାଏ ।"

× × ×

ଅବିବକ୍ଷିତ ବାଚ୍ୟ ଲକ୍ଷଣାମୂଳ ଧ୍ୱନ ଦୁଇ ପ୍ରକାର :—ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ଓ ଅତ୍ୟନ୍ତ ତରସ୍କୃତ ବାଚ୍ୟ ।

× × ×

ବିବକ୍ଷିତାନ୍ୟପର ବାଚ୍ୟ ଦୁଇ ପ୍ରକାର ।

i ଅସଂଲକ୍ଷ କ୍ରମ ବ୍ୟଙ୍ଗ୍ୟ ii ସଂଲକ୍ଷକ୍ରମ ବ୍ୟଙ୍ଗ୍ୟ । × ×

ସଂଲକ୍ଷକ୍ରମ ବ୍ୟଙ୍ଗ୍ୟ ୩ ପ୍ରକାର ଯଥା—ଶବ୍ଦଶକ୍ତ୍ୟୁଦ୍‌ଭବ,
ଅର୍ଥଶକ୍ତ ଉଦ୍‌ଭବ ଓ ଉଭୟ ଶକ୍ତ ଉଦ୍‌ଭବ ।

ଶବ୍ଦଶକ୍ତ୍ୟୁଦ୍‌ଭବ ଧ୍ୱନ ବସ୍ତୁ ଅଳଙ୍କାର ଭେଦରେ ଦୁଇ ପ୍ରକାର ଯଥା—

i ବସ୍ତୁରୂପଶବ୍ଦଶକ୍ତ୍ୟୁଦ୍‌ଭବ ଧ୍ୱନ

ii ଅଳଙ୍କାର ରୂପ ଶବ୍ଦଶକ୍ତ୍ୟୁଦ୍‌ଭବ ଧ୍ୱନ ।

ବସ୍ତୁ ଅଳଙ୍କାର ଭେଦରେ ଅର୍ଥଶକ୍ତ୍ୟୁଦ୍‌ଭବ ଧ୍ୱନ ଦୁଇ ପ୍ରକାର—

i ବସ୍ତୁରୂପ ଅର୍ଥଶକ୍ତ୍ୟୁଦ୍‌ଭବ ।

ii ଅଳଙ୍କାର ରୂପ ଅର୍ଥଶକ୍ତ୍ୟୁଦ୍‌ଭବ ।

ଏ ଦୁହେଁ ସ୍ୱତଃ ସମ୍ଭବତ କବ ପ୍ରୌଢ଼ୋକ୍ତ ଓ କବ ନବଦ୍ଧ ଭେଦରେ ଛଅ ପ୍ରକାର—

କ ସ୍ୱତଃ ସମ୍ଭବା— i ବସ୍ତୁ ଧ୍ୱନ ii ଅଳଙ୍କାର ଧ୍ୱନ
ଖ କବ ପ୍ରୌଢ଼ୋକ୍ତ— i ବସ୍ତୁ ଧ୍ୱନ ii ଅଳଙ୍କାର ଧ୍ୱନ
ଗ କବ ନବଦ୍ଧ—i ବସ୍ତୁ ଧ୍ୱନ ii ଅଳଙ୍କାର ଧ୍ୱନ

ବସ୍ତୁ ଓ ଅଳଙ୍କାର ବ୍ୟଞ୍ଜନା ଦ୍ୱାରା ପ୍ରକାଶିତ କରାଯାଇ ଥିବାରୁ ଏହା ବାର ପ୍ରକାର ।

ଅର୍ଥାତ୍ ଏହାକୁ ନିମ୍ନରେ ପ୍ରକାଶ କଲେ ପ୍ରଶସ୍ତମାନ ହୁଏ ।

କ ଏହାର ସ୍ପଷ୍ଟ ରୂପ ।

| | ୧ | ୨ | ୩ | ୪ |
|---|---|---|---|---|
| i ସ୍ୱତଃ ସମ୍ଭବୀ— | ବସ୍ତୁ ଦ୍ୱାରା ବସ୍ତୁ ଧ୍ୱନି | ବସ୍ତୁ ଦ୍ୱାରା ଅଳଙ୍କାର ଧ୍ୱନି | ଅଳଙ୍କାର ଦ୍ୱାରା ବସ୍ତୁ ଧ୍ୱନି | ଅଳଙ୍କାର ଦ୍ୱାରା ଅଳଙ୍କାର ଧ୍ୱନି |
| ii କବି ପ୍ରୌଢ଼ୋକ୍ତି ସିଦ୍ଧ— | ,, | ,, | ,, | ,, |
| iii କବି ନିବଦ୍ଧ— | ,, | ,, | ,, | ,, |

ଆଲଙ୍କାରିକଙ୍କ ମତରେ ଏପର୍ଯ୍ୟନ୍ତ ଧ୍ୱନି ଅଠର ପ୍ରକାର । ଅର୍ଥାତ୍ ବିବକ୍ଷିତ ବାଚ୍ୟ, ଅର୍ଥାନ୍ତର ସଂକ୍ରମିତ ବାଚ୍ୟ ଓ ଅତ୍ୟନ୍ତ ତିରସ୍କୃତ ବାଚ୍ୟ ଭେଦରେ ଦୁଇ ପ୍ରକାର । ବିବକ୍ଷିତ ବାଚ୍ୟତାର ଏକ ଏପରି ତିନି ପ୍ରକାର ।

ସଂଲକ୍ଷକ୍ରମବ୍ୟଙ୍ଗ—ଶବ୍ଦ, ଅର୍ଥ ଉଭୟ ଶକ୍ତି ଭେଦରେ ତିନି ପ୍ରକାର । ଏ ମଧ୍ୟରୁ ଅର୍ଥଶକ୍ତ୍ୟୁଦ୍‌ଭବ ବାର ପ୍ରକାର, ଏପରି ଅଠର ପ୍ରକାର । ଶବ୍ଦାର୍ଥଶକ୍ତ୍ୟୁଦ୍‌ଭବ ଧ୍ୱନି ଭେଦରେ ସପ୍ତଦଶ ପରେ ୭୪ ପ୍ରକାର ପ୍ରବନ୍ଧରେ ଅର୍ଥଶକ୍ତ୍ୟୁଦ୍‌ଭବ ଧ୍ୱନି ଏକ ହୁଏ ।

"ସଂଲକ୍ଷକ୍ରମଧ୍ୱନି—ପଦାଂଶ, ବର୍ଣ୍ଣ, ରଚନା, ପ୍ରବନ୍ଧ ଭେଦରେ ଚାରି ପ୍ରକାର । ପୁନଶ୍ଚ ଏହି ଚାରି ପ୍ରକାର ଅଭିଧାତ୍ମକା, ଲକ୍ଷଣାତ୍ମକା ଭେଦରେ ଆଠ ପ୍ରକାର । ଏମାନେ ବସ୍ତୁଧ୍ୱନି ଓ ଅଳଙ୍କାର ଧ୍ୱନି ଭେଦରେ ଷୋହଳ ପ୍ରକାର । ଏପରି ଏକ ପଞ୍ଚାଶଦ୍‌ଧ୍ୱନି ହେଲା । ଏହି ଧ୍ୱନିମାନେ ସଂକର ସଂସୃଷ୍ଟାଦି ଭେଦରେ ୫୩୫୫ ପ୍ରକାର ହୁଅନ୍ତି ।" ଏମାନେ ଅତି ସୂକ୍ଷ୍ମ ହେବାରୁ ଏହାର ସୂଚନା ଗ୍ରନ୍ଥ-ବାହୁଲ୍ୟ ଦୃଷ୍ଟିରୁ ପ୍ରଦତ୍ତ ହୋଇନାହିଁ ।

ଗୁଣୀଭୂତବ୍ୟଙ୍ଗ ସମ୍ପର୍କରେ ଆଲଙ୍କାରିକ ରାଜା ବାସୁଦେବଙ୍କ ଉକ୍ତି :

ବ୍ୟଙ୍ଗ, ବାଚ୍ୟାର୍ଥ ଅପେକ୍ଷା ଉତ୍କୃଷ୍ଟ ନ ହେଲେ ତାକୁ ଗୁଣୀଭୂତ ବ୍ୟଙ୍ଗ ବୋଲାଯାଏ । ଏହାର ଆଠ ପ୍ରକାର ଭେଦ ଦେଖାଯାଏ ଯଥା—

୧ । ଇତରାଙ୍ଗ — ଗୁଣୀଭୂତ ବ୍ୟଙ୍ଗ୍ୟ
୨ । କାକ୍ୱାକ୍ଷିପ୍ତ — ,,
୩ । ବାଚ୍ୟସିଦ୍ଧ୍ୟଙ୍ଗ — ,,
୪ । ସନ୍ଦିଗ୍ଧ ପ୍ରାଧାନ୍ୟ — ,,
୫ । ତୁଲ୍ୟ ପ୍ରାଧାନ୍ୟ — ,,
୬ । ଅସ୍ଫୁଟ — ,,
୭ । ଅଗୂଢ଼ — ,,
୮ । ଅସୁନ୍ଦର — ,,

ଅର୍ଥାତ୍ ସ୍ଥଳ ବିଶେଷରେ ଦୀପକ ଓ ତୁଲ୍ୟଯୋଗିତା ଅଳଙ୍କାରମାନଙ୍କରେ ଯାହା ଉପମାଳଙ୍କାର ବ୍ୟଙ୍ଗ୍ୟ ହୁଏ, ତାକୁ ମଧ୍ୟ ଗୁଣୀଭୂତ ବ୍ୟଙ୍ଗ ବୋଲାଯାଏ ।

ଅଳଙ୍କାର ବୋଧୋଦୟ, ଅଳଙ୍କାର ଗ୍ରନ୍ଥକୁ ରାଜା ବାସୁଦେବ ସାତଟି ପରିଚ୍ଛେଦରେ ବିଭକ୍ତ କରି ଅଳଙ୍କାର (Poetics) ପ୍ରତ୍ୟେକ ବିଷୟକୁ ପୁଙ୍ଖାନୁପୁଙ୍ଖ ରୂପେ ବିଶ୍ଳେଷଣ କରି ଗଭୀର ଅଳଙ୍କାରଶାସ୍ତ୍ରଜ୍ଞାନର ପରିଚୟ ପ୍ରଦାନରେ ସିଦ୍ଧହସ୍ତତା ପ୍ରଦର୍ଶନ କରିପାରିଛନ୍ତି । ତେଣୁ ଓଡ଼ିଆ ସାହିତ୍ୟ ଜଗତରେ ଏହା ଏକ ଅନବଦ୍ୟକୃତ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଅଳଙ୍କାରବୋଧୋଦୟରେ ବାସୁଦେବ-ମାନସ

ପୂର୍ବରେ ପଣ୍ଡିତ ରାଜା ବାସୁଦେବ ସୁଢ଼ଳ ଦେବଙ୍କ ଶ୍ରେଷ୍ଠକୃତ "ଅଳଙ୍କାର ବୋଧୋଦୟ" (୧୮୮୬) ସମ୍ପର୍କରେ ଏକ ସଂକ୍ଷିପ୍ତ ଆଭାସ ପ୍ରଦତ୍ତ ହେଲା । ଏଥିରେ ତାର ଏକ ସୂକ୍ଷ୍ମ ପର୍ଯ୍ୟାଲୋଚନା ଅତ୍ୟନ୍ତ ଆବଶ୍ୟକ ।

'ଅଳଙ୍କାର ବୋଧୋଦୟ' ଏକ ଶ୍ରେଷ୍ଠ ଆଳଙ୍କାରିକ ଗ୍ରନ୍ଥ Poetics । ଗ୍ରନ୍ଥଟିର ନାମକରଣ (ଅଳଙ୍କାରର ବୋଧ (ଜ୍ଞାନ) ଉଦୟରୁ ଏହାର ସାର୍ଥକତା ସମ୍ପାଦିତ ହୋଇଥାଏ । ଏଥିରେ ସନ୍ନିବେଶିତ ତଥ୍ୟମାନେ ବିଭିନ୍ନ ସଂସ୍କୃତ ଆଳଙ୍କାରିକ ଗ୍ରନ୍ଥର ଗ୍ରନ୍ଥାରେ ଆତ୍ମପ୍ରକାଶ କରିଛନ୍ତି ।

ସଂସ୍କୃତ ସାହିତ୍ୟର ଆଳଙ୍କାରିକ ପଣ୍ଡିତବର୍ଗ ଯଥା :—ଦଣ୍ଡି-କାବ୍ୟାଦର୍ଶ, ଭୋଜଦେବ-ସରସ୍ୱତୀ କଣ୍ଠାଭରଣ, ମମ୍ମଟାଚାର୍ଯ୍ୟ-କାବ୍ୟପ୍ରକାଶ, ମହିମଭଟ୍ଟ-ବ୍ୟକ୍ତି ବିବେକ, ଅପୟ୍ୟଦୀକ୍ଷିତ-ଚିତ୍ର ମୀମାଂସା, କୁବଳୟାନନ୍ଦମ୍, ଜୟଦେବ-ଚନ୍ଦ୍ରାଲୋକ

କେଶବ ମିଶ୍ର (ଅଳଙ୍କାର ଶେଖର) ବିଶ୍ୱନାଥ କବିରାଜ (ସାହିତ୍ୟଦର୍ପଣ) ପ୍ରଭୃତି ଆବିର୍ଭୂତ ହୋଇ ଅଳଙ୍କାର ଶାସ୍ତ୍ରର ପ୍ରଭୂତ ଉନ୍ନତି ସାଧନ କରିଯାଇଅଛନ୍ତି ବୋଲିବା ବାହୁଲ୍ୟ ମାତ୍ର ।

ରାଜା ବ୍ରଜସୁନ୍ଦରଙ୍କ ଆନ୍ତରିକ ପ୍ରଯତ୍ନରେ ପଣ୍ଡିତ ଆନନ୍ଦ ବ୍ରହ୍ମା, ପଣ୍ଡିତ ଭୁବନେଶ୍ୱର ବଡ଼ ପଣ୍ଡା ଓ ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର ପ୍ରଭୃତି ପଣ୍ଡିତଗଣ ରାଜା ବାସୁଦେବଙ୍କୁ ଶୈଶବାବସ୍ଥାରେ ବ୍ୟାକରଣ, ନ୍ୟାୟ, ତର୍କଶାସ୍ତ୍ର, ବେଦ, ବେଦାନ୍ତ, ନାଟକ, କାବ୍ୟ, ଭାଗବତ, ରାମାୟଣ, ମହାଭାରତ ଆଦି ଶିକ୍ଷା ଦାନ କଲେ । ତେଣୁ ତାଙ୍କର ପ୍ରାଚ୍ୟ ସାହିତ୍ୟରେ ଗଭୀର ବ୍ୟୁତ୍ପତ୍ତି ଲାଭ ହେଲା ।

ସେହି ସଂସ୍କୃତ ଅଳଙ୍କାର ଜ୍ଞାନର ନିଛକ ପରିପ୍ରକାଶ ତାଙ୍କର ୩୬ ବର୍ଷ ବୟସରେ ଏହି ପ୍ରସିଦ୍ଧ "ଅଳଙ୍କାରବୋଧୋଦୟ" ଗ୍ରନ୍ଥ । ମାତ୍ର ସେ ବିଦ୍ୟାଳୟ ଛାତ୍ରଛାତ୍ରୀଙ୍କ ଫଳ ଓ ଗ୍ରହଣ ଉପଯୋଗୀ ହେବାଭଳି ଅନ୍ୟକଠିନ ଶାସ୍ତ୍ରମାନଙ୍କର ତଥ୍ୟ ବ୍ୟତୀତ କେବଳ 'ସାହିତ୍ୟ-ଦର୍ପଣ' ଓ 'ଚନ୍ଦ୍ରାଲୋକ'ର ତଥ୍ୟମାନ ସନ୍ନିବେଶିତ କରିଅଛନ୍ତି । ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ଅଳଙ୍କାର ଜ୍ଞାନର ବିକାଶ ତଥା ନିର୍ଦ୍ଦୋଷ ବାକ୍ୟରଚନା-ଏହିପ୍ରକାର ଗ୍ରନ୍ଥପ୍ରଣୟନର ପ୍ରଧାନ ଆଭିମୁଖ୍ୟ ।

ସେହି ସମୟରେ ବିଶେଷ ସଂଖ୍ୟକ ପଣ୍ଡିତମାନଙ୍କର ଅଭାବ ଥିଲା । ଅଳଙ୍କାର ଶାସ୍ତ୍ର ପରିଚୟ ଜ୍ଞାନ ସମସ୍ତଙ୍କର ନ ଥିଲା । ତେଣୁ ପାଠକଙ୍କୁ ଦୃଷ୍ଟିରେ ରଖି ଗ୍ରନ୍ଥରଚନା ଅତ୍ୟନ୍ତ କଷ୍ଟକର ଥିଲା । କାରଣ ଅଳଙ୍କାର ଶାସ୍ତ୍ର ଏକ କଠିନ ଶାସ୍ତ୍ର । ଏହା ସମସ୍ତଙ୍କର ହୃଦୟଙ୍ଗମ ହେବା ସମ୍ଭବ ନୁହେଁ । ସେଥିପାଇଁ ଗ୍ରନ୍ଥକାର ରାଜା ବାସୁଦେବ ସାବଧାନତା ସହକାରେ ସୁବୋଧରୀତିରେ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ସାହାଯ୍ୟରେ ଗ୍ରନ୍ଥରଚନାରେ ପ୍ରବୃତ୍ତ ହୋଇଅଛନ୍ତି । ଗ୍ରନ୍ଥକାରଙ୍କ ମତରେ, "ଅଧ୍ୟୟନ ବିଧିରେ ପଦଜ୍ଞାନ ଓ ପଦାର୍ଥଜ୍ଞାନ ଓ ବାକ୍ୟାର୍ଥଜ୍ଞାନ ଏ ତିନିଟିୟ ପ୍ରଧାନ । ଏ ତନ୍ମଧ୍ୟରେ ପଦଜ୍ଞାନ ବ୍ୟାକରଣ ଶାସ୍ତ୍ରରେ, ପଦାର୍ଥଜ୍ଞାନ ତର୍କଶାସ୍ତ୍ରରେ, ପରପଦାର୍ଥୋ ଘଟିତ ବାକ୍ୟାର୍ଥଜ୍ଞାନ ଅଳଙ୍କାର ଶାସ୍ତ୍ରରେ ହୁଏ ବ୍ୟାକରଣର ପ୍ରଧାନ ସୂତ୍ରକାର ପାଣିନି, ତର୍କରେ ଗୌତମ ଓ ଅଳଙ୍କାରରେ ବାମନ । × × ×

ରସଗଙ୍ଗାଧର ପ୍ରଭୃତରେ ତର୍କ ଦ୍ୱାରା ଦୂଷଣ ଭୂଷଣାଦ ହେବାରୁ ସେ ମଧ୍ୟ ଅତଶସ୍ଥ କଠିନ ପ୍ରାପ୍ତ, କେବଳ ସାହତ୍ୟ ଦର୍ପଣ ସାର ରୂପରେ କଳତ ହୋଇଥିବାରୁ ତହିଁରେ ବୃଦ୍ଧିର ପ୍ରବେଶ ହୋଇପାରେ ।"

ସେ ଅଳଙ୍କାର ବୋଧୋଦସ୍ଥ ରଚନାର ଉଦ୍ଦେଶ୍ୟ ସଂପର୍କରେ ପ୍ରକାଶ କଲେ ।

ପରନ୍ତୁ ଅଳଙ୍କାର ଶାସ୍ତ୍ର ସମାଲୋଚନା କର ନ ଥିବା ବ୍ୟକ୍ତମାନଙ୍କର ଦୋଷ ଗୁଣାଳଙ୍କାର ନ ଥିବାରୁ ବାକ୍ୟରଚନା ପାଠକ କଦାପି ଜାତ ହୋଇ ନ ପାରେ । ଅତଏବ ବର୍ତ୍ତମାନ ଆମ୍ଭ ଉତ୍କଳଦେଶରେ ସଂସ୍କୃତଜ୍ଞ ବରଳ ଥିବାରୁ ପ୍ରାୟ ଭାଷାଜ୍ଞମାନଙ୍କର ରଚନାରେ ଅନେକ ଅସୁବଧା ଘଟେ । ସେ ହେତୁ ଏହ ସାହତ୍ୟ ଦର୍ପଣରୁ ଭାଷ୍ୟ କରବାରେ ପ୍ରବୃତ୍ତ ହେଲୁଁ ସେ ସ୍କୁଲସ୍ଥ ଛାତ୍ରମାନେ ଯେବେ ଏହାକୁ ଅଧ୍ୟୟନ କରନ୍ତ ତେବେ ଅନାୟାସରେ ନର୍ଦ୍ଦୋଷ ବାକ୍ୟ ରଚନାରେ ସମର୍ଥ ହେବେ ।

ଏହ ସାହତ୍ୟ ଦର୍ପଣ ଅତଶସ୍ଥ ସରସ ଓ ସ୍ଥାନେ ସ୍ଥାନେ ଯୁକ୍ତତର୍କ ଘଟିତ ହେବାରୁ, ତହିଁରୁ ଆମ୍ଭେ କଠିନାଂଶ ଓ ଦୃଷ୍ଟାନ୍ତମାନଙ୍କୁ ବ୍ୟକ୍ତ କର, କେବଳ ସୁବୋଧ ହେବା ନମନ୍ତେ ସାର ସାର ପଦାର୍ଥମାନଙ୍କୁ ଉଦ୍ଧୃତ କଲୁଁ ଏବଂ ଅଶ୍ଳୀଳ ପ୍ରକରଣରେ ଯାହା କଛ ଅଶ୍ଳୀଳ ଦେଇଅଛୁଁ ତାହା କେବଳ ବୋଧ ନମିତ୍ତ ଦେଇଅଛୁଁ । ଅଥଚ ଧ୍ୱନ ପ୍ରକରଣରେ ଯେ କ ସରସ ଦୃଷ୍ଟାନ୍ତ ଦଆହୋଇଅଛୁ ତାହା କେବଳ ରସ ଶାସ୍ତ୍ର ଧ୍ୱନ ପ୍ରଧାନ ଥିବା ପ୍ରଯୁକ୍ତ ସ୍ପଷ୍ଟବୋଧ ନମିତ୍ତ ଦଆ ହୋଇଛ ।

ପୁନଶ୍ଚ ନାଟକ, ବ୍ୟଞ୍ଜନା ଓ ରୀତ ଏତନ ପରଚ୍ଛେଦ ବଶେଷରେ ଭାଷାର ଅନୁପଯୋଗୀ ହେବାରୁ ତ୍ୟାଗ କଲୁଁ ଓ ଦର୍ପଣର ଅଳଙ୍କାର ପରଚ୍ଛେଦ ବସ୍ତୃତ ଥିବାରୁ ତଦୀୟ ଲକ୍ଷଣମାନଙ୍କର କଠିନତା ପ୍ରଯୁକ୍ତ ପ୍ରଥମ ପାଠଶିକ୍ଷ୍ୟମାନଙ୍କର ଦୋର୍ବୋଧତା ଶଙ୍କା କର କେବଳ ଜୟଦେବକୃତ 'ଚନ୍ଦ୍ରାଲୋକ'ରୁ ଉପମାଦ ଅଳଙ୍କାରମାନଙ୍କୁ ପ୍ରଦର୍ଶିତ କଲୁଁ ।"

# 'ଅଳଙ୍କାର ବୋଧୋଦୟ' ଗ୍ରନ୍ଥ ସଂପର୍କରେ

## ସାହିତ୍ୟିକଙ୍କ ମତ ତଥା ମନ୍ତବ୍ୟ

ରାଜା ବାସୁଦେବ ସୁଢ଼ଳଦେବଙ୍କ ଅତିପ୍ରିୟ କବିବର ରାଧାନାଥ ରାୟଙ୍କ ମନ୍ତବ୍ୟ :—

"ସାହିତ୍ୟଦର୍ପଣକୁ ଆଦର୍ଶ ରୂପେ ଅବଲମ୍ବନ କରି ଉକ୍ତ ଗ୍ରନ୍ଥ ରଚିତ ହୋଇଥିବାର ବୋଧ ହୁଅଇ । ଓଡ଼ିଆ ଭାଷାର କଥା ଦୂରେ ଥାଉ ମୁଁ ବଙ୍ଗଳାରେ ସୁଦ୍ଧା ଏପରି ଅଳଙ୍କାର ଗ୍ରନ୍ଥ ଅଦ୍ୟାବଧି ଦେଖି ନାହିଁ । ଏହାର ରଚୟିତା ଓଡ଼ିଆ ଓ ସଂସ୍କୃତ ଭାଷାରେ ବିଶେଷ ବ୍ୟୁତ୍ପନ୍ନ । ପରନ୍ତୁ ଏ ଗ୍ରନ୍ଥ ପ୍ରଣୟନରେ କେତେ ପ୍ରୟାସ ସ୍ୱୀକୃତ ଓ କେତେ ଗ୍ରନ୍ଥ ଆଲୋଚିତ ହୋଇଅଛି ତାହା ଅନୁଭବୀ ବ୍ୟତୀତ ଅନ୍ୟଲୋକେ ବୁଝିପାରିବେ ନାହିଁ । କି ପ୍ରାଚୀନ କି ନବ୍ୟ ଉଭୟ ସାହିତ୍ୟ ଗ୍ରନ୍ଥରୁ ଉପଯୁକ୍ତ ଉଦାହରଣମାନ ସଂକଳନ କରି ଗ୍ରନ୍ଥକାର ଗ୍ରନ୍ଥକୁ ଉପଯୋଗୀ କରିବା ବିଷୟରେ ଅଣୁମାତ୍ର ତ୍ରୁଟି କରି ନାହାନ୍ତି ।"

'ଅଳଙ୍କାର ବୋଧଦୟ'ରେ ପ୍ରକାଶିତ ତଥ୍ୟ ସମ୍ପର୍କରେ ବର୍ଣ୍ଣନା କଲେ । "ଅଧିକାଂଶ ଉଦାହରଣ ଉତ୍କଳ ଗ୍ରନ୍ଥରୁ ସଂକଳିତ ଏବଂ ତ ଲକ୍ଷଣମାନଙ୍କର ଭାଷା ଆହୁରି ସହଜ ହୋଇଥିଲେ ଗ୍ରନ୍ଥ ଅଧିକତର ଉପଯୋଗୀ ହୁଅନ୍ତା ସତ୍ୟ ମାତ୍ର ଭାଷ୍ୟ ଗ୍ରନ୍ଥରେ ସର୍ବପ୍ରକାର ଅଳଙ୍କାରର ଓ ବିଶେଷତଃ ଶବ୍ଦାଳଙ୍କାରର ଉଦାହରଣ ସୁଲଭ ନୁହେଁ; ତେଣୁ ଗ୍ରନ୍ଥକାର ଅଗତ୍ୟା ସଂସ୍କୃତ ଗ୍ରନ୍ଥର ଆଶ୍ରୟ ଗ୍ରହଣ କରିଅଛନ୍ତି, ପୁଣି ତଜ୍ଜନିତ ଅସୁବିଧା ନିରାକରଣାର୍ଥ ପ୍ରାୟ ପ୍ରତ୍ୟେକ ସ୍ଥଳରେ ଶ୍ଳୋକମାନଙ୍କର ଅର୍ଥ ବିଶଦ୍‌ରୂପେ ବ୍ୟକ୍ତ କରିଅଛନ୍ତି । ଏହି ଗ୍ରନ୍ଥ ସଂପୂର୍ଣ୍ଣ ହେଲେ ଉତ୍କଳଭାଷାର ଗୋଟିଏ ଅମୂଲ୍ୟ ଅମଙ୍ଗି ହେବ ଏହା ମୁଁ ମୁକ୍ତ କଣ୍ଠରେ କହିବାକୁ ପ୍ରସ୍ତୁତ ଅଛୁ ।" (ତା ୫ । ୨ । ୧୮୮୫) ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ମତରେ, "ଅଳଙ୍କାର ବୋଧୋଦୟ ରଚନାର ମୂଳ ଲକ୍ଷ୍ୟ ଆଧୁନିକ ଯୁଗରେ ବ୍ୟାକରଣ ସମର୍ଥିତ ଭାଷାର ବ୍ୟବହାର ଓ ଅଳଙ୍କାର ପ୍ରୟୋଗ ଲାଗି ଉତ୍ସାହ-ପ୍ରଦାନ ।" ଉକ୍ତିଟି ଯଥାର୍ଥ ବୋଲି ମନେହୁଏ ।

# 'ସାହିତ୍ୟ ଦର୍ପଣ' ଓ 'ଚନ୍ଦ୍ରାଲୋକ'ର ତୁଳନାତ୍ମକ ସୂଚନା

ସଂସ୍କୃତ ଅଳଙ୍କାର ଗ୍ରନ୍ଥ 'ସାହିତ୍ୟ ଦର୍ପଣ'ରେ ସନ୍ନିବିଷ୍ଟ ୧୦ଟି ପରିଚ୍ଛେଦ ଯଥା :—

୧ମ ପରିଚ୍ଛେଦ—କାବ୍ୟ ସ୍ୱରୂପ ନିରୂପଣଂ
୨ୟ ପରିଚ୍ଛେଦ—ବାକ୍ୟ ସ୍ୱରୂପ ନିରୂପଣଂ
୩ୟ ପରିଚ୍ଛେଦ—ରସଭାବାଦି ନିରୂପଣଂ
୪ର୍ଥ ପରିଚ୍ଛେଦ—ଧ୍ୱନିଗୁଣୀଭୂତ ବ୍ୟଙ୍ଗାଖ୍ୟ କାବ୍ୟ ଭେଦ ନିରୂପଣଂ
୫ମ ପରିଚ୍ଛେଦ—ବ୍ୟଞ୍ଜନା ବ୍ୟାପାର ଖ୍ୟାପନଂ
୬ଷ୍ଠ ପରିଚ୍ଛେଦ—ଦୃଶ୍ୟ କାବ୍ୟ ନିରୂପଣଂ
୭ମ ପରିଚ୍ଛେଦ—ଦୋଷ ନିରୂପଣଂ
୮ମ ପରିଚ୍ଛେଦ—ଗୁଣ ବିବେଚନଂ
୯ମ ପରିଚ୍ଛେଦ—ରୀତି ବିବେଚନଂ
୧୦ମ ପରିଚ୍ଛେଦ—ଅଳଙ୍କାର ନିରୂପଣଂ

ଏମାନଙ୍କ ମଧ୍ୟରୁ 'ଅଳଙ୍କାରବୋଧୋଦୟ'ରେ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ସପ୍ତମ ଓ ଦଶମ ପରିଚ୍ଛେଦର ଛାୟା ସନ୍ନିବିଷ୍ଟ ।

ସେହିପରି ଉକ୍ତ ଗ୍ରନ୍ଥରେ 'ଚନ୍ଦ୍ରାଲୋକ'ର ୧୦ଟି ବିଭାଗ (୧୦ ମୟୂଖ) ସ୍ପଷ୍ଟରୂପେ ପ୍ରତିବିମ୍ବିତ । ତାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଅନାବଶ୍ୟକ ଭାବି କେବଳ 'ଅଳଙ୍କାରବୋଧଦୟ'ର ବିଷୟ ବସ୍ତୁ ବିନ୍ୟାସ ସନ୍ନିବେଶିତ ହେଲା ।

'ଚନ୍ଦ୍ରାଲୋକ'ର ପ୍ରଥମ ମୟୂଖ— ବାଗ୍‌ବିଚାରଃ
ଦ୍ୱିତୀୟ ମୟୂଖ—ଦୋଷ ନିରୂପଣ
ତୃତୀୟ ମୟୂଖ—ଲକ୍ଷଣ
ଚତୁର୍ଥ ମୟୂଖ—ଗୁଣ
ପଞ୍ଚମ ମୟୂଖ—ଅଳଙ୍କାର ନିରୂପଣ
ଷଷ୍ଠ ମୟୂଖ—ରସାଦି ନିରୂପଣ
ସପ୍ତମ ମୟୂଖ—ଧ୍ୱନି ନିରୂପଣ
ଅଷ୍ଟମ ମୟୂଖ—ଗୁଣୀଭୂତ ବ୍ୟଙ୍ଗ୍ୟ
ନବମ ମୟୂଖ—ଲକ୍ଷଣା
ଦଶମ ମୟୂଖ—ଅଭିଧା

'ଅଲଙ୍କାରବୋଧୋଦୟ'ରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟର ଅପୂର୍ବ ସମାବେଶ ହେତୁ ପ୍ରାଚୀନତା ଓ ଆଧୁନିକତାର ସମନ୍ୱୟ ସମ୍ପାଦିତ ହୋଇଛି ।

ଶେଷରେ ଅଲଙ୍କାରଶାସ୍ତ୍ରଜ୍ଞ ରାଜା ବାସୁଦେବଙ୍କ ଶ୍ରେଷ୍ଠ କୃତି ତଥା "ଓଡ଼ିଆ ସାହିତ୍ୟର ଅନନ୍ୟ ସାଧାରଣ ଅନବଦ୍ୟ କାବ୍ୟଗ୍ରନ୍ଥ" 'ଅଲଙ୍କାର ବୋଧୋଦୟ' ପ୍ରସଙ୍ଗରେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

"ସାହିତ୍ୟୋଦର ଦର୍ପଣ ପ୍ରବଳ ସଦ୍‌ବାକ୍ୟାର୍ଥ ସ୍ପଷ୍ଟୀକୃତ
ପ୍ରତ୍ୟାସକ୍ତ୍ୟାଧିସ୍ଥା ବିବସ୍ତ୍ର ହୃଦୟାହ୍ଲାଦ ପ୍ରଦାନାର୍ଥିନା
ବାମଣ୍ଡା ବସୁଧାଧିପେନ କୃତିନା ଶ୍ରୀ ବାସୁଦେବେନଚ,
ପ୍ରାୟଃ ସାର ବିବୋଧନାୟ ବିଦଧେଽଲଙ୍କାର ବୋଧୋଦୟଃ ।"

ଉକ୍ତିଟି ଯଥାର୍ଥ ତଥା ବିଶେଷ ପ୍ରଣିଧାନଯୋଗ୍ୟ ।

## 'ଚନ୍ଦ୍ରୋପୂଳା' କାବ୍ୟରେ ବାସୁଦେବଙ୍କ କବି-ପ୍ରତିଭା

### (କ) ଚନ୍ଦ୍ରୋପୂଳା କାବ୍ୟର ଭିତ୍ତିଭୂମି

କବିରାଜା ବାସୁଦେବଙ୍କ ଚନ୍ଦ୍ରୋପୂଳା କାବ୍ୟ ଏକ ସଫଳ କୃତି । ପତ୍ନୀ ବିୟୋଗ ପରେ (୧୮୭୩) ରାଜା ବାସୁଦେବ ବୈରାଗ୍ୟ ଅବଲମ୍ବନପୂର୍ବକ ତୀର୍ଥାଟନ ଓ ଦେଶଭ୍ରମଣରେ ବହିର୍ଗତ ହେଲେ । ସେ ସମୟରେ ମଧ୍ୟପ୍ରଦେଶର ତଥା ଓଡ଼ିଶାର ଗଡ଼ଜାତଗୁଡ଼ିକ ଅରଣ୍ୟ ପରିବେଷ୍ଟିତ । ଗମନାଗମନର ସୁବିଧା ନଥିଲା । ତେଣୁ ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ହସ୍ତୀ ପୃଷ୍ଠରେ କିମ୍ବା ନଦୀ ପଥରେ ଯିବାକୁ ପଡ଼ୁଥିଲା ।

ରାଜା ବାସୁଦେବଙ୍କ ସଂସ୍କୃତ ସାହିତ୍ୟ ତଥା ଶାସ୍ତ୍ର ବିଷୟରେ ଅସାଧାରଣ ପାଣ୍ଡିତ୍ୟ ସଙ୍ଗେ ସଙ୍ଗେ ନୈସର୍ଗିକ କବି ପ୍ରତିଭା ଥିଲା । ତେଣୁ ସେ ପ୍ରାକୃତିକ ସୌନ୍ଦର୍ଯ୍ୟ ଅବଲୋକନରେ ଗଭୀର ଆନନ୍ଦ ଅନୁଭବ କରୁଥିଲେ । ଯେକୌଣସି ପ୍ରକାର ସାହିତ୍ୟ ଚର୍ଚ୍ଚାରେ ଆନନ୍ଦ ଉପଭୋଗ କରୁଥିଲେ । ତେଣୁ ସେ ମହାନଦୀ ପଥରେ ତୀର୍ଥାଟନ ତଥା ଦେଶଭ୍ରମଣ କରିବା ଅଭିପ୍ରାୟରେ ରାଜକର୍ମଚାରୀ, ପାଚକ ଓ

ଭୃତ୍ୟଗଣ ସଙ୍ଗେ ଯାତ୍ରାରମ୍ଭ କଲେ । ତାଙ୍କ ସଙ୍ଗେ ପଣ୍ଡିତ ବଳରାମ ବିଦ୍ୟାରତ୍ନ, ପୂର୍ଣ୍ଣାନନ୍ଦ ମହାନ୍ତ୍ର, ଚକ୍ରଧର ଦାଶ, ଶମ୍ଭୁପତି ପ୍ରଭୃତି ସହଯାତ୍ରୀ ଥିଲେ ।

ମହାନଦୀ ପଥରେ ସେ ସମ୍ବଲପୁରରୁ ଯାତ୍ରାରମ୍ଭ କରି ତଟପ୍ରଦେଶସ୍ଥ ରାଜ୍ୟ ସୋନପୁର, ବୌଦ, ଦଶପଲ୍ଲା, ପ୍ରଭୃତି ରାଜ୍ୟରେ ସ୍ୱଳ୍ପକାଳ ଅବସ୍ଥାନପୂର୍ବକ ଏକ ସଂକୀର୍ଣ୍ଣ ଗିରିପଥ ମଧ୍ୟରେ ଗତିକରି "ସାତକୋଶିଆ ଗଣ୍ଡ"ରେ ଉପସ୍ଥିତ ହେଲେ । ଉଭୟ ତୀରପ୍ରଦେଶସ୍ଥ ନିସର୍ଗ ପ୍ରାକୃତିକ ସୌନ୍ଦର୍ଯ୍ୟରେ ରାଜାଙ୍କ କବି ହୃଦୟସ୍ଥ ଆତ୍ମବିଭୋର ହୋଇଉଠିଲା । ତେଣୁ ଗନ୍ତବ୍ୟ ପଥରେ ଆଉ ଦୁଇ ଚନ୍ଦନ ଏ ପ୍ରକାର ଶାଶ୍ୱତ ସୌନ୍ଦର୍ଯ୍ୟ ଅବଲୋକନ କରି ମୁଗ୍ଧପ୍ରାଣ ରାଜା ବାସୁଦେବ କଟକରେ ଉପନୀତ ହେଲେ । ମହାନଦୀତୀରସ୍ଥ ବହୁ ଦେବମନ୍ଦିରର ଐଶ୍ୱର୍ଯ୍ୟ ବୈଭବ କବିଙ୍କ ଲେଖନୀରେ ରୂପ ଲାଭ କରିଛି ।

'ଚିତ୍ରୋତ୍ପଳା' ମହାନଦୀର ଅନ୍ୟ ନାମ । ପୁରାଣ ଶାସ୍ତ୍ରମାନଙ୍କରେ ଏହାର ଭୂରି ଭୂରି ପ୍ରମାଣ ମିଳେ । ଯଥା :—

ନୀଳାଦ୍ରି ମହୋଦୟରେ,

"ପଶ୍ଚିମସ୍ୟାଂ ଦିଶି ଶ୍ରେଷ୍ଠୋ ବିନ୍ଧ୍ୟୋନାମ ଗିରିନୃପଃ,
ବର୍ତ୍ତତେ ଯତ୍ର ବୈବ୍ରହ୍ମାବିଷ୍ଣୁ ମାଦହସ୍ତଂ ପୁରା
ସ୍ଥାପସ୍ୱିଦ୍ଧାର୍ଦ୍ଧସ୍ୱ ଉସ୍ମା ପର୍ବତା ନିର୍ଗତାଯ୍ୟସୌ
ମହାନଦୀତି ବିଖ୍ୟାତା ପୂର୍ବସାଗର ଗାମିନୀ ।"
ବର୍ତ୍ତତେ ପୃଥିବୀ ନାଥ ଗଙ୍ଗେବ ମୁକ୍ତିଦାୟିନୀ,
ଏତସ୍ୟା ତଟଭୂଦେଶେ ସ୍ଥଳହଧ୍ୟ ମନୁତ୍ତମମ୍ ।
ପୁଣ୍ୟଂ ସର୍ବୋତ୍ତମ ଧ୍ୟଂ ଶଃ ସ୍ପଷ୍ଟ ମସ୍ତି ମହୀତଳେ
ଏକାନ୍ତ ତୁ ସୁବର୍ଣ୍ଣାଖ୍ୟଃ ଶିବୋପ୍ୟସ୍ତି ଗିରୌ ମହାନ୍ ।
ତଥାସ୍ତେ ମାଧବଃ ଶ୍ରୀମାନ୍ ଭକ୍ତାନୁଗ୍ରହ କାରକଃ
ତସ୍ମାତ୍ ପୁଣ୍ୟତମା ଭୂପଃ ନଦୀ ଚିତ୍ରୋତ୍ପଳାଭିଧା ।
ସ୍ନାନଂ ଯେ କୁର୍ବତେ ମର୍ତ୍ତ୍ୟା ଭକ୍ତ୍ୟାସ୍ମିନ୍ନିର୍ମଳେ ଜଳେ ।
ସପ୍ତ ଜନ୍ମାର୍ଜିତଂ ପାପଂ ବିଶ୍ୟେତ୍ତେଷାଂ ନ ସଂଶୟଃ ।
ଗୋ ସହସ୍ର ପ୍ରଦାନେନ ତତ୍ ଫଳଂ ଜାୟତେ ନୃପ ।

× × × ×

ଏତଦ୍‌ବ୍ୟତୀତ ରଘୁନନ୍ଦନ ଭଟ୍ଟାଚାର୍ଯ୍ୟକୃତ "ଅଷ୍ଟାବିଂଶତି ତତ୍ତ୍ୱ" ନାମକ ଧର୍ମଶାସ୍ତ୍ରର ପୁରୁଷୋତ୍ତମ ତତ୍ତ୍ୱରେ (୭୬ ପୃଷ୍ଠା) ମହାନଦୀ 'ଚିତ୍ରୋତ୍ପଳା' ନାମରେ ପରିଚିତ ଥିବାର ପ୍ରମାଣ ମିଳେ ।

'ବ୍ରହ୍ମ ପୁରାଣ'ର 'ପୁରୁଷୋତ୍ତମ ମାହାତ୍ମ୍ୟ'ରେ

"ନଦୀ ତତ୍ର ମହାପୁଣ୍ୟା ବିନ୍ଧ୍ୟପାଦ ବିନିର୍ଗତା,
ଚିତ୍ରୋତ୍ପଳେତି ବିଖ୍ୟାତା ସର୍ବପାପହରଶୁଭା ।"

ମହାନଦୀରେ ସ୍ନାନକାଳୀନ ମନ୍ତ୍ରରେ

"ବିନ୍ଧ୍ୟପାଦ ସମୁଦ୍‌ଭୂତେ ପୂର୍ବ ସାଗରଗାମିନିଃ
ହର ଚିତ୍ରୋତ୍ପଳେ ପାପଂ ମଜ୍ଜସ୍ୱାମି ତବାମ୍ବୁଷି ।"

ବର୍ତ୍ତମାନ କଟକର ସାଲେପୁର ଗ୍ରାମ ଦେଇ ଯେଉଁ ନଦୀ ପ୍ରବାହିତ, ତାହା ଚିତ୍ରୋତ୍ପଳା ନାମରେ ପରିଚିତ । ତେଣୁ କବିଙ୍କ ଭାଷାରେ, "ଏ ସମ୍ବନ୍ଧେ କହିବାର ଏହି ଯେ ଚିତ୍ରୋତ୍ପଳା ନାମ ସେହି ଶାଖାରେ ଆଜ ପର୍ଯ୍ୟନ୍ତ ବିଦ୍ୟମାନ ହୋଇଅଛି, ସେହି ଶାଖାରେ ଊର୍ଦ୍ଧ୍ୱକୁ ମହାନଦୀ ଅଭିଧାରେ ବିଖ୍ୟାତ ହୋଇଅଛି ବୋଲିବାକୁ ହେବ । ଚିତ୍ରୋତ୍ପଳା ପଦ୍ୟର ନିମ୍ନରେ କେତେକ ଗୂଢ଼ଥିବା ଅଳଙ୍କାରମାନ ପ୍ରଦର୍ଶିତ କରାହୋଇଅଛି, ତାହା ଆଳଙ୍କାର-ଶିକ୍ଷାର୍ଥୀ ଛାତ୍ରମାନେ ଅଳଙ୍କାରର ପ୍ରକାର ସରଳ ଭାବରେ ଜାଣିବେ ତନ୍ନିମିତ୍ତ ପ୍ରଦର୍ଶିତ କରାହୋଇଅଛି ।"

'କଳୌ ଚିତ୍ରୋତ୍ପଳା ଗଙ୍ଗା' ଉକ୍ତିଟି ପବିତ୍ରତା ଦୃଷ୍ଟିରୁ ଉତ୍କଳରେ ପ୍ରତିଷ୍ଠା ଲାଭ କରିଛି ।

## (ଖ) ଚିତ୍ରୋତ୍ପଳା କାବ୍ୟର ସଂକ୍ଷିପ୍ତ ପର୍ଯ୍ୟାଲୋଚନା

କବିରାଜ ବାସୁଦେବଙ୍କ ଦୃଷ୍ଟିରେ ଚିତ୍ରୋତ୍ପଳା ଏକ ସୌନ୍ଦର୍ଯ୍ୟମୟୀ ମୂର୍ତ୍ତିମତୀ ନାୟିକା ।

ତାର ଆବିର୍ଭାବ ପ୍ରସଙ୍ଗରେ କବିଙ୍କ ବର୍ଣ୍ଣନା

"ମଧ୍ୟପ୍ରଦେଶର କିୟଦଂଶ ନେଇ ଉତ୍କଳର ବକ୍ଷସ୍ଥଳେ,
ପ୍ରବାହିତ ହେଉଅଛି ଚିତ୍ରୋତ୍ପଳା ମହାନଦୀ ନାମଛଳେ ।"

ବାସ୍ତବରୂପ ନେଇଛି ।

ନାସାଗ୍ର ପ୍ରଦାନରେ ଲେଖନୀ

“କୁଟିଳ କୁନ୍ତଳ ଆଡ଼ମ୍ବର ବେଶେ ଲହରୀମାଳା ରଚଇ
ଫେନପୁଞ୍ଜ ହ୍ରାସ ରଙ୍ଗେ ତରଙ୍ଗିଣୀ ଭ୍ରମରରଙ୍ଗେ କ୍ରୀଡ଼ଇ ।

× × × ×

କପୋଳ ସିନ୍ଦୂର ଶିଖିଛି ସଦ୍ଗୁଣ କାନ୍ଧି ତଟିନୀ ସିକତା
ନାସା ଗୋରଚନା କଳିଛି ପରାସ୍ତେ ଦାଣଇ କାନ୍ଧି ଚନ୍ଦନା ।

× × × ×

ମନ୍ଦବାତେ ବୀଚିମାଳା ବିସ୍ତାରୁଛି କମଳ ଅବୟବନୀ
କୁଣ୍ଠିତ ସୁନୀଳ ବସନରେ ମଣ୍ଡି ପୁଲକକାନ୍ତ ଦାମ୍ପିନୀ ।”

ଗ୍ରୀଷ୍ମ, ବର୍ଷା ପ୍ରଭୃତି ଋତୁ ପର୍ଯ୍ୟାୟରେ ଚନ୍ଦ୍ରୋତ୍ପଳାର ପ୍ରାକୃତିକ ଶୋଭା ଅତ୍ୟନ୍ତ ରମଣୀୟ ତଥା ଚିତ୍ତାକର୍ଷକ । ତେଣୁ ବର୍ଣ୍ଣନା କଲେ,

“ନିଦାଘ-ସନ୍ତାପ ପ୍ରତପ୍ତ ହୃଦୟା ଚନ୍ଦ୍ରୋତ୍ପଳା ମନ୍ଦେ ବହେ
ଜନ୍ମ ରୋଗ କ୍ଷୀଣତନୁ ଜରତୀର କୁଟିଳାଛବି କି ବହେ ।”

× × ×

କଲ୍ଲୋଳାବଳୀରେ ଆଲୋଡ଼ିତ ନୀର ଗମ୍ଭୀର ନାଦରେ ପୂରି
ଆବର୍ତ୍ତୀ ଘୂର୍ଣ୍ଣନ ଘୂ ଘୂ ଧ୍ୱନିଧାରି ଧାଉଁଅଛି ଭୁରି ଭୁରି ।

× × ×

ସୁକାନ୍ତ ତନୁଜେ ! ଋଷିପୁତ୍ରୀ ହୋଇ କପାଳେ ତୋର କି ଥିଲା,
ପ୍ରତି ଅବ୍ଦ ଘନ କାଳ ଉଦୟରେ ବିଭତ୍ସ ବନ୍ଧ ବନ୍ଧିଲା ।”

ଚନ୍ଦ୍ରୋତ୍ପଳାର ଉତ୍ପତ୍ତି ପ୍ରସଙ୍ଗରେ,

ଚନ୍ଦ୍ରୋତ୍ପଳା ଜନ୍ମ ରାୟପୁର ଜିଲ୍ଲା ସାହବା ଗ୍ରାମ ପାଶରୁ
ମନୋହର ଧାରା ବାହିତ ହେଉଛି ଦିଶୁଅଛି ଅତି ସରୁ ।
ପଙ୍କଜ ହୃଦୟା ପୁଣ୍ୟାଶ୍ରମ ଦେଖି ଚଳୁଥାଇ ଧୀରେ ଧୀରେ,
ରାଜୀବ ନଗର ନିକଟରେ ଯାଇ ମିଳିଲା ସ୍ୱଚ୍ଛ ମଠରେ ।

× × ×

ମାତୃସ୍ନେହ ପରପ୍ଲୁତାଇବ ନଦୀ ଲକ୍ଷଣ କର ପ୍ରମାଣ
ଆଲିଙ୍ଗନ ସୁଖେ ଜନନୀ କୋଳରେ ରହିଲା ନୋହିଲା ବାଣ ।"

କବି 'ସମ୍ବଲପୁର' ସହରର ଶୋଭା ତଥା ନାମକରଣର ସାର୍ଥକତା ସମ୍ପାଦନ କଲେ ।

"ନିର୍ମଳ ଶୀତଳ ପ୍ରବାହ ସ୍ପର୍ଦ୍ଧିନୀ ସୁପୂନିତା ରକ୍ତକାୟା
ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ସମଲେଇ ମହାମାୟା ।
ଦେବୀ ଅଭିଧାରେ ଖ୍ୟାତ ହୋଇଅଛୁ ସମ୍ବଲପୁର ସହର
ଧନୁ ଆକାରରେ ଗବ୍ୟୂତ ପ୍ରମାଣେ ନଗର ଅତି ସୁନ୍ଦର ।
ସଉଧ ମାଳାରେ ମଣ୍ଡିତ ହୋଇଛୁ ରୁଚିର ତୀର ସରଣୀ,
ମହା ଉତ୍ସବରେ ଧବଳ ତୋରଣେ ହୋଇଅଛୁ କି ବରଣୀ ?
ନିଜ ରୂପ ଛବି ନିତି ଯା ଦେଖୁଛୁ ନଗର ହ୍ରଦ ଦର୍ପଣେ,
ସ୍ୱକୀୟ ମୂରତି ଦ୍ୱିଗୁଣିତ କରି ଦେଖାଏ ସୁନ୍ଦର ପଣେ ।

ତାଙ୍କ ଲେଖନୀରେ,

ସମ୍ବଲପୁର ଝାଡ଼ୁଆପଡ଼ାସ୍ଥିତ 'ବ୍ରହ୍ମପୁରା ମନ୍ଦିର'ର ଶୋଭା

"ସ୍ୱର୍ଣ୍ଣ କଳଶରେ ଶୋଭମାନ ବ୍ରହ୍ମପୁରା ମନ୍ଦିର ବାଦିତ
ଦାରୁବ୍ରହ୍ମରୂପ ଅରବିନ୍ଦ ନେତ୍ର ତହିଁ ସଦା ବିରାଜିତ
ମନ୍ଦିର ଦୁଆରୁ ନଦୀଗର୍ଭ ଯାଏ ଚୂନ ପାବଚ୍ଛ ଗଠିତ,
ଚନ୍ଦ୍ରୋପଳା ନୀର ତରଙ୍ଗ କରରେ ପରିଷ୍କୃତ ସୁରଞ୍ଜିତ ।"

ପୁରନାରୀମାନଙ୍କର ସମାବେଶରେ ପ୍ରାଙ୍ଗଣ ଅତ୍ୟନ୍ତ ରମଣୀୟ ହୋଇଉଠେ । ସେମାନଙ୍କର ସ୍ନାନଲୀଳା କବିଙ୍କ ଭାଷାରେ ରସାଣିତ ।

"ଉଷାକାଳେ ସ୍ନାନଶୀଳା ନାରୀବୃନ୍ଦେ ତୀର ହୋଇଯାଏ ଘନ
ଅକାଳ ତରଙ୍ଗେ ଦଳି ହେଉଥାଏ ରମଣୀ ଲାବଣ୍ୟ ବନ ।"

ଇବ ଓ ତେଲ ନଦୀର ସମ୍ମେଳନରେ ନଦୀର ଆନନ୍ଦ ବର୍ଦ୍ଧିତ ହୋଇଥାଏ ତେଣୁ ବର୍ଣ୍ଣନା କଲେ,

"ମହତ ଲୋକର ଏହିପରି ସିନା ମହତ୍ତ୍ୱ ଅଟେ ବେଭାର,
କ୍ଷୁଦ୍ର ହୋଇ କିଛି କ୍ଷମତା ପାଇଲେ ହିଂସା ବଢ଼େ ଭାରଭାର ।

ସୋନପୁର ଓ ବଉଦ ନଦୀତଟରେ ଶୋଭା ପାଉଛନ୍ତି । ତେଣୁ ବର୍ଣ୍ଣନା କଲେ,

"ତେଲନଦୀ ତୀର ନିବାସୀ ସୁବର୍ଣ୍ଣ ମେରୁ ଶିବଲିଙ୍ଗରୂପ,
ସ୍ୱର୍ଣ୍ଣପୁରବାସୀ ମନୋରଥ ସିଦ୍ଧି କରୁଛନ୍ତି ଅନୁରୂପ ।

× × ×

ସମ୍ବଲପୁରର ଧନ୍ୟମଣି ମଧୁକର ସାଏ ନରପତି,
ତାହାଙ୍କ ଅଂଶରୁ ଖ୍ୟାତ ହୋଇଅଛି ସ୍ୱର୍ଣ୍ଣପୁର ରାଜପଂକ୍ତି ।
ଚିତ୍ରୋତ୍ପଳା କୂଳେ ସୁଖେ ବିହରନ୍ତି ସୁପାନ ସ୍ନାନ ଲାଲସେ,
ଜଳକେଳି ନାବକେଳି କରି ଦିନ ହରନ୍ତି ଅତି ହରଷେ ।
ବାମେ ଶୋଭେ ଅଷ୍ଟମଲ୍ଲିକ ଭୂରେଖା ବକ୍ଷେ ବୌଦ୍ଧ ଜନପଦ
ଉଭୟ ତଟକୁ କରିଛି ନଗାଳି ଅଗାଳି ଶୋଭା ଆସ୍ପଦ ।
ବଉଦ ନିକଟ ଉପରେ ଗହନ ଅତିଶୟ ଅସମାନ
ଙ୍କାଲିଲା ସରଣୀ ବିଷମ ପ୍ରସ୍ତର ଶ୍ରେଣିପରେ ବିଦ୍ୟମାନ ।
କାହାର ମସ୍ତକ ଉପରେ କାହାର ସ୍କନ୍ଧତଳେ ପାଦତଳେ,
ପତନ ଉତ୍ପାତ ଝାଙ୍କାର, ଧାଙ୍କାର, ଚଙ୍କାର, ଘୁଙ୍କାରେ ଚଳେ ।
ଶିଳାଗହ୍ୱରରେ ପଡ଼ି ଭ୍ରମୁଅଛି ଇତସ୍ତତେ ପୟସ୍ୱିନୀ
ନିରୂଦ୍ଧ ପଦବୀ ହେବାରୁ ପ୍ରଖରବେଗା ଭୈରବ ନାଦିନୀ ।
କାହିଁ ଘୁଘୁ କାହିଁ ଧୁଧୁ କାହିଁ ହୁହୁ କାହିଁ ବାରବାହ ଧ୍ୱାନ,
ବୌଦ୍ଧବାସୀମାନେ ଯେପରି ଭାବନ୍ତି ଶୁଣନ୍ତି ତଦ୍ରୂପ ତାନ ।"

କବିରାଜା ବାସୁଦେବ ଏଠାରେ 'ବଉଦ' ନାମକରଣର ସାର୍ଥକତା ସମ୍ପାଦନ କଲେ ଯଦ୍ୟପି ଐତିହାସିକ ପୃଷ୍ଠଭୂମିରେ ବିରାଟ ବୁଦ୍ଧମୂର୍ତ୍ତିଙ୍କର ଅବସ୍ଥାନ ହେତୁ ବୌଦ୍ଧ (ବୌଦ୍ଧରାଜ) ହେଲେହେଁ ଆକ୍ଷରିକ ଦୃଷ୍ଟିରୁ ବଉଦ (ମେଘମାଳା) ନାମକରଣର ଯାଥାର୍ଥ୍ୟ ଏଠାରେ ପ୍ରତିପାଦିତ । ଚିତ୍ରୋତ୍ପଳା ଦଣପଲ୍ଲା ଦେଇ ପ୍ରବାହିତ ହେଲାପରେ କବି 'ସାତକୋଶିଆ ଗଣ୍ଡ'ର ମାର୍ମିକ ବର୍ଣ୍ଣନା ପ୍ରଦାନ କରିଅଛନ୍ତି ।

"ନୀଳାକାଶ ସମ ନୀଳତରଙ୍ଗରେ ଘନାଳି ଛଟା ବିସ୍ତାର,
ସପ୍ତକୋଶୀଗଣ୍ଡ ସପ୍ତକୋଶ ଯାଏ ହୋଇଛି ଅତଳାସ୍ପଦ ।

ଉଭୟସ୍ଥ ତଟକୁ ଆଲିଙ୍ଗନ କରି ଚଳୁଅଛି ଧୀରେ ଧୀରେ
ତଟଜାଗୀ ତରୁ ବିନମ୍ର ମସ୍ତକେ ବନ୍ଦୁଛନ୍ତି ସନ୍ନିଧିରେ ।''

କଣ୍ଟିଲୋର 'ଶ୍ରୀନୀଳମାଧବ' ମନ୍ଦିର ଏକ ପବିତ୍ର ଶୋଭନ ଦୃଶ୍ୟ । ବଡ଼ମ୍ବାର 'ଭଟ୍ଟାରିକା' ଓ 'ସିଂହନାଥ', ବାଙ୍କୀର ରାମନାଥ ଓ ସ୍ୱପ୍ନେଶ୍ୱର ମହାଦେବ ନିଭୃଜାକାରରେ 'ବୈଦେଶ୍ୱରନାଥ', ଆଠଗଡ଼ର ସର୍ପେଶ୍ୱର, ଓ 'ମଙ୍ଗେଶ୍ୱର' ମହାଦେବ, 'ଧବଳେଶ୍ୱର' ମହାଦେବ ପ୍ରଭୃତି ଦେବମନ୍ଦିରମାନ ଚିତ୍ରୋତ୍ପଳା ନଦୀ ତଟରେ ଶୋଭା ପାଉଥିବାର ବିମଳ ନିସର୍ଗ ବର୍ଣ୍ଣନା କବିଙ୍କ ଲେଖନୀରେ ରୂପାୟିତ ହୋଇଅଛି ।

ସ୍ଥଳବିଶେଷରେ ମନ୍ଦିରମାନଙ୍କ ତଥା ଦେବତାଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି ଯଥା :

''ନଦୀ ଉଦରରେ ଧବଳ ଈଶ୍ୱର ଗୁହାରଜନ ମୂରତି,
କଳା ବଳଦକୁ ଧଳା କରିବାରୁ ଧବଳ ନାମ ଉଦିତ ।''
ଦୁଇ ତୀରେ ଯେତେ ଦେବଦେବୀମାନେ ରହିଛନ୍ତି ଆମୋଦରେ,
ଚିତ୍ର ଉତ୍ପଳାର ପୁଣ୍ୟ ପବିତ୍ରତା ପ୍ରକାଶୁଅଛି ଲୋକରେ ।''

ତା ପରେ ରାଜା ବାସୁଦେବ ନଦୀପଥରେ ଯାତ୍ରାକରି କଟକରେ ଉପସ୍ଥିତ ହୋଇ ତାର ଶୋଭା ବର୍ଣ୍ଣନା କଲେ,

''କଟକ ଛଟକ ଦେଖି ଅଟକିଲି ଦ୍ୱୀପବତୀର ସୁମନ,
କାଠଯୋଡ଼ି ବାହୁ ବିସ୍ତାରି କୁତୂକେ କରିଅଛି ଆଲିଙ୍ଗନ ।
ଭୁଜ ଅନ୍ତରାଳେ ଆଦରେ ଧରିଛି ପ୍ରକୃତି ସାଧୁ ସ୍ୱଭାବ,
କାହିଁ ବ୍ରାହ୍ମସଭା କାହିଁ ଖ୍ରୀଷ୍ଟସଭା କାହିଁ ହରିଭକ୍ତି ଭାବ ।
ଶ୍ୱେତାଙ୍ଗ ସଦନ ଶୁଭ୍ର ଅଟ୍ଟାଳିକା ମଣ୍ଡିତ ତୀର ବିପଣୀ,
ବିଭବ ସମ୍ଭାରେ ନଗର ହୋଇଛି ଅମରାବତୀ ବରଣୀ ।
କାଠଯୋଡ଼ି ତୀରୁଁ ବିଡ଼ାନାଶି ଯାଏ ଉପଳରେ ରୋଧସଜ୍ଜା
ତୋ' ଅଙ୍ଗେ କୀରତି ରଖିଯାଇଛନ୍ତି ମର୍କତକେଶରୀ ରଜା ।

ମହାନଦୀ ତଥା ଚିତ୍ରୋତ୍ପଳାର ଯଶ ବା ପ୍ରତିଷ୍ଠାର କୌଣସି ବର୍ଣ୍ଣନା ଦେଖିବାକୁ ନ ପାଇ କବିବର ରାଧାନାଥ ରାୟ 'ଚିଲିକା' ଖଣ୍ଡକାବ୍ୟରେ ପ୍ରକାଶ କଲେ,

''କ୍ଷୁଦ୍ର କ୍ଷିପ୍ରା ସ୍ରୋତ ବିଖ୍ୟାତ ଜଗତେ,
ମହାନଦୀ ନାମ ରହିଲା ଗୁପତେ ।''

ତାର ପଦାଂଶ ଗ୍ରହଣ କରି କବି ବାସୁଦେବ ବର୍ଣ୍ଣନା କଲେ,

"ତୋ ତୀର ବିହାରୀ ରସ୍ମ କବିବର ଚିନ୍ତାଶୀଳ ଅବିରତେ
'ମହାନଦୀ' ନାମ ରହିଲା ରୂପତେ, ବୋଲି ଭାବୁଥାନ୍ତି ତୋତେ ।"

ତାର ଅନେକ ଶାଖାନଦୀ କଟକରୁ ବାହାରି ବିଭିନ୍ନ ସ୍ଥାନ ଦେଇ ପ୍ରବାହିତ । ସାଲେପୁର (ଶାଳପୁର) ଗ୍ରାମ ଦେଇ ଏକ ଶାଖା 'ଚିତ୍ରୋତ୍ପଳା' ନାମରେ ଖ୍ୟାତ ହୋଇ ଗତିକଲା । ତେଣୁ କବି ବର୍ଣ୍ଣନା କଲେ,

କଟକୁଂ ବାହାରି ବହୁଶାଖା ହୋଇ ଚଳଇ ଉଲ୍ଲାସଭରେ ।
ଶାଳପୁର ଯାଇ ଭଗବତୀ ପାଦେ ଝଟଇ ଉକ୍ତ ବେଗରେ ॥

ତେଣୁ 'ଚିତ୍ରୋତ୍ପଳା' ଏକ ଉଚ୍ଚକୋଟୀର ପ୍ରକୃତି କାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## (ଗ) ଚିତ୍ରୋତ୍ପଳା କାବ୍ୟର ସ୍ୱରୂପ ନିର୍ଦ୍ଧାରଣ :—

'ଚିତ୍ରୋତ୍ପଳା' କବି ରାଜା ବାସୁଦେବଙ୍କର ଏକ ପ୍ରକୃତି କାବ୍ୟ । ଏହା ବିଂଶତି ଅକ୍ଷର ବିଶିଷ୍ଟ କ୍ରମରେ (୬+୬+୮) ବିରଚିତ । 'ଚିତ୍ରୋତ୍ପଳା' ନଦୀତଟସ୍ଥ ରମଣୀୟ ବନଭୂମି, ପଲ୍ଲୀ ଅଞ୍ଚଳ, ଜନପଦ, ନଗର ଏବଂ ତହିଁରେ ଅଧିଷ୍ଠିତ ଦେବଦେବୀଙ୍କର ସୂଚନା ପ୍ରଦାନ କାବ୍ୟଟିର ସାହିତ୍ୟିକ ମୂଲ୍ୟ ବର୍ଦ୍ଧନ କରେ । କାବ୍ୟଟି ଦୀର୍ଘକାୟ ନ ହେଲେ ମଧ୍ୟ କବିଙ୍କର ସ୍ୱୀୟ ପ୍ରତ୍ୟକ୍ଷ ଅନୁଭୂତି-ଗମ୍ୟ ଧାରଣା ଓ କବିସ୍ୱଭାବ ସୁଲଭ ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ରାଜା ବାସୁଦେବ ଜଣେ ଉଚ୍ଚକୋଟୀର ଆଲଙ୍କାରିକ କବି ହୋଇଥିବାରୁ ବର୍ଣ୍ଣନା ଛଳରେ ବହୁବିଧ ଅଳଙ୍କାରର ପ୍ରୟୋଗ କରିଯାଇଅଛନ୍ତି । ଏହା ତାଙ୍କ ଅଳଙ୍କାର ପ୍ରିୟତାର ଶ୍ରେଷ୍ଠ ନିଦର୍ଶନ । ଅଳଙ୍କାର ନିରୂପଣ କଷ୍ଟ ଦୂର କରିବା ଅଭିପ୍ରାୟରେ ନିମ୍ନରେ ଉଚିତ ଅଳଙ୍କାରମାନଙ୍କର ନିର୍ଦ୍ଦେଶ ତଥା ସୂଚନା ପ୍ରଦାନ କରିଅଛନ୍ତି ।

ଦ୍ୱିତୀୟତଃ ତାଙ୍କର ପ୍ରକୃତି ରସସିକ୍ତ ଓ ଜୀବନ୍ତ । ତେଣୁ ଚିତ୍ରୋତ୍ପଳାକୁ ଏକ ପ୍ରବହମାନା ସ୍ରୋତସ୍ୱିନୀ ରୂପରେ ଅବଲୋକନ ନ କରି ମୂର୍ତ୍ତିମନ୍ତ ରୂପସୀ ଚଳଚଞ୍ଚଳା ନାରୀ ରୂପରେ ଅବଲୋକନ କରିଛନ୍ତି । ତେଣୁ ସ୍ଥଳ ବିଶେଷରେ ତାକୁ ସମ୍ବୋଧନ କରି ନିଜ ହୃଦୟର ଗଭୀର ଭାବ ପ୍ରଖ୍ୟାପନ କରିଛନ୍ତି ଯାହା ପୂର୍ବରୁ କେତେକ ସ୍ଥଳରେ ଉଦ୍ଧୃତ ଓ ବର୍ଣ୍ଣିତ ହୋଇଅଛି ।

ତୃତୀୟତଃ 'ଚିତ୍ରୋତ୍ପଳା' ନାମକରଣର ପ୍ରାଚୀନତା ଓ 'ମହାନଦୀ' ନାମର ଆଧୁନିକତା ମଧ୍ୟରେ ସମନ୍ୱୟ ସ୍ଥାପନ ପୂର୍ବକ ଏକ ଆଧୁନିକ ରୁଚି ସମ୍ପନ୍ନ ପରିବେଶ ସୃଷ୍ଟି କରିପାରିଛନ୍ତି । ତେଣୁ ଏହା ବିଶେଷ ହୃଦୟଗ୍ରାହୀ ହୋଇପାରିଛି ।

ଚତୁର୍ଥତଃ 'ଚନ୍ଦ୍ରୋତ୍ପଳା'ର ମହିମା ବର୍ଣ୍ଣନା ସଙ୍ଗେ ସଙ୍ଗେ ତତ୍‌ପ୍ରଦେଶସ୍ଥ ଜନପଦର ବୈଶିଷ୍ଟ୍ୟ ସମ୍ପାଦନ କରିପାରିଛନ୍ତି । ସମ୍ବଲପୁର, ସୋନପୁର, ବୌଦ ପ୍ରଭୃତି ତତ୍‌ପ୍ରଦେଶସ୍ଥ ବହୁ ଦେବାଦେବୀମନ୍ଦିରର ମାହାତ୍ମ୍ୟ ପ୍ରକଟନ ପୂର୍ବକ ତାର ତୀର୍ଥତ୍ୱ ସମ୍ପାଦନ କରିପାରିଛନ୍ତି । ଯଦିଓ ସ୍ଥଳ ବିଶେଷରେ ଶବ୍ଦକାଠିନ୍ୟଦୋଷ ପରିଲକ୍ଷିତ ହୋଇଥାଏ, ତଥାପି ଏହା ଚିତ୍ତାକର୍ଷକ ।

ଯେଉଁ ମୁହୂର୍ତ୍ତରେ କବି ରାଜା ବାସୁଦେବ ଲେଖନୀ ଗ୍ରହଣ କରି ଏ ପ୍ରକାର ପ୍ରକୃତିକାବ୍ୟ ରଚନା କରି ଓଡ଼ିଆ ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କଲେ, ତାହା ସମୟୋପଯୋଗୀ । ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ତାଙ୍କର ସମସାମୟିକ ଓ ବୟସରେ କବିବର ୨ ବର୍ଷ ମାତ୍ର ତାଙ୍କଠାରୁ ବଡ଼ । ତେଣୁ ଉଭୟଙ୍କ ଅନାବିଳ ଅନ୍ତରଙ୍ଗ ବନ୍ଧୁତା ହେତୁ ରାଧାନାଥଙ୍କ ରଚନାଶୈଳୀ ପ୍ରଭାବ କବି ରାଜା ବାସୁଦେବଙ୍କ ରଚନାଶୈଳୀ ଉପରେ ରେଖାପାତ କରିବା ସ୍ୱାଭାବିକ । ଆଧୁନିକ ରୁଚି ସମ୍ପନ୍ନ ଶୈଳୀର ପ୍ରବର୍ତ୍ତନ ଏ ଦିଗରେ ବିଶିଷ୍ଟ ପଦକ୍ଷେପ । ଯଦିଓ କେତେକ ସ୍ଥଳରେ ପ୍ରାଚୀନତା ପରିଲକ୍ଷିତ ହୋଇଥାଏ ।

ପ୍ରକୃତି କବି ରାଜା ବାସୁଦେବଙ୍କ 'ଚନ୍ଦ୍ରୋତ୍ପଳା' କାବ୍ୟରେ ପ୍ରକୃତିପ୍ରାଣତା ଛନ୍ଦେ ଛନ୍ଦେ ପ୍ରତିଫଳିତ—ବୋଲିବା ବାହୁଲ୍ୟ ମାତ୍ର । ଏହା ଏକ ଉଚ୍ଚକୋଟୀର ସରସ ପ୍ରକୃତ କାବ୍ୟ । ତେଣୁ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ଭାଷାରେ,

"ଚନ୍ଦ୍ରୋତ୍ପଳା ବାସୁଦେବଙ୍କର ଏକ ବିଶିଷ୍ଟ ଉପାଦେୟ ରଚନା ସମସାମୟିକ ରାଧାନାଥଙ୍କର ରଚନାଶୈଳୀ ଓ ଯୋଜନାଗତ ପ୍ରଭାବ ଏଥିରେ ଅନେକାଂଶରେ ପଡ଼ିଥିଲେହେଁ କବିଙ୍କ କଳ୍ପନାବଳୀର ନମନୀୟତା ଓ ନୈସର୍ଗିକ ରଚନାପାଟବ ଏଥିରେ ସ୍ପଷ୍ଟ ହୋଇଛି । 'କଲ୍ଲୋଳ ଚନ୍ଦ୍ରୋତ୍ପଳା ଗଙ୍ଗା' ଏହି ଉକ୍ତିର ଯାଥାର୍ଥ୍ୟ ପ୍ରତିପାଦିତ ହୋଇଛି କବିଙ୍କ 'ଚନ୍ଦ୍ରୋତ୍ପଳା' ବର୍ଣ୍ଣନାରେ ।

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡା ପ୍ରାଣକୃଷ୍ଣ ପରିଜାଙ୍କ ମତରେ "ଚନ୍ଦ୍ରୋତ୍ପଳା କାବ୍ୟ ସରସ ଓ ପ୍ରକୃତି ବର୍ଣ୍ଣା ଚିତ୍ତାକର୍ଷକ । ଟିକିଏ ଶବ୍ଦକାଠିନ୍ୟ ଦୋଷ ନ ଥିଲେ ସାଧାରଣ ପାଠକର ଅଧିକ ମନମୋଦକ ହୋଇଥାନ୍ତା । ତାଙ୍କର ପ୍ରକୃତି—ଦର୍ଶନ—ନିପୁଣତା ଓ ଉପମା ଗୌରବ ପ୍ରତିପଦରେ ଫୁଟିଅଛି ।" ଉକ୍ତିଟି ବିଶେଷ ରୂପେ ପ୍ରଣିଧାନଯୋଗ୍ୟ । ତେଣୁ 'ଚନ୍ଦ୍ରୋତ୍ପଳା' ଏକ ଉଚ୍ଚକୋଟୀର ପ୍ରକୃତି କାବ୍ୟ । ଏହା ସର୍ବାନ୍ତଃକରଣରେ ସ୍ୱୀକୃତ ।



# ବୀରବାମା

କବି ରାଜା ବାସୁଦେବଙ୍କ ଐତିହାସିକ କାବ୍ୟ ବୀରବାମା ଏକ ଅନବଦ୍ୟ କୃତି ।

**ଐତିହାସିକ ପୃଷ୍ଠଭୂମି** :—ଏକଦା ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳରେ ଝାନ୍‌ସୀ ଏକ ସାମନ୍ତ ରାଜ୍ୟ । ତାର ରାଜା (Feudatory Chief) ପ୍ରଭୂତ- କ୍ଷମତାଶାଳୀ ଥିଲେ । ଯେତେବେଳେ କ୍ଷମତା ଲାଳସୀ ବ୍ରିଟିଶ ସରକାର ରାଜ୍ୟ ପରେ ରାଜ୍ୟ ନିଜର କର୍ତ୍ତୃତ୍ୱାଧୀନ କରିବାକୁ ଉଦ୍ୟତ ହେଲେ, ଇତ୍ୟବସରରେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈଙ୍କର ଆବିର୍ଭାବ । ବୁନ୍ଦେଲଖଣ୍ଡ ଅଞ୍ଚଳରେ ଏହି ଝାନ୍‌ସୀ ଏକ ମରହଟ୍ଟାଶାସିତ ରାଜ୍ୟ । ବ୍ରିଟିଶ ସହିତ ଯୁଦ୍ଧ କରି ରାଜ୍ୟର ସମ୍ମାନ ରକ୍ଷା ଦିଗରେ ଜଣେ ଭାରତୀୟ ନାରୀ ବୀରାଙ୍ଗନା ଲକ୍ଷ୍ମୀବାଈ ଯେଉଁ ଉଚ୍ଚକୋଟୀର ସାହସ, ଧୈର୍ଯ୍ୟ ଓ ନିଷ୍ଠା ପ୍ରଦର୍ଶନ କରିଯାଇଅଛନ୍ତି, ତାହା ଭାରତ ଇତିହାସରେ ବିରଳ । ସଂସ୍କାରପ୍ରିୟ କବି ସାର୍ ବାସୁଦେବ ନାରୀର ବୀରତ୍ୱର ମର୍ଯ୍ୟାଦା ବୃଦ୍ଧି ଓ ସମ୍ମାନ ରକ୍ଷା ସକାଶେ ଲେଖନୀ ଚାଳନା କରି ଏ ପ୍ରକାର ଐତିହାସିକ କାବ୍ୟକୁ ରଚନା କରି ନିଜର ବୀରତ୍ୱ ବ୍ୟଞ୍ଜକ କବିତ୍ୱର ପରିଚୟ ପ୍ରଦାନରେ ସମର୍ଥ ହୋଇପାରିଛନ୍ତି ।

କେବଳ ଏତିକି ନୁହେଁ, ରାଜଧାନୀ ଦେବଗଡ଼ରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ରାଜୋଦ୍ୟାନରେ ଗୃହର ବାମପାର୍ଶ୍ୱସ୍ଥ ସମ୍ମୁଖଭାଗରେ ଲକ୍ଷ୍ମୀବାଈଙ୍କର ଅଶ୍ୱାରୋହୀ ଅବସ୍ଥାରେ ଯୁଦ୍ଧ ସାଜ୍ଜ୍ୟ ପରିହିତ ମୂର୍ତ୍ତି ସ୍ଥାପନ କରି ଦେଶପ୍ରାଣତା ତଥା ଜାତୀୟତାର ପରିଚୟ ପ୍ରଦାନ କରିପାରିଛନ୍ତି । ଯଦିଓ ବାମଣ୍ଡା ବ୍ରିଟିଶ ଶାସନାଧୀନ ଥିଲା, ତଥାପି ପରାଧୀନ ଭାରତରେ ଯେ ବ୍ରିଟିଶ ଶାସନ, ବ୍ରିଟିଶ ଜାତି ବିରୁଦ୍ଧରେ ଏ ପ୍ରକାର ମୂର୍ତ୍ତିର ପ୍ରତିଷ୍ଠାରେ ତାଙ୍କର ଅକୁତୋଭୟତା, ନିଛକ ଦେଶପ୍ରାଣତା ତଥା ଭାରତୀୟ ଜାତୀୟତାର ସ୍ୱର ଉତ୍ତୋଳନ କରି ଏକ ଜାତୀୟ ଆଦର୍ଶ ପ୍ରତିଷ୍ଠା କରିପାରିଥିଲେ—ଏହା ତାଙ୍କର ଅସୀମ ସାହସର ନିଦର୍ଶନ । ତେଣୁ ତାଙ୍କର ରାଜତ୍ୱକାଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଐତିହାସିକ, ଜାତୀୟତାଭାବ-ବ୍ୟଞ୍ଜକ 'ବୀରବାମା' କାବ୍ୟ ରଚନା କରି ବ୍ରିଟିଶ ସରକାର ବିରୋଧରେ ଜାତୀୟ ଚେତନା ତଥା ଜନଜାଗରଣ ସୃଷ୍ଟି କରିବାର ଯେଉଁ ନେତୃତ୍ୱ ନେଇଥିଲେ, ବ୍ରିଟିଶ ସରକାର ତାଙ୍କ ପ୍ରତି କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରି ବରଂ ତାଙ୍କର ପ୍ରଶାସନିକ ଦକ୍ଷତା ପୂର୍ଣ୍ଣ କାର୍ଯ୍ୟାବଳୀର ଭୂରି ଭୂରି ପ୍ରଶଂସା ବାର୍ଷିକ ପ୍ରଶାସନ ବିବରଣୀରେ ପ୍ରଦାନ କରିଯାଇଅଛନ୍ତି । ତେଣୁ

'ବୀରବାମା' ପରି ଏକ ଉଚ୍ଚକୋଟୀର ଜାତୀୟତାବାଦୀ କାବ୍ୟର ଯେ ଜାତୀୟ ମୂଲ୍ୟବୋଧ କଳନାତୀତ ଏହା ଅସ୍ୱୀକାର କରାଯାଇ ନ ପାରେ ।

ଦ୍ୱିତୀୟତଃ ସେ ସମୟରେ ନାରୀଶିକ୍ଷା ଅଗ୍ରଗତି ଲାଭ କରି ନ ଥିଲା । ସମାଜରେ ପରଦା ପ୍ରଥା ପ୍ରଚଳିତ ଥିବାରୁ ନାରୀମାନେ ଶିକ୍ଷାଲାଭରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ କୌଣସି ସାଂସ୍କୃତିକ କାର୍ଯ୍ୟକଳାପରେ ସକ୍ରିୟ ଭୂମିକା ଗ୍ରହଣ କରିବାକୁ ଲଜ୍ଜା ତଥା ଶଙ୍କା ବୋଧ କରୁଥିଲେ । ଏପରି ସ୍ଥଳରେ 'ବୀରବାମା' କାବ୍ୟର ଅଭ୍ୟୁଦୟ ଏ କ୍ଷେତ୍ରରେ ନାରୀ ସମାଜରେ ବୀରତ୍ୱର ସୂଚନା ତଥା ଜାଗରଣ ଏକ ଅଭୂତପୂର୍ବ ଘଟଣା । ତେଣୁ ବ୍ରିଟିଶ ସରକାରଙ୍କ ବିରୋଧରେ ଏହା ନାରୀ ଜାଗରଣର ଏକ ସୁସ୍ପଷ୍ଟ ଜ୍ୱଳନ୍ତ ନିଦର୍ଶନ । ନାରୀ ଜାତିର ସମ୍ମାନ, ମର୍ଯ୍ୟାଦା ତଥା ଶକ୍ତିର ଅଲୌକିକ ମହିମାର ଶ୍ରେଷ୍ଠ ପରିପ୍ରକାଶ ।

## (ଖ) 'ବୀରବାମା' କାବ୍ୟର ସ୍ୱରୂପ ବିଶ୍ଳେଷଣ :—

ଏହି ଐତିହାସିକ 'ବୀରବାମା' କାବ୍ୟ ଦୁଇସର୍ଗ ବିଶିଷ୍ଟ—ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ବିରଚିତ—ଐତିହାସିକ ପୃଷ୍ଠଭୂମିରେ ଆଧାରିତ ।

ମଧ୍ୟଯୁଗୀୟ ରୀତି ଅନୁଯାୟୀ କବି ରାଜା ବାସୁଦେବ ପ୍ରଥମ ସର୍ଗର ପ୍ରଥମ ପଦରେ ଆଧୁନିକ ରୀତିରେ ଇଷ୍ଟଦେବ ବନ୍ଦନା (ମଙ୍ଗଳାଚରଣ) କରିଛନ୍ତି ।

ପ୍ରକୃତି ପୁରୁଷ ବ୍ରହ୍ମାଣ୍ଡର ବିକାଶକ ।
ଉଭୟ ଧର୍ମ ଉଭୟେ ସଦା ନିସ୍ୱାମକ ॥

ସାଧାରଣତଃ ପୁରୁଷଠାରେ ବୀରତ୍ୱ ଓ ସ୍ତ୍ରୀଠାରେ ମୃଦୁଳତା ଶୋଭା ପାଇଥାଏ । ମାତ୍ର ଏ ସ୍ଥଳରେ ନାରୀଠାରେ ବୀରତ୍ୱର ପ୍ରକଟନ ଏକ ଅଲୌକିକ ଘଟଣା, ଯାହାକି କବିଙ୍କ ମନକୁ ବିଶେଷ ରୂପେ ଆକୃଷ୍ଟ ତଥା ଆଲୋଡ଼ିତ କରିପାରିଛି । ତେଣୁ କବି ବର୍ଣ୍ଣନା କଲେ,

"ଅବୀରେ ବୀରତା ଜନ୍ମ ହୁଏ ଚମତ୍କାର
ତେଣୁ ଭାରତ ବଧୂର ବୀରତ୍ୱ ପ୍ରକାର ।
କହିବାକୁ ସହୃଦୟେ ହୃଦୟ ସହିତ
ଉତ୍ସାହିତ ହେଲି ବାରେ ଶୁଣ ଏ ଚରିତ ।"

ଐତିହାସିକ ଘଟଣା ବର୍ଣ୍ଣନା କରିବାକୁ ଯାଇ ପ୍ରକାଶ କଲେ,

ଭାରତ ରାଜ୍ୟର ଏକ ମନୋହର ସ୍ଥାନ
'ବୁନ୍ଦେଲଖଣ୍ଡ' ମଧ୍ୟରେ ସେ ବିରାଜମାନ ।

ଝାନସୀ ନାମେ ବସୁମତୀ ମର୍ତ୍ତ୍ୟେ ପାଳିତ,
ରାଓ ବଂଶୀୟ ଭୂପତି ଦୋର୍ଦ୍ଦଣ୍ଡ ଶାସିତ ।"

ଅବସ୍ଥିତି ବର୍ଣ୍ଣନାରେ—

"ପର୍ବତମାଳା ଯାହାର ପ୍ରାଚୀର ପ୍ରକାର,
ତରୁଶ୍ରେଣୀ ରୁଚିରତା ଉଦ୍ୟାନ ଆକାର ।"

ଯେତେବେଳେ ଭାରତଭୂଷଣ 'କମ୍ବରମିୟର' ଭରତପୁର ଦୁର୍ଗକୁ ଆକ୍ରମଣ କଲେ, ତାର ଚତୁଃପାର୍ଶ୍ୱରେ ଶ୍ୱେତାଙ୍ଗ ବ୍ରିଟିଶ ସୈନ୍ୟବାହିନୀ ପିପୀଳିକା ସଦୃଶ ଅବରୋଧ କଲେ । ଅଣନିର୍ଘାତ ସଦୃଶ କମାଣ ପ୍ରୟୋଗ କଲେହେଁ ପ୍ରାଚୀର ସ୍ଥିର ହୋଇ ରହିଲା । ତେଣୁ ସେନାପତି ସ୍ତବ୍ଧ ହୋଇପଡ଼ିଲେ । ତେଣେ କାଲ୍ପୀଦୁର୍ଗ ଅବରୁଦ୍ଧ ହେବା ଫଳରେ ଝାନ୍ସୀର ରାଜା ରାମଚନ୍ଦ୍ର ବୀରବର ଯୁଦ୍ଧରେ ଅଗ୍ରସର ହେଲେ । ସେଠାରୁ ନାନାଙ୍କୁ ତଡ଼ି ଅଧିକାର କଲେ । କିଛିଦିନ ପରେ ରାମଚନ୍ଦ୍ର ଦେବ ଦେହତ୍ୟାଗ କରିବାରୁ ଭ୍ରାତୃଷ୍ପୁତ୍ର ରଘୁନାଥ ରାଓ ପିତୃବ୍ୟ ସିଂହାସନ ଆରୋହଣ କଲେ । ମାତ୍ର ସେ ଜରାଗ୍ରସ୍ତ ଓ ଅପୁତ୍ରିକ ହେତୁ ଦତ୍ତକ ପୁତ୍ର ଗ୍ରହଣ ନିମନ୍ତେ ବ୍ରିଟିଶ ଶାସନକର୍ତ୍ତା ଲର୍ଡ଼ ଡେଲହାଉସୀଙ୍କ ନିକଟରେ ନିବେଦନ କଲେ । ମାତ୍ର ତାଙ୍କର ସ୍ତ୍ରୀ ଲକ୍ଷ୍ମୀବାଈଙ୍କୁ କିଛିଦିନ ପରେ ପରିତ୍ୟାଗ କରି ଦେହତ୍ୟାଗ କଲେ ଅପୁତ୍ରିକ ଭାବେ । ସପତ୍ନୀ ଗଙ୍ଗାବାଈଙ୍କୁ ସଙ୍ଗରେ ନେଇ ଲକ୍ଷ୍ମୀବାଈ ରାଜକାର୍ଯ୍ୟ ପରିଚାଳନା କଲେ । ଏ ସମ୍ବାଦ ବ୍ରିଟିଶ ସରକାର ଜାଣିବା ମାତ୍ରେ ରାଜ୍ୟ ଦଖଲ ଅଭିପ୍ରାୟରେ ସୈନ୍ୟବାହିନୀ ପ୍ରେରଣ କଲେ । ତେଣୁ ମହାରାଣୀ ଲକ୍ଷ୍ମୀବାଈ ଏଥିରେ କ୍ରୋଧାନ୍ୱିତା ହୋଇ ବ୍ରିଟିଶ ସରକାରଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ ।

ତେଣୁ କବିଙ୍କ ଭାଷାରେ—

"ଦେଖି ଏ ଗର୍ହିତ ବିଧି ଲକ୍ଷ୍ମୀବାୟୀ ରାଣୀ
ଜଳିଲେ କ୍ରୋଧରେ ଦାବାନଳ ପରିମାଣି ।"

ଧର୍ମର ଗୁରୁତ୍ୱ ଯୁଗେ ଯୁଗେ ପ୍ରତିଭାତ ହୋଇଥାଏ, ତେଣୁ କବି ବର୍ଣ୍ଣନା କଲେ,

"ସବୁକାଳେ ଭୂମାତାର ଧର୍ମ ଏକା ସାକ୍ଷୀ,
ଅଧର୍ମ ହୋଇଲେ ଉଠେ ସେ ରୁଧିର ମାଖି ।
ଧର୍ମହାନିରେ ଉତ୍ତପ୍ତ ହୁଅଇ ରୁଧିର,
ଛୁଟି ଫୁଲଇ ଉଠନ୍ତି ଭାରତ ପ୍ରବୀର ।"

ଝାନ୍ସୀରାଣୀ ଲକ୍ଷ୍ମୀବାଈଙ୍କର ଯୁଦ୍ଧର ଆହ୍ୱାନରେ ଚତୁର୍ଦ୍ଦିଗରେ ସମରାନଳ ପ୍ରଜ୍ୱଳିତ ହୋଇଉଠିଲା ।

"ଲର୍ଡ଼ କମ୍ବରମିୟରର ରାଜ ପ୍ରତିନିଧି,
ମହାକ୍ଷୋଧ ତରଙ୍ଗରେ ହେଲେ ଜଳନିଧି,
ଭାରତ ବକ୍ଷ ସାଗର ପରାସ୍ତେ କମ୍ପିଲା,
ସୈନ୍ୟସଜ୍ଜା ଆଲୋଡ଼ନ ବେଗରେ ଭ୍ରମିଲା ।

× × ×

ଅଶ୍ୱମର୍ଦ୍ଦନ କମାଣ ବୈଭବ ନାଦରେ
ନଗ, ନଗର ଧରଣୀ କମ୍ପିଗଲେ ଦରେ ।
ଅସ୍ତ ହେଲା ଭାରତର ଶୌର୍ଯ୍ୟ ଦିନକର,
ଫୁଟିଲା ସୌଭାଗ୍ୟ କୁମୁଦିନୀ ଲର୍ଡ଼ଙ୍କର ।

× × ×

ଜୟଲକ୍ଷ୍ମୀ ଆଲିଙ୍ଗିତା ଭିକ୍ଟୋରିୟା ରାଣୀ,
ସର୍ବତ୍ର ପ୍ରଚ୍ଚରେ କଲେ ଧର୍ମ ସୁଧା ବାଣୀ ।"

ତେଣୁ ଭାରତବାସୀବୃନ୍ଦ ରାଣୀ ଲକ୍ଷ୍ମୀବାଈଙ୍କୁ ଯୁଦ୍ଧ ସକାଶେ ଅନୁପ୍ରେରଣା ଦେଲେ,

"ଭାରତ ପ୍ରଖରେ ନିଜ ମୁକୁଟ ରତ୍ନରେ,
ନିରାଜନା କଲେ ମହାରାଣୀଙ୍କୁ ଯତ୍ନରେ ।"

ଝାନ୍ସୀର ସୈନ୍ୟଗଣ କାଲେଖାଁର ଉତ୍ତେଜନାରେ ଅସ୍ତ୍ର ଉତ୍ତୋଳନ କଲେ । ଦିନେ ଦୁର୍ଗମଣ୍ଡପରେ ଫିରିଙ୍ଗି ସୈନ୍ୟଗଣ ଦଳବଦ୍ଧ ହୋଇ ପ୍ରଭାତକାଳୀନ ସୌନ୍ଦର୍ଯ୍ୟ ଅବଲୋକନ କରୁଅଛନ୍ତି, ଇତ୍ୟବସରରେ ତନ୍ତ୍ୟାନ୍ତକାରୀ ଦଳ ପକ୍ଷରୁ ହଠାତ୍ ଆକ୍ରମଣ ଆରମ୍ଭ ହେଲା ।

ତେଣୁ କବିଙ୍କ ଭାଷାରେ,

"ଦେଖୁଛନ୍ତି ପ୍ରଭାତର ଅପୂର୍ବ ସୁଷମା,
ବାଳ ଅରୁଣ କିରଣେ ମନୋହରତମା ।"

ମାତ୍ର ଅତର୍କିତ ଆକ୍ରମଣ ହେବା ମାତ୍ରେ ଯୁଦ୍ଧାରମ୍ଭ ହେଲା ଓ ବହୁ ସୈନ୍ୟ ହତାହତ ହେଲେ ।

"ଦୁର୍ମଦ ଝାନ୍ସୀ ସିପାହି ମାର ଅକାତରେ
ଶୁଭ୍ର କଲେ ରଣକ୍ଷେତ୍ର ଶ୍ୱେତାଙ୍ଗଶବରେ ।
ନିଜ ସେନା ଅଳ୍ପ ସ୍ୱଳ୍ପ ଦେଖି କର୍ମସ୍ୱର
କାଶ୍ମା ଭିତରୁ ଯିବାକୁ ହେଲେ ତରତର ।

× × ×

ଜୟ ମା ଜୟ ମା ଲକ୍ଷ୍ମୀବାୟୀ ଜୟ ଜୟ
ବୋଲି ବୋଲି ରାଣୀଠାକୁ ଗଲେ ସୈନ୍ୟଚୟ"

ଏହି ସମ୍ବାଦ ବ୍ରିଟିଶ ସରକାର ଶୁଣିବା ମାତ୍ରେ କ୍ରୋଧାଗ୍ନିରେ ଜର୍ଜରିତ ହୋଇପଡ଼ିଲେ । ଇତ୍ୟବସରରେ କାନପୁରରେ ବିଦ୍ରୋହ ବହ୍ନି ପ୍ରଜ୍ୱଳିତ ହେଲା । ତାର ଉପଶମ ଦିଗରେ ସରକାର ଲାଗିପଡ଼ିଲେ । ଫଳତଃ ରାଣୀ ଲକ୍ଷ୍ମୀବାଈ ଦଶମାସ ନିରାପଦରେ ରାଜ୍ୟଶାସନ କଲେ । ଦ୍ୱିତୀୟ ସର୍ଗରେ ବ୍ରିଟିଶ ସରକାରଙ୍କର ଯୁଦ୍ଧ ଘୋଷଣା ଓ ରାଣୀ ଲକ୍ଷ୍ମୀବାଈଙ୍କ ସଙ୍ଗେ ଯୁଦ୍ଧାରମ୍ଭ ଓ ପରିଣତି ପ୍ରସଙ୍ଗ ବର୍ଣ୍ଣିତ । ବ୍ରିଟିଶ ବାହିନୀର ସେନାଧ୍ୟକ୍ଷ ଥିଲେ ହିଉରୋଜ, ଚୈତ୍ର ମାସରେ ଯୁଦ୍ଧାରମ୍ଭ ହେଲା । ସେହି ଦୁର୍ଗରେ ବୀରାଙ୍ଗନା ରାଣୀ ଲକ୍ଷ୍ମୀବାଈ ନିର୍ଭୟ ଚିତ୍ତରେ ଅବସ୍ଥାନ କରୁଥିଲେ । ସେ ଏ ପ୍ରକାର ଆକ୍ରମଣର ପ୍ରତିରୋଧରେ ପ୍ରବଳ ପରାକ୍ରମରେ ମାତି ଯୁଦ୍ଧାରମ୍ଭ କଲେ ।

କବିଙ୍କ ଭାଷାରେ ଯୁଦ୍ଧ-ପରିବେଶର ବର୍ଣ୍ଣନା,

ଧନ୍ୟ ସେ ରମଣୀ ଧନ୍ୟ ମୃଦୁଳ ପ୍ରକୃତି ।
ଦେଖୁଁ ଦେଖୁଁ ବୀର ରସେ ଉଜଳି ଉଠିଲା ସ୍ମୃତି ।।

ଝାନ୍ସୀ ସୈନ୍ୟ ବାହିନୀର ପ୍ରବଳ ପ୍ରତାପୀ ବନ୍ଧୁ ତାନ୍ତିଆଟୋପି ପ୍ରଚଣ୍ଡ ବୀରତ୍ୱ ସହକାରେ ଯୁଦ୍ଧରେ ମାତିଲେ ।

କବି ରାଜା ବାସୁଦେବ ସ୍ଥଳ ବିଶେଷରେ ବୀରତ୍ୱବ୍ୟଞ୍ଜକ ଭାଷା ପ୍ରୟୋଗ ସଙ୍ଗେ ହାସ୍ୟରସର ଅବତାରଣା କରିଅଛନ୍ତି । ଯଥା :—

ରାଣୀଙ୍କ ପକ୍ଷ 'କାଲେଖାଁ' ଅଶ୍ୱସୈନ୍ୟନେତା ।
ଦୁଇଦମ୍ ଟାଣି ଦେଇ ହେଲା ଦୃଢ଼ଚେତା ।।
ଗୁରୁ ବକ୍ସି ଆଦି ଚମୂ ନାୟକ ସକଳ ।
ସୈନ୍ୟ ସାଜି ସିଂହଦ୍ୱାରେ ହୋଇଲେ ଗହଳ ।।
ସପତ୍ନୀକ ସହରଷେ କହେ ଲକ୍ଷ୍ମୀବାୟୀ ।
ନିଜ ବେଶ ଛାଡ଼ି ଯୁଦ୍ଧ ବେଶ ହୁଅ ଯାଇ ।।

ଶୁଣି ଗଙ୍ଗାବାଈ୍ଣୀ ଯୁଦ୍ଧ ବେଶେ ହେଲା ସାଜ ।
ଆଜ୍ଞା ପ୍ରମାଣେ ପ୍ରବେଶ ହେଲା ନିଜ ବାଜି ॥

× × ×

ଲକ୍ଷ୍ମୀବାଈ୍ଣୀ ବୀରଭୂଷା ପୁତ୍ରେ ବାନ୍ଧିଲା ।
ମୂର୍ତ୍ତିମତୀ ବୀର ଲକ୍ଷ୍ମୀ ପତ୍ରଶ୍ୱେ ରାଜିଲା ॥

କବି ରାଜା ବାସୁଦେବ ବୀରାଙ୍ଗନା ଲକ୍ଷ୍ମୀବାଈଙ୍କ ଯୁଦ୍ଧବେଶ ବର୍ଣ୍ଣନାରେ ଭାଷା ଓ ଭାବର ସାମଞ୍ଜସ୍ୟ ରକ୍ଷାକରି ପାରିଛନ୍ତି । ଯୁଦ୍ଧସ୍ଥଳର ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ଭାବେ ପ୍ରଦାନ କରିଅଛନ୍ତି ।

"ରକ୍ତ ଫୁହାର ବର୍ଷିଲା ରଣ ଚଉପାଶେ ।
ସାଜିଛି କି ବୀରଲକ୍ଷ୍ମୀ ମାଜଣା ସକାଶେ ॥
ଦେଖୁଁ ଦେଖୁଁ ରକ୍ତମୟୀ ଅଖିଳ ଧରଣୀ ।
ବାସନ୍ତୀ କିଂଶୁକ ପୁଷ୍ପେ ହେଲା କି ବରଣୀ ?
ମରଣ ବରଣୀ ମଧୁ ହାସ ଆଡ଼ମ୍ବରେ,
ମୋହିତ ହୋଇପଡ଼ନ୍ତି ବୀରମାନେ ଡରେ ।

× × ×

ଇଂରାଜ ସୈନ୍ୟ-ଅଟବୀ-ବସନ୍ତ-ବିହାରୀ
ମୃଗୟା କରୁଛି ନରସିଂହ ମାରି ମାରି ।
କି ବା ରକ୍ତାଂଶୁକ ପରିଧାନୀ ବନଦେବୀ
ବୀରବେଶେ ଖେଳୁଛନ୍ତି ଅଶ୍ୱପୃଷ୍ଠସେବୀ ।"

ତେଣୁ କାଲ୍ପୀଦୁର୍ଗରେ ତାନ୍ତିଆଟୋପି ସୈନ୍ୟସହିତରେ ଅବସ୍ଥାନ କରୁଥିଲେ । ରାଣୀ ଲକ୍ଷ୍ମୀବାଈ, ଗଙ୍ଗାବାଈ ସେନାପତି ସହିତ ମନ୍ତ୍ରଣା କରି ତାନ୍ତିଆଟୋପି ନିକଟକୁ ଗଲେ । ଏଣେ ବ୍ରିଟିଶ ସୈନ୍ୟବାହିନୀ ଗହଣରେ 'ହିଉରୋଜ' ଅବାଧରେ ଝାନ୍‌ସୀ ଦୁର୍ଗ ଅବରୋଧ କଲେ । ଝାନ୍‌ସୀ ରାଣୀ ଓ ତାନ୍ତିଆଟୋପିର ମନ୍ତ୍ରଣା ଜାଣି ବ୍ରିଟିଶ ସୈନ୍ୟବାହିନୀ କାଲ୍ପୀଦୁର୍ଗ ଆକ୍ରମଣ କଲେ । ଫଳତଃ ତାନ୍ତିଆଟୋପି ଓ ରାଣୀ ଲକ୍ଷ୍ମୀବାଈ ଆତ୍ମଗୋପନ କଲେ । ଇଂରେଜର ବିଜୟଧ୍ୱଜ ଚତୁର୍ଦ୍ଦିଗରେ ନିନାଦିତ ହେଲା । ଏହା ହିଁ 'ବୀରବାମା' କାବ୍ୟର ସ୍ୱରୂପ ।

'ବୀରବାମା' ଭାରତୀୟ ସାଂସ୍କୃତିକ ପରମ୍ପରାର ଶ୍ରେଷ୍ଠ ନିର୍ଯ୍ୟାସ । ଯହିଁରେ ଜଣେ ଭାରତୀୟ ରମଣୀଙ୍କର ଯୋଦ୍ଧାବେଶରେ ସଦମ୍ଭ ଓ ସଦର୍ପରେ ଯୁଦ୍ଧ

ସମ୍ପାଦନ ପୂର୍ବକ ସ୍ୱରାଜ୍ୟର ସମ୍ମାନ ତଥା ସ୍ୱାଭିମାନର ସୁରକ୍ଷା ସରଳ ପ୍ରାଞ୍ଜଳ ଭାବେ ରୂପ ଲାଭ କରିଛି, ଯାହାକି ସଂସ୍କୃତ ପୀଠ ଭାରତ ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ସ୍ଥଳ ବିଶେଷରେ ଅଳଙ୍କାରପ୍ରିୟ କବି ରାଜା ବାସୁଦେବ କେତେକ ଅଳଙ୍କାର ପ୍ରୟୋଗ କରି ତାର କାବ୍ୟିକ ମୂଲ୍ୟ ପ୍ରଦାନ କରିଛନ୍ତି । କାବ୍ୟଟି ଐତିହାସିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ହେବାରୁ ବର୍ଣ୍ଣନାତ୍ମକ ଶୈଳୀରେ ଆତ୍ମପ୍ରକାଶ କରିଛି । କାବ୍ୟଟି ବୀରତ୍ୱବ୍ୟଞ୍ଜକ ଭାଷା ସଂଯୋଜନାରେ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇ-ପାରିଛି । ସ୍ଥାନେ ସ୍ଥାନେ ଶବ୍ଦକାଠିନ୍ୟ ପରିଲକ୍ଷିତ ହେଲେହେଁ ତାହା ଦୁର୍ବୋଧ ନୁହେଁ । ଏହା ତାଙ୍କ ରଚନା-ଶୈଳୀର ବୈଶିଷ୍ଟ୍ୟ । 'ବୀରବାମା' ଅସମ୍ପୂର୍ଣ୍ଣ କାବ୍ୟ, କାରଣ ତାର ଭୂମିକାରେ କବି ଉଲ୍ଲେଖ କରିଛନ୍ତି, "ଏପରି ସ୍ଥଳେ ଆମ୍ଭର ଏତାଦୃଶୀ ସହୃଦୟାହ୍ଲାଦନୀ ପ୍ରବୃତ୍ତି ଜନସମାଜରେ ବିଷୋଦ୍‌ଗାରିଣୀ ହେବ ନାହିଁ । ଆମ୍ଭର କୌଣସି ଉଦ୍ଦେଶ୍ୟ ନୁହେଁ କେବଳ ଲକ୍ଷ୍ମୀବାଈ ଯାହା ହିନ୍ଦୁକୁଳ ଲବଣ୍ୟସରିଃ ସରୋଜିନୀରେ କୁଳିଶ ସହସ୍ତୁ ତାର ଅପୂର୍ବଚ୍ଛଟା ଦେଖାଇଅଛି, ତାହାହିଁ ପାଠକମାନଙ୍କୁ ଜଣାଇବାର ବାସନା ମାତ୍ର । ଲକ୍ଷ୍ମୀବାଈର ଗୋଆଲିୟର ଅଧିକୃତ ଏବଂ ସେଠାଯୁଦ୍ଧ ଓ ତହିଁରେ ଦେହତ୍ୟାଗାଦି ଆଉ ଗୋଟିଏ ସର୍ଗରେ ବର୍ଣ୍ଣିତ ହେବାକୁ ସମସ୍ତାପେକ୍ଷୀ ହୋଇଅଛି ।

ଏହାର କେତେକ ସ୍ଥଳରେ ମରହଟ୍ଟୀ ସାହିତ୍ୟରୁ ତଥ୍ୟ ସଂଗ୍ରହ କରି ଏବଂ ତାର ଯଥାଯଥ ବିନିଯୋଗ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ସେ ପ୍ରୟାସୀ ଥିଲେ ।

**ଜହ୍ନମାମୁଁ** କବିତାରେ କବି ବାସୁଦେବଙ୍କ ଚନ୍ଦ୍ରାଧାର :—

'ଜହ୍ନମାମୁଁ' ରାଜ କବି ବାସୁଦେବଙ୍କ ଏକ ହାସ୍ୟରସାତ୍ମକ କବିତା । ସାଧାରଣତଃ ଲୌକିକ ମତରେ ଶିଶୁମାନଙ୍କ ମନରେ ଆହ୍ଲାଦ ସୃଷ୍ଟି କରିବା ଅଭିପ୍ରାୟରେ 'ଜହ୍ନମାମୁଁ'ର ସମ୍ବୋଧନ । ତେଣୁ କବି ଏଠାରେ ଦ୍ୱାଦଶ ପଦ ସମ୍ବଳିତ କବିତା ଖଣ୍ଡିକ ରଚନା କରି ଲୌକିକ ମତକୁ ସ୍ଥାନ ଦେଇଅଛନ୍ତି । କବିଙ୍କ ବର୍ଣ୍ଣନା ଶୈଳୀ ଅତ୍ୟନ୍ତ ଚମତ୍କାରିକ ଏବଂ କବିତାଟି ଉପମାଳଙ୍କାର ପରିଶୋଭିତ ହେତୁ ହୃଦୟସ୍ପର୍ଶୀ ।

ଦୃଷ୍ଟାନ୍ତ ସ୍ୱରୂପ ପ୍ରଥମ ପଦ—

"ଅମୃତରସର ଘରିଇ ମଞ୍ଜୁଳ    ମାମୁଁ, ତହିଁରେ ତ ପଙ୍କଜଫୁଲ
ଉଜ୍ଜ୍ୱଳ କୁମୁଦ ତାରା ସଙ୍କୁଳ,    ଗନ୍ଧ ଗାହରେ ହୋଇଛି ଆକୁଳ
ଚନ୍ଦ୍ରିକା ଲହରୀ
ଘନ ଘନ ତହିଁ ଅଛି ବିହରି ।"

ସମଗ୍ର କବିତାଟି ମାର୍ମିକ ସୁଲଳିତ ପଦବିନ୍ୟାସ ଗୁଣରେ ସୁଶୋଭିତ ଓ ଭାବଗର୍ଭକ—ତେଣୁ ପାଣ୍ଡିତ୍ୟପୂର୍ଣ୍ଣ । ସାଧୁଶବ୍ଦ ସଂଯୋଜିତ ହୋଇ ଭାବ-ପ୍ରକାଶକ ହୋଇଅଛି । କେତେକ ସୁନ୍ଦର ଉଦାହରଣ ସ୍ୱରୂପ,

'ମାମୁଁ ଅପଘନ ବଡ଼ ଧବଳ'—
'ମାମୁଁ ହୋଇଛି ସଂସାର ପ୍ରଦୀପ'—
ହିରଣ୍ୟଗର୍ଭଙ୍କ ସୁବର୍ଣ୍ଣ ପିଠା— ।,

କେତେକ ଭାବବ୍ୟଞ୍ଜକ ହୃଦସ୍ପର୍ଶୀ ବର୍ଣ୍ଣନା,

"ଚନ୍ଦ୍ରିକା ପାଉଁଶ ବୋଳି ଦେହରେ
ତାରକା ଅସ୍ଥି ଲମ୍ବାଇ ଗଳାରେ
କପାଳ କରି ଧରିଛି ମାମୁଁଙ୍କୁ
ଚହିଁ ରହିଛି ସିଦ୍ଧ ଅଞ୍ଜନକୁ
ରଜନୀ କାପାଳୀ,
ଭ୍ରମୁଛି ଏ ଦ୍ୱୀପ ସେ ଦ୍ୱୀପ ମିଳି ।"

କେତେକ ସରଳ ହାସ୍ୟୋଦ୍ଦୀପକ ବର୍ଣ୍ଣନା,

କେହି କେହି ଦେଖି ମାମୁଁ କଳଙ୍କ
କହୁଥାନ୍ତି ଏହା ସାଗରପଙ୍କ
ଦିନେ ଗିଳୁଥିଲି ରାହୁ ମାମୁଁଙ୍କୁ,...... ।

ସାଧାରଣ ଓ ସ୍ୱାଭାବିକ ଗୁଣରେ ଚନ୍ଦ୍ରୋଦୟର ବର୍ଣ୍ଣନା ଅତ୍ୟନ୍ତ ପ୍ରାଣବନ୍ତ ହୋଇଛି । ଯଥା :—

"ପୂର୍ବ ଅଚଳେ ମାମୁଁ ଉଭା ହୋଇ,
ଲହରୀ ସଦୃଶ କର ବଢ଼ାଇ
କୁମୁଦଦଳ କବାଟ ଫିଟାଇ,
କର କାକର ଦିଅନ୍ତେ ଲଗାଇ
ଚମକି ଉଠିଲା,
କୁମୁଦିନୀ ମନ୍ଦେ ମନ୍ଦେ ହସିଲା ।"

ଏଠାରେ ପ୍ରକୃତି ଜୀବନଧର୍ମୀ ରୂପ ଲାଭ କରିଛି । ତେଣୁ ତାଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟର ସତ୍ତାରେ ମାନବଧର୍ମ ପ୍ରକଟିତ । 'ପ୍ରକୃତି' ସ୍ତରେ ସ୍ତରେ ମାନବଧର୍ମୀ ହୋଇପଡ଼ିଛି ।

**'ଜଣାଣ'**

ରାଜା ବାସୁଦେବଙ୍କ ଆଧ୍ୟାତ୍ମିକ ଚେତନାର ନିର୍ଯ୍ୟାସ । 'ଜଣାଣ' କବିତାଟି ମଧ୍ୟଯୁଗୀୟ କବିମାନଙ୍କ ରଚନା ଶୈଳୀର ଅବଲମ୍ବନରେ ବିରଚିତ । ଯେହେତୁ ରାଜା ବୈଷ୍ଣବଧର୍ମାବଲମ୍ବୀ, ଥିଲେ ତେଣୁ ବିଷ୍ଣୁଭକ୍ତିର ଶ୍ରେଷ୍ଠ ନିଦର୍ଶନ ସ୍ୱରୂପ ପ୍ରଥମରେ ଶ୍ରୀକୃଷ୍ଣଙ୍କ, ଦ୍ୱିତୀୟରେ ବିଷ୍ଣୁ, ତୃତୀୟରେ ରାମଚନ୍ଦ୍ର, ଚତୁର୍ଥରେ ଯୁଦ୍ଧ ବର୍ଣ୍ଣନା ଓ ପଞ୍ଚମରେ ଶରଣାପତ୍ତି ପ୍ରସଙ୍ଗରେ ବର୍ଣ୍ଣନା କବିତାଟିକୁ ଭକ୍ତିରସୋଦ୍ଦୀପ୍ତ କରି ଗଢ଼ି ତୋଳିଛି । ତେଣୁ ଏହା ତାଙ୍କର ଗଭୀର ଭକ୍ତିମତ୍ତାର ଶ୍ରେଷ୍ଠ ନିଦର୍ଶନ ।

ଭାଷାର ଗୁରୁତ୍ୱ, ଭାବର ଗାମ୍ଭୀର୍ଯ୍ୟ, ଶୈଳୀର ମାଧୁର୍ଯ୍ୟ କବିତାଟିର ମୂଲ୍ୟାୟନ କରେ ।

ପ୍ରଥମ ପଦରେ ଅଳଙ୍କାର ପ୍ରୟୋଗ ତଥା ଶବ୍ଦବିନ୍ୟାସ ଅତି ମନୋମୁଗ୍ଧକର ଯଥା :—

"ଶ୍ୟାମସୁନ୍ଦର ମନ୍ଦର ଧର, ଆନନଶଶି ଶୋଭନ,
ନନ୍ଦନନ୍ଦନ ଛନ୍ଦ ନ କର ସୁନ୍ଦର ମୁଖ ଲୋଚନ ।"

ମଧ୍ୟଯୁଗୀୟ ରୀତିରେ କବି ରାଜା ବାସୁଦେବ ବର୍ଣ୍ଣନା କଲେ,

ବାମଣ୍ଡା ବାସୁଦେବ ନୃପତି, ନିତି ଶରଣ ମାଗେ କରି ବିନତି
ଆରତ ତ୍ରାଣ ଦୁଃଖନାଶନ, ଦୁଃଖକୁ ମୋର ମୋଚନ
ଦାସ ଗଲେ ନାଶ ଲଭିବ କି ଯଶ ନିନ୍ଦା ବହିବ ଆପଣ ।

ଏଥିରୁ କବିଙ୍କର ଭକ୍ତିମତ୍ତାର ପରିଚୟ ମିଳିଥାଏ । କବିତାଟି ଭାବଗର୍ଭକ ହେତୁ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇପଡ଼ିଛି ।

**ଧର୍ମଶିକ୍ଷା—ହିନ୍ଦୀରେ ସନାତନ ହିନ୍ଦୁଧର୍ମର ପୃଷ୍ଠଭୂମି—**

ରାଜକବି ସଚ୍ଚିଦାନନ୍ଦଙ୍କ ଲିଖିତ 'ଭୂମିକା' ଅନୁସାରେ, ରାଜା ବାସୁଦେବ ଜୀବଦ୍ଦଶାରେ ଉପନିଷଦର ଉପଦେଶାବଳୀ ଶ୍ୱେତକେତୁ ଉପାଖ୍ୟାନ ପର୍ଯ୍ୟନ୍ତ ସଂକଳିତ ହୋଇ ସୁରକ୍ଷିତ ଥିଲା । ତାଙ୍କ ସ୍ୱର୍ଗାରୋହଣ ପରେ ରାୟପୁର କଲେଜର ଅଧ୍ୟକ୍ଷଙ୍କ ଅନୁରୋଧ କ୍ରମେ ତାହାର ପ୍ରଚାର ନିମନ୍ତେ ରାଜକବି ସଚ୍ଚିଦାନନ୍ଦ ଏହାକୁ ପ୍ରକାଶ କରିଥିଲେ ।

'ଧର୍ମଶିକ୍ଷା' ହିନ୍ଦୀ ଭାଷାରେ ପ୍ରଣୀତ ଓ ଦେବନାଗରୀ ଅକ୍ଷରରେ ଲିଖିତ । ଏହାର ତିନୋଟି ଭାଗ ଯଥା :—

ପ୍ରଥମଭାଗ :—ମଙ୍ଗଳା ଚରଣ, ଦ୍ୱିତୀୟ ଭାଗ—'ହିନ୍ଦୁଧର୍ମ' ପ୍ରସଙ୍ଗ, ତୃତୀୟଭାଗ— ବ୍ୟାବହାରିକ ଧର୍ମ (ଜାତିଧର୍ମ) ପ୍ରସଙ୍ଗ ବର୍ଣ୍ଣିତ ।

ଧର୍ମଶିକ୍ଷାର ବିଷୟ ବିନ୍ୟାସ :—

ଗୂଢ଼ ଦାର୍ଶନିକ ତଥ୍ୟ ସମ୍ବଳିତ ପୁସ୍ତକ ଧର୍ମଶିକ୍ଷା ଏକ ଉପାଦେୟ ଗ୍ରନ୍ଥ । ପ୍ରଥମଭାଗରେ ଦାର୍ଶନିକ ରାଜା ବାସୁଦେବ ଧର୍ମର ମାହାତ୍ମ୍ୟ ପୌରାଣିକ ରୀତିରେ ବର୍ଣ୍ଣନା କରିବାକୁ ଯାଇ ପ୍ରକାଶ କଲେ, "ଓଁ ତତ୍ସତ୍"—

"ଶ୍ରୀହରିଂ ପରମାନନ୍ଦ ମୁପଦେଷ୍ଟାରମୀଶ୍ୱରମ୍ ।
ବ୍ୟାପକଂ ସର୍ବଲୋକାନାଂ କାରଣଂ ତଂ ନମାମ୍ୟହମ୍ ॥
"ଜୟ ଜୟ ସୁର ନାୟକ, ଜନସୁଖଦାୟକ ପ୍ରଣତପାଳ ଭଗବନ୍ତା
ଗୋ ଦ୍ୱିଜ ହିତକାରୀ ଜୟ ଅସୁରାରି ସିନ୍ଧୁସୁତା ପ୍ରିୟକାନ୍ତା"
"ପାଳୟ ସୁର ଧରଣୀ ଅଦ୍‌ଭୁତକରଣୀ ମର୍ମ ନ ଜାନେ କୋଇ
ଯୋ ସହଜ କୃପାଳ ଦୀନ ଦୟାଳ କର ଅନୁଗ୍ରହ ସୋଇ ।"

ଦ୍ୱିତୀୟ ଭାଗରେ 'ହିନ୍ଦୁଧର୍ମ' ପ୍ରସଙ୍ଗରେ—

୧—ହିନ୍ଦୁଧର୍ମର ସ୍ୱରୂପ—ସାକାର, ନିରାକାର ଈଶ୍ୱର ଉପାସନା
୨—ହିନ୍ଦୁଧର୍ମ ତଥା ସ୍ମାର୍ତ୍ତଧର୍ମ ବ୍ୟବସ୍ଥା—ମନର ପବିତ୍ରତାରକ୍ଷା, ଜ୍ଞାନ ଉପାର୍ଜନ ।

ଧର୍ମଶାସ୍ତ୍ରରେ ବର୍ଣ୍ଣାପରକ୍ଷା—ବିଚାରପୂର୍ବକ ଗୃହସ୍ଥଧର୍ମ ପାଳନ, ସ୍ନାନ ଶୌଚକ୍ରିୟା, ଇନ୍ଦ୍ରିୟ ସଂଯମ । ସତ୍ୟକଥନ ଓ ବ୍ୟବହାର, ସତ୍ସଙ୍ଗରକ୍ଷା, ଗୁରୁଜନଭକ୍ତି, ପୁତ୍ରାଦିରେ ବାତ୍ସଲ୍ୟମମତା ପ୍ରକାଶ, ଆଶ୍ରୟ ପ୍ରଦାନ, ପରୋପକାର ସାଧନ । ଏହି ଭାଗରେ ଶ୍ରୀମଦ୍ ଭଗବଦ୍‌ଗୀତା, ମହାଭାରତ (ଆଦିପର୍ବ) ରାମାୟଣ, ଭାଗବତ ଆଦିର ତଥ୍ୟଭିତ୍ତିକ ବିଷୟ ସଂଯୋଜିତ ।

"ଶ୍ରୁତିଶ୍ଚ ଭିନ୍ନା ସ୍ମୃତୟଶ୍ଚ ଭିନ୍ନା, ନାନା ମୁନୀନାଂମତୟଶ୍ଚ ଭିନ୍ନାଃ ।
ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ, ମହଜନୋ ଯେନ ଗତଃ ସ ପନ୍ଥା ॥
ଯେନାସ୍ୟ ପିତରୋ ଯାତାଃ, ଯେନ ଯାତାଃ ପିତାମହାଃ ।
ତେନ ଯାୟାତ୍ ସତାଂ ମାର୍ଗ ମେଷଧର୍ମଃ ସନାତନଃ ।"

ତେଣୁ ଧର୍ମନୀତି ବିଶାରଦ କବି ପଣ୍ଡିତ ରାଜା ବାସୁଦେବ ସ୍ମାର୍ତ୍ତଧର୍ମ ବିଧି ବ୍ୟବସ୍ଥାରେ ଦ୍ୱାଦଶ ନୀତିର ଉଲ୍ଲେଖ ପ୍ରଦାନ ପୂର୍ବକ ଧର୍ମ-ସମ୍ବନ୍ଧୀୟ ଜ୍ଞାନ ବିତରଣ କରନ୍ତି ।

ତୃତୀୟ ଭାଗରେ ବ୍ୟାବହାରିକ ଧର୍ମ (ଜାତିଧର୍ମ) ସମ୍ପର୍କରେ ଲେଖକ ସମ୍ୟକ୍ ଧାରଣା ପ୍ରଦାନ କରିଛନ୍ତି ।

ତାଙ୍କ ମତରେ ଧର୍ମ ମୁଖ୍ୟତଃ ୩ ପ୍ରକାର—

(କ) ପାରମାର୍ଥିକ ଧର୍ମ (ଖ) ପାରଲୌକିକ ଧର୍ମ (ଗ) ବ୍ୟାବହାରିକ ଧର୍ମ ପୂର୍ବ ଭାଗରେ ପ୍ରଥମ ଦୁଇଧର୍ମ ସୂଚିତ । ଏଠାରେ 'ଜାତିଧର୍ମ' ବର୍ଣ୍ଣିତ ।

ବ୍ରାହ୍ମଣଧର୍ମ—ଷଟ୍‌କର୍ମ ପାଳନ ଯଥା :—ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ, ପ୍ରତିଗ୍ରହ ।

କ୍ଷତ୍ରିୟଧର୍ମ ରାଜଧର୍ମ—ପ୍ରଜାପାଳନ, ଯୁଦ୍ଧ, ଅଧ୍ୟୟନ, ଯଜନ, ଦାନ ।

ବୈଶ୍ୟଧର୍ମ—ବାଣିଜ୍ୟ, କୃଷି, ଅଧ୍ୟୟନ, ଦାନ, ପୂଜନ ।

ଶୂଦ୍ରଧର୍ମ—ବିଦ୍ୟାଶିକ୍ଷା, ଦାନ, ଈଶ୍ୱରସେବା, କୃଷି ।

ଏ କ୍ଷେତ୍ରରେ ଧର୍ମଜ୍ଞ ରାଜା ବାସୁଦେବ ମନୁସଂହିତା, ପରାଶର ସଂହିତାଦିର କେତେକ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ତଥ୍ୟର ଅବତାରଣା କରିଅଛନ୍ତି । ତେଣୁ "ଯସ୍ମିନ୍ ଦେଶେ ଯ ଆଚାରଃ ପାରମ୍ପର୍ଯ୍ୟାତ୍ତୁ ବିଧୀୟତେ" ଭାବରେ ସର୍ବଥା ପାଳନୀୟ ।

ଏଥିରେ 'ବେଦ'ର ପ୍ରକାରଭେଦ ଯଥା ଋକ୍, ସାମ, ଯଜୁର୍ବେଦ ଓ ଅଥର୍ବବେଦ । ମହାପୁରାଣ—ମହାଭାରତ, ରାମାୟଣ—

ଅଷ୍ଟାଦଶ ପୁରାଣ, ଯଥା—ମତ୍ସ୍ୟ, ମାର୍କଣ୍ଡେୟ, ଭବିଷ୍ୟ, ଭାଗବତ ବହ୍ନି, ବାମନ, ବରାହ, ବ୍ରହ୍ମବୈବର୍ତ୍ତ, ବ୍ରହ୍ମାଣ୍ଡ, ବ୍ରହ୍ମା, ଆଗ୍ନେୟ, ନାରଦୀୟ, ଗରୁଡ଼, ଲିଙ୍ଗ, କୂର୍ମ, ସ୍କନ୍ଦ, ପଦ୍ମ ପ୍ରଭୃତି ପୁରୁଷ ଓ ଉପପୁରାଣାଦିର ନାମୋଲ୍ଲେଖ କରିଛନ୍ତି ।

ଅବତାର, ହିନ୍ଦୁ ସଂପ୍ରଦାୟ, ପରକାଳ, ଈଶ୍ୱର ସେବା, ଜୀବାତ୍ମା, ଶ୍ୱେତକେତୁ ଉପାଖ୍ୟାନ ପ୍ରଭୃତିର ସଂକ୍ଷିପ୍ତ ସୂଚନା ସହଜ ଓ ସରଳ ହିନ୍ଦୁ ଭାଷାରେ ମାର୍ମିକଭାବରେ ଉଲ୍ଲିଖିତ ହେବାରୁ ସହୃଦୟଗ୍ରାହ୍ୟ ।

## ପଣ୍ଡିତ କବି ସୁସାହିତ୍ୟିକ ରାଜା ବାସୁଦେବଙ୍କ ବିବିଧ ସାହିତ୍ୟକୃତି ସମ୍ପଦ :

(କ) କିଷ୍କିନ୍ଧ୍ୟା ବିବରଣ :—

ପର୍ଯ୍ୟଟନ ପ୍ରିୟରାଜା ବାସୁଦେବ ସୁଢ଼ଳଦେବ ପର୍ଯ୍ୟଟନ ତଥା ଦେଶ ପରିଭ୍ରମଣ ଅଭିପ୍ରାୟରେ ଭାରତର ଦାକ୍ଷିଣାତ୍ୟ ଅଭିମୁଖେ ଯାତ୍ରା କଲେ । ସେ ଯାତ୍ରା କାଳରେ ମାନ୍ଦ୍ରାଜରୁ ଯାଇ ରାମାୟଣୋକ୍ତ ବାଲିରାଜାର ରାଜ୍ୟ 'କିଷ୍କିନ୍ଧ୍ୟା' ପରିଦର୍ଶନ କଲେ । ଅନତି ଦୂରରେ ପମ୍ପାସରୋବର, ମାଲ୍ୟବନ୍ତ ପର୍ବତ, ଋଷ୍ୟମୂକ ପର୍ବତ, ତୁଙ୍ଗଭଦ୍ରା ନଦୀ, ଦୁଇଟି ପର୍ବତ ଗୁମ୍ଫା ଦେଖି ଅବଲୋକନ କରି ଅପାର ଆନନ୍ଦ ଲାଭ କଲେ । ଇତ୍ୟବସରରେ ରାମାୟଣୋକ୍ତ ଘଟଣା ମାନସ ଓ ହୃଦୟ

ପଟ୍ଟରେ ପ୍ରତିଧ୍ୱନିତ ହେଲା । ତେଣୁ କବିଙ୍କ ଲେଖନୀ 'କିଷ୍କିନ୍ଧ୍ୟା ବିବରଣ' ନାମକ ଏକ ଉପାଦେୟ କାବ୍ୟଗ୍ରନ୍ଥ ରଚନାରେ ବ୍ରତୀ ହେଲା । ଯାହାକି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଅନବଦ୍ୟକୃତି । ଏଥିରେ ରାମଚନ୍ଦ୍ର ସୁଗ୍ରୀବ ମିତ୍ରତା, ବାଳିରାଜାର ଅତ୍ୟାଚାର ଓ ତା ସଙ୍ଗେ ଯୁଦ୍ଧ ଓ ବାଳିରାଜାର ସମାଧି ପ୍ରସଙ୍ଗ ବର୍ଣ୍ଣିତ ।

(ଖ) ପଣ୍ଡିତ ରାଜା ବାସୁଦେବ ଅନୁବାଦ ସହ ସଟୀକଚଣ୍ଡୀ ମୁଦ୍ରିତ ଓ ପ୍ରଚାରିତ କରି ପଣ୍ଡିତ ସମାଜରେ ସମ୍ମାନ ଲାଭ କରିଥିଲେ ।

(ଗ) 'ଜଗନ୍ନାଥ ଅଷ୍ଟକ' ନାମକ ଏକ ସଂକ୍ଷିପ୍ତ ସଂସ୍କରଣ ପୁନଃ ପ୍ରକାଶ କରି ସମାଜରେ ଆଧ୍ୟାତ୍ମିକ ଚେତନା ସୃଷ୍ଟି କଲେ ।

(ଘ) ତତ୍କାଳୀନ 'ଗଦାଧରପଦ୍ଧତି', ଦୁଷ୍ପ୍ରାପ୍ୟ ହେବାରୁ ରାଜ୍ୟବ୍ୟୟରେ ତାର ପୁନର୍ମୁଦ୍ରଣ ସମ୍ପାଦନ କରି ଅଶେଷ ହିତ ସାଧନ କଲେ ।

(ଙ) 'ଦଶକର୍ମପଦ୍ଧତି', (ଚ) 'ମୁକ୍ତିକୋପନିଷଦ୍' (ଛ) 'କବିକଳ୍ପଲତା' (ଜ) 'ସାହିତ୍ୟରତ୍ନାକର' ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନ ସଟୀକ ଓ ସାନୁବାଦ ମୁଦ୍ରିତ, ପ୍ରକାଶିତ ତଥା ପ୍ରଚାରିତ କରି ସମଗ୍ର ଭାରତରେ ସଂସ୍କୃତ ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କରିଥିଲେ । ସାହିତ୍ୟିକ ପଣ୍ଡିତ ରାଜା ବାସୁଦେବ ସୁଢ଼ଳଦେବ ଓଡ଼ିଆ, ସଂସ୍କୃତ ତଥା ହିନ୍ଦି ସାହିତ୍ୟର ଉନ୍ନତି କଳ୍ପେ ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଯେଉଁ ପଦକ୍ଷେପ ଗ୍ରହଣ କଲେ, ତାହା ସଦାସର୍ବଥା ଉଚ୍ଚ ପ୍ରଶଂସନୀୟ, ଅନନ୍ୟ ସାଧାରଣ, ସ୍ୱାଗତ ଯୋଗ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଫଳତଃ ବାମଣ୍ଡା ଶିକ୍ଷା ଓ ସାହିତ୍ୟର ଉନ୍ନତି କ୍ଷେତ୍ରରେ ତତ୍କାଳୀନ ଅନ୍ୟ ଗଡ଼ଜାତ ତଥା ରାଜ୍ୟମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲା ତାଙ୍କର ଏହା ଏକ ବିଶିଷ୍ଟ ଅବଦାନ, ଯାହାକି ମୃଗନାଭି କସ୍ତୁରୀ ସଦୃଶ ଯୁଗେ ଯୁଗେ ଚିରନ୍ତନ ସୌରଭ ବିତରଣ ପୂର୍ବକ ଦେଶ ଦେଶାନ୍ତର ତଥା ଦିଗଦିଗନ୍ତ ଆମୋଦିତ କରୁଥିବ ଏଥିରେ ସନ୍ଦେହ ନାହିଁ ।



## ପଞ୍ଚମ ପରିଚ୍ଛେଦ

# ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବ୍ୟକ୍ତିତ୍ୱ ଓ ସାଧାରଣ ଘଟଣାବଳୀ

### 'ରାଜା ସାର୍ ବାସୁଦେବଙ୍କ ପାରିବାରିକ ଜୀବନ'

ରାଜା ବାସୁଦେବ ସୁଢ଼ଳଦେବ ୧୮୬୯ ସାଲରେ ରାଜସିଂହାସନ ଆରୋହଣ କଲେ । ରାଜା ବ୍ରଜସୁନ୍ଦର ଜୀବିତାବସ୍ଥାରେ କୁମାର ବାସୁଦେବଙ୍କ ପରିଣୟ ନିମନ୍ତେ କଳାହାଣ୍ଡିର ରାଜା ଉଦିତ ପ୍ରତାପ ଦେବଙ୍କ ମଧ୍ୟମାକନ୍ୟା ଗିରିରାଜ କୁମାରୀଙ୍କୁ ନିର୍ବାଚିତ କରିଥିଲେ । ସେହି ରାଜା ଦେଶରକ୍ଷା ପୂର୍ବକ କୁମାର ବାସୁଦେବ ଲକ୍ଷ୍ମୀସଦୃଶୀ ରୂପବତୀ ଓ ସରସ୍ୱତୀ ସଦୃଶୀ ଗୁଣବତୀ ଗିରିରାଜ କୁମାରୀଙ୍କ ପାଣି ଗ୍ରହଣ କଲେ ୧୮୭୧ ମସିହାରେ । ସେ ସଙ୍ଗୀତ ପ୍ରବୀଣା ଓ ସଂସ୍କୃତଶାସ୍ତ୍ରାଭିଜ୍ଞା ଥିଲେ । ତାଙ୍କର ସଂସ୍କୃତ ଚର୍ଚ୍ଚା ଓ ଶ୍ଳୋକ ରଚନା ପଣ୍ଡିତ ରାଜା ବାସୁଦେବଙ୍କୁ ବିଶେଷ ଭାବେ ଅନୁପ୍ରାଣିତ କଲା । ତା ସଙ୍ଗେ ସଙ୍ଗେ ନବ ବିବାହିତା ପତ୍ନୀର ତାଳମାନ ଲୟ ନିର୍ଜିତ ମଧୁର ସଙ୍ଗୀତର ପ୍ରାଣମୟୀ ମୂର୍ଚ୍ଛନା ସଙ୍ଗୀତଜ୍ଞ ରାଜା ବାସୁଦେବଙ୍କୁ ବିଶେଷ ରୂପେ ଆପ୍ୟାୟିତ କଲା । ଏହି ନିମନ୍ତେ ଏକବର୍ଷ ଅତିକ୍ରାନ୍ତ ହେବା ପରେ ତା ୩ । ୫ । ୧୮୭୨ରେ ଟୀକାୟତ୍ ସଚ୍ଚିଦାନନ୍ଦ ଦେବଙ୍କର ଆବିର୍ଭାବ ତାଙ୍କର ପାରିବାରିକ ଜୀବନକୁ ଅତ୍ୟନ୍ତ ମଧୁମୟ କରିଦେଲା । ମାତ୍ର ସଚ୍ଚିଦାନନ୍ଦଙ୍କୁ ଏକବର୍ଷ କେତେମାସ ହେବା ପରେ ପ୍ରିୟତମା ପତ୍ନୀ ଗିରିରାଜ କୁମାରୀଙ୍କ ସ୍ୱର୍ଗାରୋହଣ ରାଜା ବାସୁଦେବଙ୍କ ପାରିବାରିକ ଜୀବନକୁ ଦୁଃଖର ଘନାନ୍ଧକାରରେ ନିମଜ୍ଜିତ କଲା । ଏହି ପତ୍ନୀବିଚ୍ଛେଦ କ୍ଲେଶ କ୍ରମଶଃ ଘନୀଭୂତ ହେବାରୁ ମାନସିକ ପରିବର୍ତ୍ତନ ସକାଶେ ତୀର୍ଥାଟନ ଓ ଦେଶ ପରିଭ୍ରମଣ ଅଭିପ୍ରାୟରେ ଉଦ୍ୟତ ହେଲେ ଶିଶୁପୁତ୍ର ସଚ୍ଚିଦାନନ୍ଦଙ୍କୁ ରାଜମାତା ବିଜୟ କୁମାରୀଙ୍କ ହସ୍ତରେ ଅର୍ପଣ କରି ।

ରାଜପ୍ରତିନିଧି କର୍ଣ୍ଣେଲବ୍ରୁଇଙ୍କ ସଙ୍ଗେ ଆଲୋଚନା କରି କିଛୁଦିନ ପାଇଁ ମାନସିକ କ୍ଲେଶ ଅପନୋଦନ ନିମନ୍ତେ ରାଜ୍ୟଭାର ଜ୍ୟେଷ୍ଠ କର୍ମଚାରୀଙ୍କ ହସ୍ତରେ ଅର୍ପଣ କଲେ । ତାଙ୍କର ପରାମର୍ଶ କ୍ରମେ ପ୍ରଥମେ ସମ୍ବଲପୁରରୁ ନଦୀପଥରେ 'କଟକ' ଅଭିମୁଖେ ଯାତ୍ରା କଲେ ।

### ତୀର୍ଥାଟନ ତଥା ଦେଶପର୍ଯ୍ୟଟନରେ ରାଜା ବାସୁଦେବ .—

ପ୍ରାଣପ୍ରିୟା ପତ୍ନୀ-ବିଚ୍ଛେଦ କ୍ଲେଶ ଯୋଗୁଁ ରାଜା ବାସୁଦେବଙ୍କ ବୈରାଗ୍ୟ ଜାତ ହେଲା । ତେଣୁ ସେ ପତ୍ନୀବିୟୋଗଜନିତ ଦୁଃଖର ଅପନୋଦନ ନିମନ୍ତେ

ତୀର୍ଥାଟନ ତଥା ଦେଶ ଭ୍ରମଣ ଉଦ୍ଦେଶ୍ୟରେ ଯାତ୍ରା କଲେ । ସଙ୍ଗରେ ପଣ୍ଡିତ ବଳରାମ ବିଦ୍ୟାରତ୍ନ, ପୂର୍ଣ୍ଣାନନ୍ଦ ମହାନ୍ତ୍ର, ଚକ୍ରଧର ଦାଶ, ଶମ୍ଭୁପଣ୍ଡା, ପାଚକ ତଥା ଭୃତ୍ୟବର୍ଗ ଯାତ୍ରା କଲେ ସମ୍ବଲପୁରରୁ ମହାନଦୀ ପଥରେ କଟକ ଅଭିମୁଖେ । ନିବିଡ଼ ଅରଣ୍ୟାନୀ ପରିବେଷ୍ଟିତ ତଟପ୍ରଦେଶ ଓ ସ୍ଥଳ ବିଶେଷରେ ତଟପ୍ରଦେଶସ୍ଥ ଜନପଦର ରମଣୀୟ ଚିତ୍ତାକର୍ଷକ ସୌନ୍ଦର୍ଯ୍ୟ ତାଙ୍କ କବି ପ୍ରାଣକୁ ଆପ୍ୟାୟିତ କଲା । ବାଟରେ ସୋନପୁର, ବୌଦ୍ଧ, ଦଶପଲ୍ଲା (ମାଡକୋଣିଆଗଣ୍ଡ) ପ୍ରଭୃତି ରାଜ୍ୟ ଅତିକ୍ରମ କାଳରେ ମହାନଦୀର ଉଭୟ ତଟ ପ୍ରଦେଶର ଅରଣ୍ୟଶୋଭା, ନଦୀର ନୀଳ ଜଳରାଶିର ବିବିଧ ଗତିବିଧି, ଜଳଚରଜୀବ ସର୍ବୋପରି ବହୁ ଦେବ ଦେବୀଙ୍କ ମନ୍ଦିରାଦି ତୀର୍ଥସ୍ଥାନ ପର୍ଯ୍ୟଟନ କରିବାର ସୁଯୋଗ ଲାଭ କଲେ । ଏଥିପାଇଁ ତାଙ୍କ କବିପ୍ରାଣର ଭାବରାଜିର ଗମ୍ଭୀର ଉଚ୍ଛ୍ୱାସର ନିଛକ ପରିପ୍ରକାଶ ରୂପେ 'ଛନ୍ଦୋମାଳା' କାବ୍ୟ (୧୮୯୬) ଆତ୍ମପ୍ରକାଶ କଲା ।

ରାଜା କଟକର ଯୋବ୍ରାଠାରେ ଉପନୀତ ହୋଇ ସୁସଜ୍ଜିତ ବାସ-ଭବନରେ ଅବସ୍ଥାନ କଲେ । ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ସହାୟତାରେ କଟକର ବିଭିନ୍ନ ସ୍ଥାନ ପରିଦର୍ଶନ କଲେ । ସେ ସମୟରେ ପ୍ରସିଦ୍ଧି-ଲାଭ କରିଥିବା 'କଟକ ପ୍ରିଣ୍ଟିଂ କୋମ୍ପାନୀ' ଓ 'ମିଶନ୍ ପ୍ରେସ୍' ନାମକ ଦୁଇଟି ମୁଦ୍ରାଯନ୍ତ୍ର ପରିଦର୍ଶନ କରି ତଦନୁରୂପ ମୁଦ୍ରାଯନ୍ତ୍ର ଦେବଗଡ଼ରେ ପ୍ରତିଷ୍ଠା କରିବାର ମନସ୍ଥ କଲେ । ତା'ପରେ କଟକ କମିଶନର ସାହେବଙ୍କ ଅଦାଲତଗୃହ ପରିଦର୍ଶନ କଲେ । ଏତଦ୍‌ବ୍ୟତୀତ କଟକର କେତେକ ଉନ୍ନତିମୂଳକ ସଂସ୍ଥା ପରିଦର୍ଶନ କରି ନିଜ ରାଜ୍ୟରେ ପ୍ରତିଷ୍ଠା କରିବାର ବାସନା ପୋଷଣ କଲେ । କଟକରୁ ଚାନ୍ଦବାଲି ଯାତ୍ରା କଲେ । ସେତେବେଳେ ତାହା ଏକ ଶ୍ରେଷ୍ଠ ବନ୍ଦର ଥିଲା । ସେଠାରୁ କଲିକତା ଅଭିମୁଖେ ସମୁଦ୍ର ପଥରେ ଯାତ୍ରା କଲେ । କଲିକତାର 'କେନିଂ ଲାଇବ୍ରେରୀ'ର ଅଧ୍ୟକ୍ଷ ଯୋଗେଶ ଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କ ନିକଟକୁ ତାରବାର୍ତ୍ତା ଦେଲେ; ସେଠାରେ ଜୋଡ଼ାସାଙ୍କୋର 'ସଂସ୍କୃତ ପ୍ରେସ୍'ର (ସ୍ୱର୍ଗତଃ କାଳିପ୍ରସନ୍ନ ସିଂହଙ୍କ ପ୍ରତିଷ୍ଠିତ)ର ବାସଭବନରେ ଅବସ୍ଥାନ କଲେ ।

କଲିକତାରେ ଅବସ୍ଥାନ କାଳରେ ରାଜା ବାସୁଦେବ ବହୁ ଉଚ୍ଚପଦସ୍ଥ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲେ । ସେମାନଙ୍କ ମଧ୍ୟରେ ବଙ୍ଗଳାର ପ୍ରସିଦ୍ଧ ସାହିତ୍ୟ-ସାଧକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଅନ୍ୟତମ । ସେ ଜଣେ ଶ୍ରେଷ୍ଠ ଜ୍ଞାନୀ ଓ ଗୁଣୀ ସୁପୁରୁଷ । ତାଙ୍କ ବାସଭବନରେ ତାଙ୍କୁ ସାକ୍ଷାତ୍ କରି ଶାସ୍ତ୍ରୀୟ ଆଲୋଚନା କଲେ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ରାଜା ବାସୁଦେବଙ୍କ ଅଗାଧ ପାଣ୍ଡିତ୍ୟରେ ପ୍ରୀତ ହେଲେ ଓ ଉଭୟଙ୍କ ମଧ୍ୟରେ ବନ୍ଧୁତା ଗାଢ଼ତର ହେଲା ।

ରାଜା ବାସୁଦେବ କଲିକତାରେ ଏକମାସ ଅବସ୍ଥାନ କଲେ । ଅବସ୍ଥାନ କାଳରେ ପ୍ରଥମେ 'କାଳିଘାଟ' ଦେବତା ଦର୍ଶନ ଓ ସଂସ୍କୃତପ୍ରିୟ ରାଜା 'ସଂସ୍କୃତ-କଲେଜ' ପରିଦର୍ଶନ କଲେ । ତା ପରେ ପ୍ରେସିଡେନ୍‌ସି କଲେଜ, ଏସିଆଟିକ୍ ସୋସାଇଟିର ସଭାଗୃହ, ଯାଦୁଘର, ଆଲିପୁରସ୍ଥିତ ଚିଡ଼ିଆଖାନା, ଇଡ଼େନ ଉଦ୍ୟାନ, ଶିବପୁରସ୍ଥିତ ଉଦ୍‌ଭିଦ ଉଦ୍ୟାନ, ପରିଦର୍ଶନ ଦ୍ୱାରା ପରିଭ୍ରମଣ ଜନିତ ଅନୁଭୂତିଲବ୍ଧ ପ୍ରଚୁର ଜ୍ଞାନ ଲାଭ କଲେ ।

ଜ୍ଞାନଲିପ୍‌ସୁ ରାଜା ବାସୁଦେବ ସୁଢ଼ଳଦେବ କେବଳ ପୁସ୍ତକଲବ୍ଧ ଜ୍ଞାନ ଉପରେ ନିର୍ଭର ନ କରି, ବାସ୍ତବ ତଥା ପ୍ରତ୍ୟକ୍ଷ ଜ୍ଞାନ ନିମିତ୍ତ ଗୁରୁତ୍ୱ ଆରୋପ କରୁଥିଲେ । ତେଣୁ ଦେଶ ପରିଭ୍ରମଣ ତାଙ୍କର ପ୍ରବଳ ଜ୍ଞାନଲିପ୍‌ସାକୁ ଚରିତାର୍ଥ କରିବାରେ ସହାୟକ ହେଲା । ତାପରେ ସେ ଶ୍ରୀରାମପୁର କାଗଜକଳ ଓ ଚଟକଳ ଆଦି ସନ୍ଦର୍ଶନ କଲେ । ଏତଦ୍‌ବ୍ୟତୀତ ବିଭିନ୍ନ ବ୍ୟବସାୟ ବାଣିଜ୍ୟ ପ୍ରତିଷ୍ଠାନ ପରିଦର୍ଶନ କରି ଆମଦାନି-ରପ୍ତାନି କାରବାର ସମ୍ପର୍କରେ ଧାରଣା ଲାଭ କଲେ ।

ତାପରେ ରାଜା ବାସୁଦେବ ଉତ୍ତର ପଶ୍ଚିମାଞ୍ଚଳ ଯାତ୍ରା କରି କାଶୀ ନଗରୀରେ ଉପସ୍ଥିତ ହେଲେ । ସେଠାରେ ପବିତ୍ର ମଣିକର୍ଣ୍ଣିକା ଘାଟରେ ସ୍ନାନ, ବିଶ୍ୱେଶ୍ୱର ଓ ଅନ୍ନପୂର୍ଣ୍ଣା ଦର୍ଶନ, ତୀର୍ଥଶ୍ରାଦ୍ଧ ସମ୍ପାଦନ, ବ୍ରାହ୍ମଣ ପଣ୍ଡିତଗଣଙ୍କୁ ନିମନ୍ତ୍ରଣ, ଦୀନଦୁଃଖୀଙ୍କୁ ଅର୍ଥ ବସ୍ତ୍ରାଦି ଦାନକ୍ରିୟା ସମ୍ପାଦନ କଲେ । ପରେ ନଗର ଦର୍ଶନ ଓ ପଣ୍ଡିତଗଣଙ୍କ ମଧ୍ୟରେ ସଂସ୍କୃତ ଧର୍ମଶାସ୍ତ୍ରାଦିର ଆଳାପ ଆଲୋଚନାରେ କିଛି କାଳ କ୍ଷେପଣ କଲେ ।

ତାପରେ 'Queen's College', ମାନମନ୍ଦିର, ଇଂରେଜ ନିବାସ ପ୍ରଭୃତି ସନ୍ଦର୍ଶନ କରି ଆନନ୍ଦ ଲାଭ କଲେ । ତାପରେ ରାଜା ବାସୁଦେବ ଲକ୍ଷ୍ନୌ ଅଭିମୁଖେ ଯାତ୍ରା କଲେ । ଯାତ୍ରା କାଳରେ ବାଟରେ ଅଯୋଧ୍ୟାରେ ଗୋମତୀସ୍ନାନ, ଦେବଦର୍ଶନ, ମାଟିଆ ବୁରୁଜ, ଲକ୍ଷ୍ନୌର ଶେଷ ନବାବ ଓ୍ୟାଜଦ୍ ଆଲିଶାହାର ରାଜଭବନ (୩୬୫ ବେଗମ ଗୃହ ବିଶିଷ୍ଟ) ଓ ଅନ୍ତଃପୁରସ୍ଥିତ କୃତ୍ରିମ ଜଳାଶୟ, ଲର୍ଡ଼ କ୍ୟାନିଂ କଲେଜ ଛତ୍ରମଞ୍ଜିଲ, ଇମାମ୍‌ବାଡ଼ା, ବେଲଗାର୍ଡ଼୍ର ଉଦ୍ୟାନ ଭବନ, ଇଂରେଜ ସୈନ୍ୟମାନଙ୍କର ଅତ୍ୟାଚାରର ସ୍ମୃତିସ୍ଥଳ, ଗୋମତୀ ତୀରସ୍ଥ ଫଇଜାବାଦ ଆଦି ସ୍ଥାନ ପରିଦର୍ଶନ କରି ଭାବବିହ୍ୱଳ ହେଲେ ।

ଲକ୍ଷ୍ନୌରୁ କାନପୁର ଯାତ୍ରା କଲେ । ସେଠାକାର କପାବୃକ୍ଷ ଓ ଲୁଗାକଳ ପରିଦର୍ଶନ କରି ଦିଲ୍ଲୀ ଯାତ୍ରା କଲେ । ଆଗ୍ରାରେ ମମତାଜଙ୍କର ଅକ୍ଷୟ ସ୍ମୃତି କୀର୍ତ୍ତି ମଣିମାଣିକ୍ୟାଦି ଖଚିତ 'ତାଜମହଲ'ର ଅପୂର୍ବଶ୍ରୀ ଦେଖି ବିସ୍ମିତ ହେଲେ । ସେଠାରୁ ମଥୁରା ଓ ବୃନ୍ଦାବନ ପ୍ରସିଦ୍ଧ ହିନ୍ଦୁ ତୀର୍ଥକୁ ଯାତ୍ରା କଲେ ।

ଏଠାରେ ବୈଷ୍ଣବତତ୍ତ୍ୱ ତଥା ଜ୍ଞାନ ଆହରଣ ପୂର୍ବକ ପ୍ରୟାଗ ଅଭିମୁଖେ ଯାତ୍ରା କଲେ । ପ୍ରୟାଗରେ ଅକ୍ଷୟ ବଟବୃକ୍ଷ, ଏଲାହାବାଦ ଦୁର୍ଗ ଓ ତନ୍ମଧ୍ୟରେ ଥିବା ଇଂରେଜ ସରକାରଙ୍କ ଶସ୍ତ୍ର-ଭଣ୍ଡାର ପରିଦର୍ଶନ କଲେ । ଏଠାରେ ପ୍ରାଚୀନ ସେନା ନିବାସ, ଆଲବାର୍ଟ ପାର୍କ, ଖୁସ୍‌ରୁବାଗ୍, ମେୟୁର କଲେଜ, ଯମୁନାର ସେତୁ ପ୍ରଭୃତି ଦର୍ଶନୀୟ ସ୍ଥାନ ପରିଦର୍ଶନ କଲେ ।

ତା ପରେ ପୂର୍ବାଭିମୁଖରେ 'ଗୟା' ଯାତ୍ରା କଲେ । ଗୟାରେ ବିଷ୍ଣୁପାଦରେ ପିଣ୍ଡଦାନ ପୂର୍ବକ ବୁଦ୍ଧଗୟା ଯାତ୍ରା କଲେ । ଏଠାରେ ବୁଦ୍ଧଦେବଙ୍କର ସମାଧିସ୍ଥ ମୂର୍ତ୍ତି ଓ ମନ୍ଦିର ଦର୍ଶନ କଲେ ଓ ବୁଦ୍ଧଦେବଙ୍କର ସାଧନା-ସିଦ୍ଧି ପୀଠସ୍ଥଳୀରେ ପଦାର୍ପଣ କରି ଅପାର ଆନନ୍ଦ ଲାଭ କଲେ ।

ତାପରେ ରାଜା ବାସୁଦେବ 'ବୈଦ୍ୟନାଥ' ଦର୍ଶନ ପୂର୍ବକ ପ୍ରସିଦ୍ଧ ପଣ୍ଡାଙ୍କ ସଙ୍ଗେ ଆଧ୍ୟାତ୍ମିକ ପ୍ରସଙ୍ଗ ତଥା ଧର୍ମାଲୋଚନା କଲେ । ଏଠାରେ କୁଷ୍ଠ ରୋଗାକ୍ରାନ୍ତ ରୋଗୀଙ୍କୁ ଅର୍ଥ ସାହାଯ୍ୟ, ବ୍ରାହ୍ମଣମାନଙ୍କୁ ଭୋଜନ ଦାନ କଲେ ।

ସିଂହଭୂମି ପଥରେ ରାଜା ବାସୁଦେବ ତୀର୍ଥ ତଥା ଦେଶ ଭ୍ରମଣ ପରେ ସ୍ୱରାଜ୍ୟ ପ୍ରତ୍ୟାବର୍ତ୍ତନ କଲେ । ମାତ୍ର ସେତେବେଳକୁ ପିତା ହରିହରଦେବ ପୀଡ଼ିତ ଅବସ୍ଥାରେ ସମ୍ବଲପୁରରେ ନିର୍ଜନ ବାସରେ ଅବସ୍ଥାନ କରୁଥିଲେ । ତାଙ୍କୁ ସମ୍ବଲପୁରରୁ ରାଜଧାନୀ ଦେବଗଡ଼କୁ ଆଣି ଯତ୍ନ ନେବାର ବ୍ୟବସ୍ଥା କଲେ ।

## ରାଜା ବାସୁଦେବ ସୁଢ଼ଳଦେବଙ୍କ ତୀର୍ଥାଟନ ଓ ଦେଶ ଭ୍ରମଣ ପରେ ରାଜ୍ୟ ପ୍ରତ୍ୟାବର୍ତ୍ତନ ଓ ସ୍ୱବାନ୍ତର

ପ୍ରାଣପ୍ରିୟା ପତ୍ନୀ ବିୟୋଗ ଜନିତ ବିଚ୍ଛେଦ ଦୁଃଖରେ ବୈରାଗ୍ୟ ଅବଲମ୍ବନ କରି ବ୍ୟଥିତ ରାଜା ବାସୁଦେବ ସୁଢ଼ଳଦେବ ସ୍ୱରାଜ୍ୟ ପ୍ରତ୍ୟାବର୍ତ୍ତନ କରି ନୂତନ ଆଦର୍ଶ, ଅଦମ୍ୟ ଜୀବନ୍ତ ଉତ୍ସାହ ଓ ଅଶେଷ ଶ୍ରଦ୍ଧା ସହକାରେ ରାଜ୍ୟଶାସନ କାର୍ଯ୍ୟରେ ମନୋନିବେଶ କଲେ । ତେଣୁ ତାଙ୍କର ଗୁରୁଜନବୃନ୍ଦ ତଥା ଆତ୍ମୀୟ ସ୍ୱଜନଙ୍କ ଅନୁରୋଧ କ୍ରମେ ଦ୍ୱିତୀୟଥର ପତ୍ନୀ ଗ୍ରହଣ ପୂର୍ବକ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ସଙ୍ଗେ ସଙ୍ଗେ ପରିବାରର ଉନ୍ନତି ବିଧାନ ନିମନ୍ତେ ରାଜି ହେଲେ ।

ତେଣୁ ମୟୂରଭଞ୍ଜ ରାଜ୍ୟର 'ରନୁଆଁ' ଖନିସ୍ଥ ଜମିଦାର (ମୟୂରଭଞ୍ଜ ରାଜପରିବାର ଶାଖା)ଙ୍କର ଦୁଇ କନ୍ୟାଙ୍କର ପାଣିଗ୍ରହଣ କଲେ । ଏହାପରେ କଲିକତା ଯାତ୍ରାରୁ ପ୍ରତ୍ୟାବର୍ତ୍ତନ କାଳରେ 'ସିଂହଭୂମି'ର ଅନ୍ତର୍ଗତ 'ଖରସୁଆଁ'ର ଠାକୁର ନୀଳମଣି ବାହାଦୁରଙ୍କର ଭଗିନୀଙ୍କ ପାଣିଗ୍ରହଣ ପୂର୍ବକ ରାଜଧାନୀ ପ୍ରତ୍ୟାବର୍ତ୍ତନ କଲେ । ତେଣୁ ଏକ ସମୟରେ ଏହି ତିନି ରାଣୀ ବାମଣ୍ଡା ରାଜ

ପରିବାରର ଶୌର୍ଯ୍ୟ ବୀର୍ଯ୍ୟ ସୌନ୍ଦର୍ଯ୍ୟ ତଥା ସୌଭାଗ୍ୟ ବର୍ଦ୍ଧନକାରଣୀ ହେଲେ । ରାଜା ବାସୁଦେବଙ୍କ ଶୂନ୍ୟ ଅନ୍ତଃପୁର ଏହି ତିନି ରାଣୀଙ୍କ ସମାବେଶରେ ପୂର୍ଣ୍ଣତା ଲାଭ କଲା । ତେଣୁ ତାଙ୍କର ପାରିବାରିକ ଜୀବନ ସୁଖମୟ, ଶାନ୍ତିମୟ ତଥା ଆନନ୍ଦମୟ ହୋଇ ଗଢ଼ି ଉଠିଲା । କାଳକ୍ରମେ ଏହି ତିନି ରାଣୀଙ୍କ ଗର୍ଭରୁ ଆଠଟି ପୁତ୍ର ଓ ଏଗାରଟି କନ୍ୟା ସନ୍ତାନ ଜନ୍ମ ଲାଭ କରି ରାଜବଂଶର ମୁଖ ଉଜ୍ଜ୍ୱଳ କଲେ ।

ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜପରିବାର :—

ପ୍ରଥମା ପତ୍ନୀ—ଗିରିରାଜ କୁମାରୀ—ଏକ ପୁତ୍ର—ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ

ଦ୍ୱିତୀୟା ପତ୍ନୀ —ଦୁଇ ପୁତ୍ର—ତିନି କନ୍ୟା—(ସଚ୍ଚିଦାନନ୍ଦ

ତୃତୀୟା ପତ୍ନୀ —ତିନି ପୁତ୍ର—ପାଞ୍ଚ କନ୍ୟା— ଗ୍ରନ୍ଥମାଳା)

ଚତୁର୍ଥୀ ପତ୍ନୀ —ତିନି ପୁତ୍ର—ତିନି କନ୍ୟା—

ନଅ ପୁତ୍ର ଏଗାର କନ୍ୟା

୨ । ବଡ଼ କୁମାର ବଳଭଦ୍ର ଦେବ—ଷ୍ଟେଟ୍ ସୁପରିଣ୍ଟେଣ୍ଡେଣ୍ଟ, କବି ସାହିତ୍ୟିକ

୩ । ଲାଲ ଦ୍ୟୁମ୍ନ ଦେବ— (ବଳଭଦ୍ର ଗ୍ରନ୍ଥାବଳୀ)

୪ । ଲାଲ ଦୟାନିଧି ଦେବ—

୫ । ଲାଲ ଜୟ ନାରାୟଣ ଦେବ—

୬ । ଲାଲ ରାଜୀବ ଲୋଚନ ଦେବ— (ପାରିଜାତ)

୭ । ଲାଲ ଲଳିତ ମୋହନ ଦେବ— (ଲଳିତ ରତ୍ନ କଳାପ)

୮ । ଲାଲ ପଦ୍ମ ଲୋଚନ ଦେବ—

୯ । ଲାଲ ଲଳମୋହନ ଦେବ—

**କନ୍ୟାମାନଙ୍କ ମଧ୍ୟରେ**

୧ । ରାଜକୁମାରୀ— ବିବାହ—
ସ୍ଥାନ—(ଖଡ଼ିଆଲ) ରାଜପରିବାର

୨ । ଶ୍ରୀମତୀ ଦେବୀ— ସୁରରାଜା—(ବିଧବା) ,,

୩ । ସୁଲୋଚନା ଜେମା
୪ । ପ୍ରିୟମ୍ବଦା ଜେମା
୫ । କୁସୁମ ଜେମା
} ଅବିବାହିତ ଅବସ୍ଥାରେ ସ୍ୱର୍ଗପ୍ରାପ୍ତି ,,

| | | |
|---|---|---|
| ୬ । ସୌମ୍ୟ ଦେବୀ— | ତାଳଚେର | ରାଜପରିବାର |
| ୭ । ଗୋଦାବରୀ ଦେବୀ— | ସୁଇଁସା | ,, |
| ୮ । ଅମରାବତୀ ଦେବୀ— | ବଣାଇ | ,, |
| ୯ । କୁମୁଦ୍‌ବତୀ— | ପଞ୍ଚକୋଟ କାଶୀପୁର କଳାହାଣ୍ଡି | ,, |
| ୧୦ । ଚନ୍ଦ୍ରା ଦେବୀ— | ଟିକିଲି | ,, |
| ୧୧ । ଦୀପ୍ତି ଦେବୀ— | ଷଢ଼େଇକଳା | ,, |

ରାଜା ବାସୁଦେବ ସୁଢ଼ଳଦେବ ଏହି ପୁତ୍ର ଓ କନ୍ୟାଗଣଙ୍କର ଶିକ୍ଷା ନିମନ୍ତେ ପଦକ୍ଷେପ ଯଥା ପ୍ରଯତ୍ନ ଗ୍ରହଣ କରିଥିଲେ (ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟ, ରାଜବାଟୀ ବାଳିକା ବିଦ୍ୟାଳୟ ପ୍ରତିଷ୍ଠାକରି) ତେଣୁ ଅଧିକାଂଶ କବି, ସୁସାହିତ୍ୟିକ ରୂପେ ସୁଖ୍ୟାତି ଅର୍ଜନ କରିଥିଲେ । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠପୁତ୍ର ଟୀକାୟିତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ "ଧୀପୁ ଜାତ ଦୀପ ପ୍ରାୟ" ସ୍ୱୀୟ ସାହିତ୍ୟିକ ପ୍ରତିଭାର ତେଜ ବିକାଶିତ କଲେ । ତାପରେ ବଡ଼କୁମାର ବଳଭଦ୍ର ଦେବ ଜଣେ ଉଚ୍ଚ କୋଟୀର କବି । ରାଜା ବାସୁଦେବଙ୍କ ଜୀବିତାବସ୍ଥାରେ କବି ତଥା ସାହିତ୍ୟିକ ସଚ୍ଚିଦାନନ୍ଦଙ୍କର ବିରଚିତ ମାୟାଶବରୀ, ଅନଙ୍ଗ, ସ୍ୱପ୍ନକାବ୍ୟ (୧୮୯୪) ରସରହସ୍ୟ, ଅଲଙ୍କାରସାର ଓ ଚନ୍ଦ୍ରଦୂତ' (୧୮୯୮) ଏବଂ ବଡ଼ କୁମାର ବଳଭଦ୍ର ଦେବଙ୍କ 'ଋତୁସଂହାର' କାବ୍ୟ (୧୯୦୩) ଆତ୍ମପ୍ରକାଶ ଲାଭ କରିଥିଲା । ତେଣୁ ଆଦର୍ଶ ପିତା ରାଜା ସାର୍ ବାସୁଦେବ ପୁତ୍ରମାନଙ୍କର ବିଦ୍‌ବତ୍ତା ତଥା ପାଣ୍ଡିତ୍ୟରେ ପରମ ସନ୍ତୋଷ ଲାଭ କରିଥିଲା ।

× × ×

## ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜ୍ୟର ଉନ୍ନତି କଳ୍ପେ ଦେଶ ଭ୍ରମଣ

ରାଜା ସାର୍ ବାସୁଦେବ ସୁଢ଼ଳଦେବ ମାନସିକ ପରିବର୍ତ୍ତନ ସଙ୍ଗେ ନୂତନ ଜ୍ଞାନ ଆହରଣ ଓ ନୂତନ ଆଦର୍ଶରେ ରାଜ୍ୟ ଶାସନ ପ୍ରଚଳନ ଅଭିପ୍ରାୟରେ ତୀର୍ଥ ଦର୍ଶନ ତଥା ଦେଶ ଭ୍ରମଣରେ ପ୍ରଥମେ କଟକ, କଲିକତା, କାଶୀ, ଦିଲ୍ଲୀ, ଲକ୍ଷ୍ନୌ, ଗୟା ପ୍ରଭୃତି ସ୍ଥାନ ଯାତ୍ରା କଲେ । ପୁନଶ୍ଚ ନିଜର ଅନନ୍ତ ଜ୍ଞାନ ପିପାସା ଚରିତାର୍ଥ ନିମନ୍ତେ ବମ୍ବେ ଅଭିମୁଖେ ଯାତ୍ରା କଲେ । ବେଳେ ବେଳେ କଲିକତା ମହାନଗରୀକୁ ଯାତ୍ରା କରି ତା' ସହିତ ବ୍ୟବସାୟ ବାଣିଜ୍ୟ, ଶିକ୍ଷା ଦୀକ୍ଷା ପ୍ରସଙ୍ଗରେ ଜ୍ଞାନ ଲାଭ କରୁଥିଲେ । ପରେ ଜ୍ୟେଷ୍ଠପୁତ୍ର ଟୀକାୟିତ ସଚ୍ଚିଦାନନ୍ଦ-

ଦେବ, ଜଳନ୍ଧର ଦେବ, କେଶବ ଚନ୍ଦ୍ର ଦେବ, ରାମଭଦ୍ର ସାଇଦେଓ, ଡାକ୍ତର ଲକ୍ଷ୍ମୀନାରାୟଣ ନାୟକ, ସମ୍ପାଦକ ନୀଳମଣି ବିଦ୍ୟାରତ୍ନ, ବାବୁ ଈଶ୍ବର ଚନ୍ଦ୍ର ମିଶ୍ର, ବାବୁ ରାମଚନ୍ଦ୍ର ପାଲ ପ୍ରଭୃତି ରାଜକର୍ମଚାରୀବୃନ୍ଦଙ୍କ ଗହଣରେ ବମ୍ବେ ପରିଭ୍ରମଣ ଉଦ୍ଦେଶ୍ୟରେ ବାମରା ଷ୍ଟେସନରୁ ଯାତ୍ରା କଲେ । ଗନ୍ତବ୍ୟ ପଥରେ ବିଳାସପୁର, ରାୟପୁର, ନାଗପୁର ପ୍ରଭୃତି ସ୍ଥାନରେ ଅବତରଣ ପୂର୍ବକ ଦର୍ଶନୀୟ ସ୍ଥାନମାନ ପରିଦର୍ଶନ କଲେ । ନାଗପୁରରେ ବୃହତ୍ ପୁଷ୍କରିଣୀ, ସନ୍ଧ୍ୟାକାଳୀନ ଶୋଭା, ରାଜୋଦ୍ୟାନ, ମହାରାଣୀ ଭିକ୍ଟୋରିଆ ପ୍ରତିମୂର୍ତ୍ତି, ହସ୍ତୀମୂର୍ତ୍ତି, ବିଭିନ୍ନ ଫଳ ପୁଷ୍ପ ବୃକ୍ଷ, କପଡ଼ାକଳ (ସ୍ଵଦେଶୀ ମିଲ୍) ପରିଦର୍ଶନ କଲେ । ନାସିକରେ ପୁଣ୍ୟ ଗୋଦାବରୀ ସ୍ନାନ ପରେ ବମ୍ବେ ଅଭିମୁଖେ ଯାତ୍ରା କଲେ । ପଞ୍ଚବଟୀ ଦର୍ଶନ, ବାଜୀରାଓ ପ୍ରତିଷ୍ଠିତ ରାମମନ୍ଦିର ଓ ଅତିଥିଶାଳା ଏଗାରଟି ପାଣ୍ଡବଗୁମ୍ଫା ଓ ତପୋବନ ପରିଦର୍ଶନରେ ପରମ ଆନନ୍ଦ ଅନୁଭବ କଲେ । ସମସ୍ତେ ସମୁଦ୍ର ପଥରେ 'ଏଲଫାଣ୍ଟ' ଦ୍ଵୀପସନ୍ଦର୍ଶନରେ ଯାତ୍ରା କଲେ । ବମ୍ବେରେ ଲାଟଭବନ, ରାଜୋଦ୍ୟାନ, ବନ୍ଦର, ନାନା ଦେଶର ବାଣିଜ୍ୟ ପୋତ, (Victoria Terminus) ଭିକ୍ଟୋରିଆ ଟାର୍ମିନାସ, ପୋଷ୍ଟ ଅଫିସ୍, ବାଣିଜ୍ୟାଗାର, ହାଇକୋର୍ଟ ପ୍ରଭୃତି ପରିଦର୍ଶନ କଲେ ।

ବମ୍ବେରେ ଅବସ୍ଥାନ କାଳରେ ଅନେକ ପ୍ରଧାନ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲେ । ପଣ୍ଡିତା ରାମବାଈଙ୍କ ପ୍ରତିଷ୍ଠିତ ସାରଦା ସଦନରେ ବୟସ୍କା ବାଳିକାମାନଙ୍କର ଶିକ୍ଷାଦାନ ପଦ୍ଧତିରେ ସନ୍ତୁଷ୍ଟ ହୋଇ ଉକ୍ତ ଆଶ୍ରମକୁ ଆର୍ଥିକ ସାହାଯ୍ୟ ପ୍ରଦାନ କଲେ । ତାଙ୍କ ସହିତ ସଂସ୍କୃତରେ ଆଳାପ ଆଲୋଚନା କରି ଆନନ୍ଦ ଉପଭୋଗ କଲେ ।

ରାଜା ଟୀକାୟତ ସଚ୍ଚିଦାନନ୍ଦଙ୍କ ସହିତ ସ୍ୱରାଜ୍ୟର ଉନ୍ନତି ନିମନ୍ତେ କେତେକ ଆବଶ୍ୟକୀୟ ଦ୍ରବ୍ୟ କ୍ରୟ କରି ଅହମଦାବାଦ ଅଭିମୁଖେ ଯାତ୍ରା କଲେ । ସେଠାରେ ଜନସାଧାରଣଙ୍କ ଦ୍ୱାରା ପରିଚାଳିତ ବିଶାଳକାୟ କପଡ଼ାକଳ ପରିଦର୍ଶନ କରି ସ୍ୱରାଜ୍ୟ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ ।

× × ×

## ପର୍ଯ୍ୟଟନ ପ୍ରିୟ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଦାକ୍ଷିଣାତ୍ୟ ଭ୍ରମଣକାଳୀନ ଅନୁଭୂତି

ରାଜା ସାର୍ ବାସୁଦେବ ବମ୍ବେ ଭ୍ରମଣରୁ ପ୍ରତ୍ୟାବର୍ତ୍ତନ କରି କିଛିଦିନ ରାଜ୍ୟରେ ଅବସ୍ଥାନ ପୂର୍ବକ ଶାସନଗତ ସୁବ୍ୟବସ୍ଥାବିଧାନ କଲେ । ପରେ ପୁଣି ପୁନା ପଥ ଦେଇ ଦାକ୍ଷିଣାତ୍ୟ ଭ୍ରମଣରେ ଯାତ୍ରା କଲେ ନିଜ କର୍ମଚାରୀ ଓ ଭୃତ୍ୟ ଗହଣରେ ।

ପୁନା ମହାରାଷ୍ଟ୍ରୀୟ ବ୍ରାହ୍ମଣ ସମାଜର ପ୍ରଧାନ ପୀଠସ୍ଥଳୀ । ତେଣୁ ରାଜା ବାସୁଦେବ 'ଶିବାଜୀ' ସୃଷ୍ଟ ବିଜୟୀତ ରାଜ୍ୟରେ ପଦାର୍ପଣ ପୂର୍ବକ ବ୍ରାହ୍ମଣ ସମାଜର ରୀତି ନୀତି, ଅସ୍ପୃର ବ୍ୟବହାରରେ ପ୍ରୀତ ହେଲେ । ଏଠାରେ ନାରୀ ଜାତିର ସ୍ୱଚ୍ଛନ୍ଦ ବିହରଣ ତାଙ୍କ ମନରେ ଗଭୀର ରେଖାପାତ କଲା ।

ତାପରେ ଦକ୍ଷିଣ ପଥରେ ମହୀଶୂର ତଥା ବାଙ୍ଗାଲୋର ଯାତ୍ରା କଲେ । ଉତ୍ତର ଭାରତର ଭୂସ୍ୱର୍ଗ 'କାଶ୍ମୀର' ସଦୃଶ, ଦାକ୍ଷିଣାତ୍ୟର 'ନନ୍ଦନକାନନ' ମହୀଶୂର ତଥା ବାଙ୍ଗାଲୋରର ଅନୁପମ ସୌନ୍ଦର୍ଯ୍ୟ ରାଜା ବାସୁଦେବଙ୍କ ଦାର୍ଶନିକ କବି ପ୍ରାଣକୁ (Aesthetic Aspect of Beauty) ବିଶେଷ ଭାବେ ବିମୋହିତ କଲା । ଏହାର ରାଜପଥ ଅତ୍ୟନ୍ତ ସୁଗମ ଓ ସୁନ୍ଦର । ସେହି ଅନୁରୂପ ରାଜଧାନୀ ଦେବଗଡ଼ର ନଗର ପରିକଳ୍ପନା (Plan) ପ୍ରସ୍ତୁତ କଲେ । ବାଙ୍ଗାଲୋରରୁ ମହୀଶୂରକୁ ଯାତ୍ରା କରି ଛଦ୍ମବେଶରେ ରାଜ ଅଟ୍ଟାଳିକା, ବିଶ୍ୱବିଦ୍ୟାଳୟ ଓ ଅନ୍ୟ ସୁରମ୍ୟ ସୌଧମାନ ପରିଦର୍ଶନ କଲେ । ସେଠାକାର ସ୍ୱର୍ଣ୍ଣଖଣି, ଶିକ୍ଷାପଦ୍ଧତି, ଶିଳ୍ପ ଉନ୍ନତି, ସମାଜ ବ୍ୟବସ୍ଥା ସମ୍ପର୍କରେ ଧାରଣା ଲାଭ କଲେ ।

ହିନ୍ଦୁ ରାଜ୍ୟମାନଙ୍କ ମଧ୍ୟରେ ମହୀଶୂର ଏକ ଆଦର୍ଶ ହିନ୍ଦୁ ରାଜ୍ୟ ଥିଲା । ସେ ସେଠାକାର ପ୍ରଧାନ ପ୍ରଧାନ ବିଭାଗୀୟ କର୍ମଚାରୀ ତଥା ରାଜପୁରୁଷଙ୍କ ସହିତ ରାଜ୍ୟର ଶାସନ ପଦ୍ଧତି ସମ୍ପର୍କରେ ଆଲୋଚନା କରି ତଥ୍ୟ ସଂଗ୍ରହ କଲେ । ସେହି ରୀତି ନୀତିରେ ତଥା ଆଦର୍ଶରେ ଅନୁପ୍ରାଣିତ ହୋଇ ବାମଣ୍ଡା ରାଜ୍ୟ ଶାସନ କରିବାର ବାସନା ପୋଷଣ କଲେ । ତାପରେ ରାଜା ବାସୁଦେବ ତ୍ରିବାଙ୍କୁର ଅଭିମୁଖେ ଯାତ୍ରା କଲେ । ସେଠାରୁ ରାମେଶ୍ୱର ଯାଇ ସେଠାରେ ସୀତାଙ୍କ ଉଦ୍ଧାର ସମ୍ପର୍କୀୟ ସଦନୁଷ୍ଠାନ ମାନ ପରିଦର୍ଶନ କରି ଆନନ୍ଦ ଅନୁଭବ କଲେ ।

ସେଠାରୁ ରାଜା ବାସୁଦେବ ତାଞ୍ଜୋର, କର୍ଣ୍ଣାଟକ, ତ୍ରିଚିନାପଲ୍ଲୀ ପରିଦର୍ଶନ କରି ବହୁମୂଲ୍ୟ କପଡ଼ା, ଜରିବସ୍ତ୍ର ଓ ରେଶମ ବସ୍ତ୍ର କ୍ରୟ କଲେ । ନିଜ ରାଜ୍ୟରେ ଫଳ ଚାଷ କରି ଆର୍ଥିକ ଉନ୍ନତି ବିଧାନ ନିମନ୍ତେ କେତେକ ଆମ୍ବ ଓ ଲେମ୍ବୁର ଚାରାବୃକ୍ଷ ଆହରଣ କଲେ ।

ମାନ୍ଦ୍ରାଜରେ ଉପସ୍ଥିତ ହୋଇ ସମୁଦ୍ର ତୀରବର୍ତ୍ତୀ ପରମ ରମଣୀୟ (Strand Road) ରାଜପଥରେ ଭ୍ରମଣ ଜନିତ ଅଶେଷ ଆନନ୍ଦ ଉପଭୋଗ କଲେ । ସେଠାରେ ଚିଡ଼ିଆଖାନା, ଯାଦୁଘର, ଓ ସରକାରୀ ଉଦ୍ୟାନ ପରିଦର୍ଶନ କଲେ । ଇଂରେଜମାନଙ୍କ ପ୍ରତିଷ୍ଠିତ ମାନ୍ଦ୍ରାଜ ନଗରୀ, ଫୋର୍ଟ ସେଣ୍ଟଜର୍ଜର ନିର୍ମାଣ କୌଶଳ, ସେବାନିବାସ, ଓ ଯୁଦ୍ଧୋପକରଣ ଅତ୍ୟନ୍ତ ଚିତ୍ତାକର୍ଷକ ଓ ରମଣୀୟ ହେବାରୁ ଏହାର ସୌନ୍ଦର୍ଯ୍ୟ ତାଙ୍କୁ ବିମୋହିତ କଲା । ଏଠାରେ, ବିଭିନ୍ନ ସରକାରୀ

କାର୍ଯ୍ୟାଳୟ, ବାଣିଜ୍ୟକେନ୍ଦ୍ର ପରିଦର୍ଶନ ସଙ୍ଗେ ସଙ୍ଗେ ନୂତନ ଉତ୍ପନ୍ନ ଦ୍ରବ୍ୟ କିଛି ପରିମାଣରେ କ୍ରୟ କରି ରାଜଧାନୀର ସୌଷ୍ଠବ ସମ୍ପାଦନ ନିମନ୍ତେ ଆହରଣ କଲେ । ଦାକ୍ଷିଣାତ୍ୟରେ ଏକ ବିଶିଷ୍ଟ ରାଜ୍ୟ 'କିଷ୍କିନ୍ଧା' । ଏହାର ପୌରାଣିକ ମୂଲ୍ୟବୋଧ ଉଚ୍ଚକୋଟୀର । ଏହି ରାଜ୍ୟରେ ଭ୍ରମଣ କରି ବାଳିରାଜାର ବିବିଧ ସ୍ମୃତିପୀଠ (ସମାଧିକ୍ଷେତ୍ର) ଅନତି ଦୂରରେ ରମଣୀୟ 'ପମ୍ପା' ସରୋବର, ରମ୍ୟ ଋଷ୍ୟମୂକ ପର୍ବତ, ସ୍ୱଚ୍ଛସଲିଳା ତୁଙ୍ଗଭଦ୍ରା ନଦୀ ପ୍ରଭୃତି ପରିଦର୍ଶନ କରି ରାମାୟଣର ବିବିଧ ବିବରଣୀ ସଂଗ୍ରହ କଲେ । ତା ଉପରେ ଆଧାରିତ 'କିଷ୍କିନ୍ଧ୍ୟା ବିବରଣ' ନାମକ ଏକ ଉଚ୍ଚକୋଟୀର କାବ୍ୟଗ୍ରନ୍ଥ ପ୍ରଣୟନରେ ଏହାର ସାର୍ଥକତା ସଂପାଦନ କଲେ । ସେଠାରୁ କାଞ୍ଚି ଯାତ୍ରା କଲେ । ଭ୍ରମଣ କାଳରେ ତ୍ରିଚିନାପଲ୍ଲୀର ଶ୍ରୀରଙ୍ଗସ୍ୱାମୀର ମନ୍ଦିର ଓ ମଦୁରାଇର ଭାରତ ବିଖ୍ୟାତ ମୀନାକ୍ଷୀ ଦେବୀର ମନ୍ଦିର ଓ ରାଜଭବନ ପରିଦର୍ଶନ କଲେ ଓ ଏହାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟକଳାର ଅପୂର୍ବ କୌଶଳରେ ଆଶ୍ଚର୍ଯ୍ୟାନ୍ୱିତ ହେଲେ ।

ରାଜା ବାସୁଦେବ ମାନ୍ଦ୍ରାଜର ପ୍ରଧାନ ସମାଜ-ସଂସ୍କାର କେନ୍ଦ୍ର ରାଜମହେନ୍ଦ୍ରୀରେ ଉପନୀତ ହେଲେ । ପୁଣ୍ୟତୋୟା ଗୋଦାବରୀ ତଟ ଏକ ପବିତ୍ର ତୀର୍ଥ ହେତୁ ଏଥିରେ ସ୍ନାନାଦି କାର୍ଯ୍ୟ ସମ୍ପାଦନ କରି (Royal Tower)ରେ ପଦାର୍ପଣ କଲେ । ଏହା ଏକ ଉତ୍କୃଷ୍ଟ ସ୍ୱାସ୍ଥ୍ୟନିବାସ । ଏଠାରେ ଏକଦିନ ଅବସ୍ଥାନ କରି ରାଜା ବାସୁଦେବ ଓଡ଼ିଶାର ଗଜପତି ପୁରୁଷୋତ୍ତମଦେବଙ୍କ ଅକ୍ଷୟ କୀର୍ତ୍ତିସ୍ଥଳ ତଥା 'ସୀମାଚଳ' ପବିତ୍ର ତୀର୍ଥ ଦର୍ଶନ କଲେ । କାଞ୍ଚି ଅଭିଯାନ ପରେ ପ୍ରତ୍ୟାବର୍ତ୍ତନ କାଳରେ ପଥ ମଧ୍ୟରେ ବୃକ୍ଷରୋପଣ, ପୁଷ୍କରିଣୀ ଖନନ ଓ ଦେବମନ୍ଦିର ସ୍ଥାପନ ରାଜା ପୁରୁଷୋତ୍ତମଦେବଙ୍କ ଅକ୍ଷୟ କୀର୍ତ୍ତି । ଏଠାରେ ପୁରୁଷୋତ୍ତମଦେବଙ୍କ ପ୍ରତିଷ୍ଠିତ 'ଗୋକର୍ଣ୍ଣେଶ୍ୱର' ମନ୍ଦିର ଏକ ଉଜ୍ଜ୍ୱଳ କୀର୍ତ୍ତି । ରାଜଦର୍ଶନ କରି ପରମ ତୃପ୍ତି ଲାଭ କଲେ ।

ରାଜା ବାସୁଦେବ 'ରୟେଲ ଟାଓ୍ୱାର' ସ୍ୱାସ୍ଥ୍ୟନିବାସରେ ଅବସ୍ଥାନ କରି ସୀମାଚଳ ତୀର୍ଥ ଦର୍ଶନ ସଙ୍ଗେ ନିକଟବର୍ତ୍ତୀ ବିଜୟନଗରର କୀର୍ତ୍ତି ପରିଦର୍ଶନ କଲେ । ବିଜୟନଗରର ଆମ୍ବ ଭାରତ ବିଖ୍ୟାତ । ରାଜଧାନୀ ଦେବଗଡ଼ରେ ଉକ୍ତ ଆମ୍ବ ବୃକ୍ଷ ନିମନ୍ତେ ବହୁ ଆମ୍ବଚାରା ଗ୍ରହଣ କରି ବେଜଓ୍ୱାଡ଼ା ଅଭିମୁଖେ ଯାତ୍ରା କଲେ । ଏହା ମାନ୍ଦ୍ରାଜର ଏକ ସନ୍ଧିସ୍ଥଳ । ଏଠାରୁ ରାଜା 'ହାଇଦ୍ରାବାଦ' ଯାତ୍ରା କଲେ । ଏହା ଭାରତୀୟ ଏକ କରଦ ମିତ୍ର ରାଜ୍ୟ ହେଲେହେଁ ଏହାର ଅଶେଷ ଧନ ସମ୍ପତ୍ତି, ଐଶ୍ୱର୍ଯ୍ୟ, ସମ୍ମାନ, ଶାସନ ପଦ୍ଧତି ଉଚ୍ଚକୋଟୀର । ଏଠାରୁ 'ଗୋଲକୁଣ୍ଡା' ଯାଇ 'ସ୍ୱର୍ଣ୍ଣଖଣି' ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେଠାରୁ ଭ୍ରମଣ ପଥରେ ଜବଲପୁର ଯାତ୍ରା କଲେ । 'ରାଜକୁମାର କଲେଜ' 'ମାର୍ବଲ ପ୍ରସ୍ତରର

ପାହ୍ୱାଡ଼' ଓ ନର୍ମଦା ନଦୀର ଜଳପ୍ରପାତ ତାଙ୍କୁ ବିଶେଷ ଆକୃଷ୍ଟ କଲା । ମାର୍ବଲ ପ୍ରସ୍ତର ନିର୍ମିତ ସୁନ୍ଦର ଦ୍ରବ୍ୟମାନ ସଂଗ୍ରହ କରି ଜବଲପୁରରୁ କଟନି ରେଲପଥ ତଥା ବିଲାସପୁର ଦେଇ ନିଜ ପଦରେ ରାଜଧାନୀ ଦେବଗଡ଼ରେ ପଦାର୍ପଣ କଲେ ।

ପର୍ଯ୍ୟଟନପ୍ରିୟ ରାଜା ବାସୁଦେବ ସମଗ୍ର ଭାରତର ଉତ୍ତର ଓ ଦକ୍ଷିଣ ପୂର୍ବ ଏବଂ ପଶ୍ଚିମ ଅଞ୍ଚଳ ପର୍ଯ୍ୟଟନ କରି ରାଜ୍ୟଶାସନ ପଦ୍ଧତି ତଥା ରାଜ୍ୟର ବହୁବିଧ ଉନ୍ନତି ସାଧନରେ ଉଚ୍ଚ ଆଦର୍ଶ ପ୍ରତିଷ୍ଠା କରି ଅନ୍ୟ ରାଜାମାନଙ୍କଠାରୁ ଅଗ୍ରଗଣ୍ୟ ହୋଇ ପାରିଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ଏ କ୍ଷେତ୍ରରେ ଦେଶ ପର୍ଯ୍ୟଟନ ତଥା ପରିଭ୍ରମଣ ରାଜା ବାସୁଦେବଙ୍କ କେବଳ ଆନନ୍ଦଉଲ୍ଲାସ ବା ଭୋଗବିଳାସର ମାଧ୍ୟମ ନ ହୋଇ ପ୍ରକୃତ ବାସ୍ତବ ବ୍ୟାବହାରିକ ଜ୍ଞାନ ଲାଭ ଓ ତଦନୁସାରେ ଉକ୍ତାଙ୍କ ପରିବେଶରେ ସ୍ୱରାଜ୍ୟ ଶାସନ ପଦ୍ଧତି ପ୍ରୟୋଗ ଏହାର ପ୍ରଧାନ ଆଭିମୁଖ୍ୟ ତଥା ଉପଜୀବ୍ୟ ବସ୍ତୁ ଥିଲା । ତେଣୁ 'ବାସ୍ତବ ଜ୍ଞାନ ନିମିତ୍ତ ପରିଭ୍ରମଣ ହିଁ ଏକମାତ୍ର ମାଧ୍ୟମ' ଉକ୍ତିଟି ତାଙ୍କ ଜୀବନର ଛନ୍ଦେ ଛନ୍ଦେ ପ୍ରତିପାଦିତ । ଏହି ଉକ୍ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସମଗ୍ର ଭାରତର ବିଭିନ୍ନ ଦେଶ ତଥା ରାଜ୍ୟ ପରିଭ୍ରମଣ କରି ଉପଲବ୍ଧ ଜ୍ଞାନକୁ ସ୍ୱୀୟ ରାଜ୍ୟ ବାମଣ୍ଡାର ହିତ କଲ୍ପେ ରାଜଧାନୀ ଦେବଗଡ଼ରେ ପ୍ରୟୋଗ ପୂର୍ବକ ବାସ୍ତବ କ୍ଷେତ୍ରରେ ନିଜର ଜୀବଦ୍ଦଶାରେ କାର୍ଯ୍ୟକାରୀ କରି ସଫଳତା ଲାଭ କରିଥିବାରୁ ସମସ୍ତଙ୍କର ଆଦର୍ଶ ପ୍ରଶାସକ ରୂପେ ସମଗ୍ର ଭାରତରେ ସମ୍ମାନିତ (K. C. I. E.) ହୋଇ ପାରିଥିଲେ— କହିବା ବାହୁଲ୍ୟ ମାତ୍ର । ତେଣୁ ତାଙ୍କର ପ୍ରଶାସନ ପଦ୍ଧତି ଯାବତୀୟ ସମାଲୋଚନାରୁ ଊର୍ଦ୍ଧ୍ୱରେ ଥିଲା ।

ସେଥିପାଇଁ 'ପ୍ରଶାସନ ବିବରଣୀ' "Administration Report"

The Chief of Bamra Raja Sudhal Deo C. I. E, continues to set a good example to his neighbours (Other Chiefs) by his personal interest in and attention to the business of his state in every department. (Extract taken from the resolution of the Local Govt.)

Sd.— F. C. Anderson
Chief Secretary
To
The Chief Commissioner
(C. P.)

ଉକ୍ତିଟି ଯଥାର୍ଥ ବୋଲି ମନେହୁଏ ।

# ରାଜା ସାର୍ ବାସୁଦେବଙ୍କ ଜୀବନରେ କେତେକ ସାଧାରଣ ଘଟଣା

ରାଜା ବାସୁଦେବ ସ୍ୱାଭିମାନୀ ଥିଲେ । ତଥାପି କେତେକ ସ୍ଥଳରେ ସାଧାରଣ ପ୍ରଜାଙ୍କ ସଙ୍ଗେ ତାଙ୍କର ବାକ୍ୟାଳାପ ତଥା ଆଲୋଚନା ଉଚ୍ଚ ଆଦର୍ଶ ସ୍ଥାନୀୟ । ତାର କେତେକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଗଲା ।

(i) ବାମଣ୍ଡାର ଜନୈକ ପଣ୍ଡିତ ବନମାଳି ଗୁରୁ 'ଆର୍ଯ୍ୟମିତ୍ର' ନାମକ ଏକ ଗ୍ରନ୍ଥ ରଚନା କରି ବହୁ ଆଦର୍ଶ ବ୍ୟକ୍ତି ସଙ୍ଗେ ରାଜା ବାସୁଦେବଙ୍କ ନାମୋଲ୍ଲେଖ କରି ରାଜାଙ୍କୁ ଦେଖାଇଲେ । ଏଥିରେ ସେ ବିନୟସ୍ୱଭାବ ପ୍ରକାଶ କରି କହିଲେ, "ଏ ସକଳ ମହାତ୍ମାଙ୍କ ସହିତ ସଂଯୋଗ କରିବାର କିଛି ହିଁ ଯୋଗ୍ୟତା ମୋଠାରେ ନାହିଁ, ଏହା ଅତ୍ୟନ୍ତ ଅନ୍ୟାୟ । କାର୍ଯ୍ୟ ଦ୍ୱାରା ହିଁ ମନୁଷ୍ୟ ପ୍ରଶଂସାର ପାତ୍ର ହୋଇଥାଏ ।"

(ii) 'ଭାରତାଦର୍ଶ' ଗ୍ରନ୍ଥକାର ନିଜ ପୁସ୍ତକରେ ରାଜା ବାସୁଦେବଙ୍କର ବହୁ ଗୁଣର ପ୍ରଶଂସା କରିଥିଲେ । ଏହାଦେଖି ରାଜା କହିଲେ "ଭାରତାଦର୍ଶ ନାମକ ଗ୍ରନ୍ଥ ରଚନା କରି ତହିଁରେ ଆମ୍ଭର ବିଷୟ ଆଲୋଚନା ଅନ୍ୟାୟ କାର୍ଯ୍ୟ । ଏହି ଅନ୍ୟାୟ ଅନୁଷ୍ଠାନର ସୌନ୍ଦର୍ଯ୍ୟ ବୃଦ୍ଧିକଲେ ଅନ୍ୟାନ୍ୟ ରାଜାଗଣଙ୍କ ସମ୍ମାନହାନି ତଥା ଅନୁଷ୍ଠାନର କଳଙ୍କ କିହି ଶେଷ କରାଯାଇ ନ ପାରେ ।"

(iii) ମୃଗୟା ଅଭିପ୍ରାୟରେ ଯାଇ ଏକ ଗ୍ରାମରେ ଉପସ୍ଥିତ ହେଲେ । ତାର ଜଳାଭାବ ଉପଲବ୍ଧି କରି ସଙ୍ଗେ ସଙ୍ଗେ ଏକ ପୁଷ୍କରିଣୀ ଖନନର ନିର୍ଦ୍ଦେଶ ଦେଲେ ।

(iv) ମୃଗୟା ଅଭିପ୍ରାୟରେ ଦିନେ ଯାଇ 'ଜମନକିରା' ଅଞ୍ଚଳରେ ରାତ୍ରି ଯାପନ କଲେ ଓ ପରଦିନ ସକାଳେ ଅରଣ୍ୟରେ ପ୍ରବେଶ କଲେ ଓ ଏକ ସଙ୍ଗ୍ନ୍ୟାସୀ ତେଲଗୁଭାଷୀ ସନ୍ୟାସୀଙ୍କୁ ଦେଖି ନିଜେ ତାର ସେବାଯତ୍ନ କରି ରାଜଧାନୀକୁ ଆଣି ଛମାସ ରଖିଲେ । ତାଙ୍କର ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ସ୍ୱର୍ଣ୍ଣାଦି ଧନ ପ୍ରଦାନ କରିବାକୁ ଇଚ୍ଛା କଲେ ମାତ୍ର ସେ କେବଳ ଏକ ଖଣ୍ଡ ଶୀତ ବସ୍ତ୍ର ମାତ୍ର ଗ୍ରହଣ କଲେ ।

(v) ଏକଦା ସମ୍ବଲପୁର ଯାତ୍ରା କାଳରେ ବାଟରେ ବିଶ୍ରାମ ସ୍ଥଳରେ ଘ୧୦ ୦୦ଟାରେ ପହଞ୍ଚିଲେ । ସମସ୍ତପ୍ରକାର ରନ୍ଧନ ସାମଗ୍ରୀ ପ୍ରସ୍ତୁତ ଅଛି ମାତ୍ର ପାଚକର ଅଭାବ ଅଛି । ତେଣୁ ନିଜେ ରନ୍ଧନ କାର୍ଯ୍ୟ ସମ୍ପାଦନ କରି ପାରିଷଦ-ବୃନ୍ଦଙ୍କୁ ସାହାଯ୍ୟ କଲେ ।

(vi) ସର୍ବଦା ପ୍ରତିବେଶୀ ରାଜାମାନଙ୍କ ସହିତ ସଦ୍ଭାବ ରକ୍ଷା କରୁଥିଲେ । ଏକଦା ରେଢ଼ାଖୋଲ ରାଜା ଓ ତାଙ୍କ ପୁତ୍ରଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିବାରୁ ପୁତ୍ର କ୍ଷୁର୍ଣ୍ଣମନରେ ଆସି ରାଜା ବାସୁଦେବଙ୍କ ଶରଣାପନ୍ନ ହେଲେ । ସେ ତାଙ୍କୁ କିଛିଦିନ ନିକଟରେ ରଖି ପରେ ଉଭୟଙ୍କ ମଧ୍ୟରେ ସଦ୍ଭାବ ପ୍ରତିଷ୍ଠା କରି ଆନନ୍ଦ ଲାଭ କଲେ । ଏହା ହୃଦୟର ବିଶାଳତାର ପ୍ରତୀକ ।

(vii) ବାମଣ୍ଡା ଓ ବଣାଇ ମଧ୍ୟରେ ସୀମା ବିବାଦ ହେତୁ ବଣାଇ ରାଜା ସ୍ୱୀୟ ରାଜ୍ୟରୁ ଖାଦ୍ୟ ଆଣି ନିଜର ଅବସ୍ଥାନ କାଳରେ ବାମଣ୍ଡାରେ ଭକ୍ଷଣ କରୁଥିଲେ । ମାତ୍ର ରାଜା ବାସୁଦେବ ତାଙ୍କ ଆତିଥ୍ୟ ଗ୍ରହଣ କରିବାରୁ ଏ ବିବାଦ ତିରୋହିତ ହୋଇ ବନ୍ଧୁତା ପୁନଃ ପ୍ରତିଷ୍ଠିତ ହେଲା । ଏହା ତାଙ୍କର ସହୃଦୟତାର ଶ୍ରେଷ୍ଠ ନିଦର୍ଶନ ।

(viii) ରାଜା ବାସୁଦେବ ମୃଗୟାପ୍ରିୟ ଥିଲେ । 'କଲଣ୍ଡା' ଗ୍ରାମରେ ମୃଗୟାରେ ଯାଇ ନିରାହାର ଅବସ୍ଥାରେ ପଡ଼ୁଥିବା ମାନେ ଜନୈକ ବୃଦ୍ଧା ସାହାଯ୍ୟ କରିଥିବାରୁ ତାର ଅନ୍ନସଂସ୍ଥାନ ବ୍ୟବସ୍ଥା କରି ଦୁଇଖଣ୍ଡ ଶାଢ଼ୀ ପୁରସ୍କାର ପ୍ରଦାନ କରିଥିଲେ । ପ୍ରତିଦାନରେ ହୃଦୟର ବିଶାଳତା ପ୍ରକଟିତ ।

(ix) ବୈଷ୍ଣବ ହାଲଦର ନାମକ ଜନୈକ ହସ୍ତୀରକ୍ଷକର ପତ୍ନୀବିୟୋଗ ଘଟିବାରୁ ନିଜ ବ୍ୟୟରେ ତାଙ୍କୁ ତାଳଚେରର ଏକ କନ୍ୟା ସଙ୍ଗେ ବିବାହ ପ୍ରଦାନ କରିଥିଲେ । ଦରିଦ୍ର, ଦୁଃଖୀଙ୍କୁ ଦାନ କରି ଦୁଃଖ ଦୂର କରିବାର ଏହା ନିଦର୍ଶନ ।

(x) ବନ୍ଦୋବସ୍ତ ବିଭାଗ (Settlement)ରେ ଦୁର୍ଯ୍ୟୋଧନ ନାୟକ ନାମକ ଜନୈକ ବ୍ୟକ୍ତି ଟ ୧୦ ଦରମାରେ କାର୍ଯ୍ୟ କରୁଥିଲେ । ସେ ଏକଖଣ୍ଡ ପୁସ୍ତକ ରଚନା କରି ରାଜାଙ୍କୁ ତାର ବିଷୟବସ୍ତୁ ପାଠ କରି ଶୁଣାଇଲେ । ସେଥିରେ ପ୍ରୀତ ହୋଇ ରାଜା ରାଜବ୍ୟୟରେ ଉକ୍ତ ପୁସ୍ତକର ମୁଦ୍ରଣ ଓ ଦରମା ଟ ୨୦୦ ବୃଦ୍ଧିର ଆଦେଶ ଦେଲେ । ଏହା ତାଙ୍କର ଗଭୀର ସାହିତ୍ୟ ପ୍ରୀତିର ଶ୍ରେଷ୍ଠ ନିଦର୍ଶନ ।

(xi) ଜନୈକ ରାଜକର୍ମଚାରୀ କାର୍ଯ୍ୟ ଦକ୍ଷତାରେ ସନ୍ତୁଷ୍ଟ ହୋଇ ଏକ ସଭାର ଆହ୍ୱାନ କରି ରାଜା ବାସୁଦେବ ତାଙ୍କୁ ପ୍ରଶଂସା କରି ସଭାପତି ରୂପେ ଏକ ସ୍ୱର୍ଣ୍ଣପଦକ ପ୍ରଦାନ କରି ସମସ୍ତଙ୍କ ନିକଟରେ ସହକାରୀ ରୂପେ ସମ୍ବୋଧନ କରି ଉଦାରତାର ପରିଚୟ ପ୍ରଦାନ କଲେ । ଏହା ତାଙ୍କ ବିନମ୍ରତାର ନିଦର୍ଶନ ।

(xii) ସେ ଯଦିଓ Mr. Alexander ନାମକ ଜନୈକ ଇଂରେଜ କର୍ମଚାରୀଙ୍କୁ କାଠ ବ୍ୟବସାୟରେ ନିଯୁକ୍ତ କରିଥିଲେ ତଥାପି ବିଦେଶୀ ହେତୁ ତାଙ୍କ

ଉପରେ ପୂର୍ଣ୍ଣ ଆସ୍ଥା ପ୍ରଦର୍ଶନ କରୁ ନ ଥିଲେ । ଏହା ତାଙ୍କ ଜାତୀୟ ସ୍ୱାଭିମାନର ଲକ୍ଷଣ ।

ରାଜା ସାର ବାସୁଦେବ ପଦ ବ୍ରଜରେ ବେଳେ ବେଳେ ପ୍ରତ୍ୟେକ କାର୍ଯ୍ୟ ତଦାରଖ କରୁଥିଲେ—ଏହା ତାଙ୍କର ରାଜନୀତି ତଥା ପ୍ରଶାସନ ପଦ୍ଧତିର ବୈଶିଷ୍ଟ୍ୟ ।

ଉପରୋକ୍ତ ଦୃଷ୍ଟାନ୍ତ ସ୍ଥଳ-ଏହିପରି ଭୂରି ଭୂରି ଉଦାହରଣରୁ ତାଙ୍କ ମହାପ୍ରାଣତା, ଉଦାରତା, ଦାନଶୀଳତା, ସମ୍ବେଦନଶୀଳତା ସର୍ବୋପରି ସାହାଯ୍ୟ ତଥା ସାହଚର୍ଯ୍ୟର ଜ୍ୱଳନ୍ତ ପରିଚୟ ମିଳିଥାଏ ।



## ଷଷ୍ଠ ପରିଚ୍ଛେଦ

# ସାର୍ ବାସୁଦେବ ସୁଢ଼ଳଦେବ K.C.I.E
# 'ଏକ ଅନନ୍ୟ ସାଧାରଣ ପ୍ରତିଭା'

### ସାର ବାସୁଦେବ ସୁଢଳ ଦେବଙ୍କ ସମସାମୟିକ ସାହିତ୍ୟକଙ୍କ ମତ

କବିବର ରାଧାନାଥ ରାୟ ରାଜା ବାସୁଦେବଙ୍କ ଶାସନ କାଳରେ ବାମଣ୍ଡା ଆଗମନ, ଅବସ୍ଥାନ ଓ ସ୍ୱୀୟ ଅନୁଭୂତି ବର୍ଣ୍ଣନା କଲେ—

"ପୂର୍ଣ୍ଣ ମନୁଷ୍ୟର ଅଧିକାଂଶ ସଦ୍‌ଗୁଣ ସୁଢ଼ଳଦେବଙ୍କଠାରେ ବିଦ୍ୟମାନ । ଏତେ ସଦ୍‌ଗୁଣର ସମବାୟ ଦେଶୀୟ ଲୋକଙ୍କ ମଧ୍ୟରେ ଆଜି ପର୍ଯ୍ୟନ୍ତ ମୋ ଦୃଷ୍ଟି ପଥରେ ପଡ଼ି ନାହିଁ । ତାହାଙ୍କର କାର୍ଯ୍ୟ ଦେଖିଲେ ବୋଧହେବ ଯେପରି ବିଧାତା ଦେଶୀୟ ଶରୀରରେ ୟୁରୋପୀୟ ମସ୍ତକ ସଂଯୋଗ କରିଅଛନ୍ତି । ସୁଢ଼ଳଦେବ ଯେପରି ଚିନ୍ତାଶୀଳ ସେପରି କାର୍ଯ୍ୟଶୀଳ, ଯେ ରୂପ ସରସ୍ୱତୀଙ୍କ ଭକ୍ତ, ସେ ରୂପ ଲକ୍ଷ୍ମୀଙ୍କ ଭକ୍ତ ।"

ଜୀବନରେ ନାନାଶ୍ରେଣୀର ଲୋକଙ୍କ ସହିତ ଆଳାପ କରି ସୁଢ଼ଳଦେବଙ୍କର ନ୍ୟାୟ ସମତୁଳ ପ୍ରକୃତି ମୁଁ ଆଉ ଦେଖି ନାହିଁ । ମନରେ ସମସ୍ତ ବୃତ୍ତି ଅଛି; କିନ୍ତୁ ସମସ୍ତ ବୃତ୍ତିର ସେ ହିଁ ପ୍ରଭୁ । × × । କୃତ୍ରିମ ଉପାୟରେ ଯଶଃ ପ୍ରଚାର ନିମନ୍ତେ କିମ୍ବା ଅଳୀକ ନାଶର ଆକାଙ୍କ୍ଷା ତାଙ୍କର ନ ଥିଲି । ଆମୋଦରେ ବିତୃଷ୍ଣା ନ ଥିଲି । × × ଗଭର୍ଣ୍ଣମେଣ୍ଟଙ୍କଠାରୁ ସେ ଯେଉଁ ଉଚ୍ଚ ଉପାଧି ଲାଭ କରିଅଛନ୍ତି, ସେହି ଉପାଧି ସେ ପ୍ରତିଷ୍ଠାର ପରିମାପକ । × × କହିବା ବାହୁଲ୍ୟ, ବାମଣ୍ଡାର ମହାରାଜାଙ୍କର ରୁଚି ସ୍ୱତନ୍ତ୍ର । ତାଙ୍କ ପାଣ୍ଡିତ୍ୟ, ତାଙ୍କର ରୁଚିର ପ୍ରତିଭୂ । ସୁଢ଼ଳଦେବ ଆଦୌ ବିପ୍ଳ ଦ୍ୱାରା ଭଗ୍ନୋତ୍ସାହ ହେବାର ପାତ୍ର ନ ଥିଲେ । × । ସେ ନବ୍ୟଶିକ୍ଷା ପ୍ରାପ୍ତ ରାଜା ନ ଥିଲେ । ସଂସ୍କୃତ ଓ ଓଡ଼ିଆ ଭାଷାରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲି ଏବଂ ବଙ୍ଗଳା ଓ ସାମାନ୍ୟତର ଇଂରାଜୀ ମଧ୍ୟ ଶିକ୍ଷା କରିଥିଲେ × × । ବାସୁଦେବ ସେବିତ ବାମଣ୍ଡାରେ 'Order and Progress' (ପ୍ରାଚୀନ ରକ୍ଷଣଶୀଳତା ଏବଂ ନବ୍ୟ ଅଗ୍ରସରଣ)ର ସୁନ୍ଦର ସାମଞ୍ଜସ୍ୟ ସମଗ୍ର ଭାରତବର୍ଷରେ ବିରଳ ବୋଲି ବୋଧ ହୁଏ ।

ବାସୁଦେବଙ୍କ ନ୍ୟାୟ ନିରାଡ଼ମ୍ବର, ନିରଭିମାନ, ନିରଳସ ଏବଂ କର୍ତ୍ତବ୍ୟନିଷ୍ଠ ମହାରାଜା ଉତ୍କଳୀୟ ସଂସାରରେ ଅତି ଦୁର୍ଲ୍ଲଭ × × । ଆଡ଼ମ୍ବର ତାହାଙ୍କୁ

ସ୍ପର୍ଶ କରି ନାହିଁ । ସଂସ୍କୃତ ଆଲଙ୍କାରିକଗଣ କହିଥାନ୍ତି ଯେ କବି ହେବାକୁ ହେଲେ, "ବ୍ୟୁତ୍ପତ୍ତ୍ୟୈ ସର୍ବଶିଷ୍ୟତା' ଅର୍ଥାତ୍ ଜ୍ଞାନଲାଭ ନିମନ୍ତେ ସକଳର ଶିଷ୍ୟତ୍ୱ ସ୍ୱୀକାର କରିବାକୁ ହେବ । ଜ୍ଞାନଲାଭ ନିମନ୍ତେ ବାସୁଦେବ ସେହି ପଥର ଅନୁସରଣ କରିଥିଲେ । × × ବାମଣ୍ଡା ରାଜକାର୍ଯ୍ୟ ଓଡ଼ିଶାର ବହିର୍ଭୂତ ଓ ଅପେକ୍ଷାକୃତ ଦୂରବର୍ତ୍ତୀ ହୋଇ ସୁଦ୍ଧା ଓଡ଼ିଶା ପଣ୍ଡିତମଣ୍ଡଳୀଙ୍କ ସହିତ ଘନିଷ୍ଠତା ସୂତ୍ରରେ ଯେ ରୂପ ସମ୍ବନ୍ଧ ଥିଲା, ଖାସ୍ ଓଡ଼ିଶାରେ ସେ ରୂପ ରାଜ୍ୟ ପ୍ରାପ୍ତ ନାହିଁ । ବାସୁଦେବଙ୍କ ସର୍ବତୋମୁଖୀ ଉତ୍କର୍ଷର ଏହା ହିଁ ପ୍ରଧାନ କାରଣ । × × ରାଜା ବାସୁଦେବ କୋଷେଶାଗ୍ରସ୍ତ "କୋଷେଶାଗ୍ରସ୍ତ ମାସ୍ତୃତ୍ୱଂ' ଏହି ମହାବାକ୍ୟ ସ୍ମରଣ ରଖି ରାଜସ୍ୱ ଭାଗ ବ୍ୟକ୍ତି ଭାବେ ପୁଙ୍ଖାନୁପୁଙ୍ଖ ରୂପେ ପର୍ଯ୍ୟାଲୋଚନା କରିଥିଲେ ।" କବିବର ରାଧାନାଥ ରାୟ ରାଜା ବାସୁଦେବଙ୍କ ପ୍ରଶସ୍ତି ଚିଲିକା ଗ୍ରନ୍ଥ କାବ୍ୟରେ ଗାନ କଲେ ।

"ପାହିଲାଣି ଘୋର ତମସା ଯାମିନୀ
ଫୁଟିବ ଉତ୍କଳ ଭାଗ୍ୟ କମଳିନୀ
ସେ ଘୋର ଯାମିନୀ ଅବସାନ ଶଂସୀ
କାବ୍ୟତାରା ରୂପେ ଖାର ଗଙ୍ଗବଂଶୀ
ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ ।"

ଏତଦ୍ ବ୍ୟତୀତ ତାଙ୍କର ମହାଯାତ୍ରା ମହାକାବ୍ୟର (୧୮୯୬) ଷଷ୍ଠ ସର୍ଗରେ "ବିଦ୍ୱାନ ମରାଳ କଳ ପଦ୍ମାକର" ବୋଲି ବର୍ଣ୍ଣନା କଲେ । ଏତଦ୍‌ବ୍ୟତୀତ ବହୁ ରଚନାରେ ତାଙ୍କର ବାମଣ୍ଡା ପ୍ରତି ଅନୁରାଗ ବର୍ଣ୍ଣିତ ।

'ଉତ୍କଳ-ସାହିତ୍ୟ' ମାସିକ ପତ୍ରିକାର ସମ୍ପାଦକ ବିଶ୍ୱନାଥ କରଙ୍କ ମତ,

"ମହାରାଜ ଓ ଯୁବରାଜଙ୍କ ସୌଜନ୍ୟପୂର୍ଣ୍ଣ ବ୍ୟବହାରରେ ମୁଗ୍ଧ ହୋଇଥିଲି । ଉତ୍କଳର ରାଜନ୍ୟବର୍ଗଙ୍କ ମଧ୍ୟରେ ସୁଢ଼ଳ ଦେବ ଆଦର୍ଶ ପୁରୁଷ । ରାଜପଦୋଚିତ କର୍ତ୍ତବ୍ୟଗୁଡ଼ିକ ଦକ୍ଷତା ସହିତ ସମ୍ପନ୍ନ କରି ସେ ଯେ ରୂପ ଶାସ୍ତ୍ରାଲୋଚନା ଓ ସାହିତ୍ୟ ଚର୍ଚ୍ଚାରେ ଯତ୍ନବାନ ସେ ରୂପ ଦୃଷ୍ଟାନ୍ତ ଏହି ହତଭାଗ୍ୟ ଦେଶରେ ବିଶେଷତଃ ଆମର ରାଜକୁଳରେ ବିରଳ ।"

## ରାଜା ସାର ବାସୁଦେବ ସୁଢ଼ଳଦେବଙ୍କ ଅନ୍ତିମ ଜୀବନ

ରାଜା ବାସୁଦେବ ସୁଢ଼ଳଦେବ ଯଦିଓ ରାଜ ପରିବାରରେ ଜନ୍ମଗ୍ରହଣ କରିଥିଲେ, ତଥାପି ରାଜକାର୍ଯ୍ୟ ଭୋଗବିଳାସରୁ ବହୁ ଦୂରରେ ଥିଲେ । ସେ କର୍ମରତ, ମିତବ୍ୟୟୀ ଜୀବନ ଯାପନ କରୁଥିଲେ । ବହୁ ପରିଶ୍ରମ ଜନିତ 'ବାତ' ରୋଗାକ୍ରାନ୍ତ

ହୋଇପଡ଼ିଲେ ଶେଷ ଜୀବନରେ । ଏହି ବାତରୋଗ ପାଇଁ ବହୁ କାଳ ଔଷଧ ସେବନ କରିବାକୁ ପଡ଼ିଲା, ତଥାପି ରୋଗ ଉପଶମ ନ ହେବାରୁ କଟକର ବିଶିଷ୍ଟ ଡାକ୍ତରଙ୍କ ପରାମର୍ଶ ତଥା ଆଶ୍ରୟ ନେଲେ । ମାତ୍ର ତହିଁରେ ସୁଫଳ ଲାଭ ନ ହେବାରୁ ରାସ୍ତପୁରର ବିଶିଷ୍ଟ ଡାକ୍ତର ଡାଃ ରାଧିକା ପ୍ରସାଦ ସିଂହଙ୍କୁ (M.B) ଅଣାଇ ତାଙ୍କର ଚିକିତ୍ସାଧୀନ ହେବାରେ କିଞ୍ଚିତ ଆରୋଗ୍ୟ ଲାଭ କଲେ । ତେଣୁ ତାଙ୍କୁ ସ୍ୱର୍ଣ୍ଣ ନିର୍ମିତ ଘଣ୍ଟା ଓ ଚେନ୍ ଉପହାର ଦେଇଥିଲେ ।

କଟକ ଅବସ୍ଥାନ କାଳରେ ଖଣ୍ଡେ ସଦ୍ଗୁଣ ଥିବାର ଦେଖି ବିଜ୍ଞାନାଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ ତାଙ୍କୁ (X-Ray) ରଞ୍ଜନରଶ୍ମି ବ୍ୟବହାର କରିବାକୁ ପରାମର୍ଶ ଦେଲେ ।

ଇତ୍ୟବସରରେ ବହୁମୂତ୍ର ରୋଗ ଆକ୍ରମଣ କଲା । ଏହି ରୋଗର ଉତ୍ପତ୍ତି ସମ୍ବନ୍ଧ ସେ ଜାଣି ପାରି ନ ଥିଲେ । ତେଣୁ ରୋଗ କ୍ରମେ ବୃଦ୍ଧି ଲାଭ କଲା । ୧୯୦୨ ମସିହା ଜାନୁଆରି ୧ ତାରିଖରେ ଭାରତର ସମ୍ରାଟ୍ ସପ୍ତମ ଏଡ଼ୱାର୍ଡ଼ଙ୍କର ରାଜ ସିଂହାସନ ଆରୋହଣ ଉତ୍ସବ ଉପଲକ୍ଷେ ରାଜ ଦରବାରରେ ଯୋଗଦାନ ନିମନ୍ତେ ଆମନ୍ତ୍ରଣ ଲାଭ କରିଥିଲେ । ମାତ୍ର ରୋଗର ପ୍ରାଦୁର୍ଭାବ ହେତୁ ତହିଁରେ ଯୋଗ ଦେଇ ପାରିଲେ ନାହିଁ । ବନ୍ଧୁଜନ ପରିବେଷ୍ଟିତ ହୋଇ ୧୯୦୨ ମସିହା ଡିସେମ୍ବର ୧୭ ତାରିଖ କଲିକତା ଯାତ୍ରା କଲେ । ସେଠାରେ କିଛିମାସ ଅବସ୍ଥାନ କଲେ ମାତ୍ର କେବଳ ବାତରୋଗ ବ୍ୟଥା ଉପଶମ ହେଲା, ମାତ୍ର ବହୁମୂତ୍ର ଆରୋଗ୍ୟ ଲାଭ ନ କରିବାରୁ ଦେବଗଡ଼ ପ୍ରତ୍ୟାବର୍ତ୍ତନ କଲେ । ଏହି ଶେଷ ଅବସ୍ଥାରେ ମଧ୍ୟ ତାଙ୍କର କର୍ମଠ ଜୀବନର ଉତ୍ସାହ ଓ ଉଦ୍ୟମ ଅକ୍ଷୁର୍ଣ୍ଣ ଥିଲା । ପୂର୍ବପରି ଟୀକାୟତ ସଚ୍ଚିଦାନନ୍ଦଙ୍କ ଉପରେ ରାଜ୍ୟର ମୁଖ୍ୟ କାର୍ଯ୍ୟଭାର ଅର୍ପଣ କରି ରାଜକାର୍ଯ୍ୟରେ ମନୋନିବେଶ କଲେ ।

## ରାଜା ବାସୁଦେବଙ୍କ ସ୍ୱର୍ଗାରୋହଣ

ରାଜା ସାର ବାସୁଦେବ ସୁଢ଼ଳଦେବ ଦେବଗଡ଼କୁ କଲିକତାରୁ ଡାକ୍ତର ଅଣାଇ ତାଙ୍କର ଚିକିତ୍ସାଧିନ ହେଲେ । (Dr. R. K. Dutta) । ମାତ୍ର ବହୁମୂତ୍ର ରୋଗ କ୍ରମଶଃ ବୃଦ୍ଧି ଲାଭ କରିବାରୁ ସ୍ୱାସ୍ଥ୍ୟଭଙ୍ଗ ଘଟିଲା । ତେଣୁ ୧୯୦୩ ମସିହା ନଭେମ୍ବର ମାସ ୧୯ ତାରିଖ ଦ୍ୱିପ୍ରହରରେ ସ୍ୱର୍ଗାରୋହଣ କଲେ । ଦେହାନ୍ତର ସମୟରେ ତାଙ୍କର ବୟସ ହୋଇଥିଲା ୫୩ ବର୍ଷ ୬ମାସ ୩ ଦିନ ।

ଦେହତ୍ୟାଗର କିଛି ସମୟ ପୂର୍ବେ ଟୀକାୟତ ସଚ୍ଚିଦାନନ୍ଦ ସୁଶାସନ ପରିଚାଳନା ନିମିତ୍ତ କେତେକ ଉପାଦେୟ ମୂଲ୍ୟବାନ ଉପଦେଶ ପ୍ରଦାନ କରିଥିଲେ ।

ତାଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ତଥା ଅତି ପ୍ରିୟ ରାଜକର୍ମଚାରୀ ଯୋଗେଶଚନ୍ଦ୍ର ଦାସଙ୍କୁ ସଚ୍ଚିଦାନନ୍ଦଙ୍କ ହସ୍ତରେ ଅର୍ପଣ କରି ତାଙ୍କୁ କାର୍ଯ୍ୟରେ ନିଯୁକ୍ତ କରିବାରେ ଅର୍ଥର ସଦ୍‌ବ୍ୟବହାର ହେବାର ସୂଚନା ପ୍ରଦାନ କଲେ । କାରଣ ସେ ଥିଲେ ତାଙ୍କର "ହାତଗଢ଼ା କର୍ମଚାରୀ" ।

## ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ତିରୋଧାନରେ ପ୍ରତିକ୍ରିୟା

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ତିରୋଧାନରେ ଚତୁର୍ଦ୍ଦିଗ ଶୋକର ଉଚ୍ଛ୍ୱାସ ତଥା ହାହାକାର ଧ୍ୱନିରେ ପ୍ରକମ୍ପିତ ହୋଇଉଠିଲା । ବିଦ୍ୟୁତ୍ ବେଗରେ ବାମଣ୍ଡା, ଓଡ଼ିଶା, ତଥା ସମଗ୍ର ଭାରତରେ ଏ ଦାରୁଣ ଦୁଃସମ୍ବାଦ ଖେଳିଗଲା । ଏପରିକି ଏହା ଇଂଲଣ୍ଡ ପର୍ଯ୍ୟନ୍ତ ପରିବ୍ୟାପ୍ତ ହେଲା । ଇଂରେଜ ସରକାର ମଧ୍ୟ ଏ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ । ତେଣୁ ମଧ୍ୟପ୍ରଦେଶର ରାଜକୀୟ ବାର୍ଷିକ ବିବରଣୀରେ (ରାଜପ୍ରତିନିଧି) Resolution :—

The officiating Chief Commissioner notes with much regret the death of Raja Sri Sudhal Dev. K. C. I. E of Bamra. The death of Raja Sudhal Dev was a serious loss." ଏତଦ୍‌ବ୍ୟତୀତ ତାଙ୍କ ତିରୋଧାନରେ, General Review 1903—(Administration Report) ଶୋକ ପ୍ରକାଶ କଲେ Raja Sri Sudhal Dev, the late Feudatory Chief died in November last. He had been suffering from diabetes for upwards of a year and his illness prevented him from attending the Coronation Durbar at Delhi in January 1903. In 1889 he was appointed as companion of the Order of Indian Empire and in 1895 he was created a knight commander of the same order. His death has removed one of the most distinguished representatives of the older generation of the Chhattrish Garh Feudatory Chiefs. The Government of India have recognised the succession of his eldest son under the style and Title of Raja. S. Tribhuban Dev (Report 1903)

କଟକ ରେଭେନସା କଲେଜର ଅଧ୍ୟକ୍ଷ ରାୟସାହେବ ଯୋଗେଶ ଚନ୍ଦ୍ର ରାୟ ରାଜା ବାସୁଦେବଙ୍କ ତିରୋଧାନରେ ମର୍ମାହତ ହୋଇ ପ୍ରକାଶ କଲେ,

"ଓଡ଼ିଶାର ଅନେକ ରାଜା ଦେଖିଅଛୁ, କିନ୍ତୁ ଅତ୍ୟଳ୍ପ ହିଁ ମହାରାଜ ସୁଢ଼ଳଦେବଙ୍କ ତୁଲ୍ୟ ଧାର୍ମିକ, ମିତମାନ, ବିଚକ୍ଷଣ ଓ କର୍ମକୁଶଳ ଦେଖିଅଛୁ । ରଘୁବଂଶର ଉକ୍ତିରେ—

"ଆକାର ସଦୃଶ ପ୍ରାଜ୍ଞଃ, ପ୍ରାଜ୍ଞସ୍ୟା ସଦୃଶାଗମଃ
ଆଗମୈଃ ସଦୃଶାରମ୍ଭ ଆରମ୍ଭ ସଦୃଶୋଦୟଃ ।"

ତାଙ୍କର ଅକାଳ ମୃତ୍ୟୁରେ ବାମଣ୍ଡା ରାଜ୍ୟ ସହୃଦୟ ରାଜା, ବ୍ରିଟିଶ ଗଭର୍ଣ୍ଣମେଣ୍ଟ ବିଶ୍ୱାସଭାଜନ ସାମନ୍ତ, ସଂସ୍କୃତ ସାହିତ୍ୟ ଅନୁରାଗୀ ଭକ୍ତ, ଜନସାଧାରଣ ବଦାନ୍ୟ ଓ ସୁଜନ ଦେଶ ହିତୈଷୀ ଏବଂ ରାଜକୁମାରଗଣ ସ୍ନେହଶୀଳ ପିତା ହରାଇଅଛନ୍ତି ।" ସୁଖର ବିଷୟ ସେ ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କୁ ଉପଯୁକ୍ତ ଶିକ୍ଷାଦେଇ ଓ ରାଜକାର୍ଯ୍ୟରେ ଅଭିଜ୍ଞ କରାଇ ରଖିଯାଇଛନ୍ତି । ଆଶାକରୁଁ ନୂତନ ରାଜା ଗୁଣରେ ପିତାଙ୍କ ତୁଲ୍ୟ ହେବେ ।"

ବ୍ୟାସକବି ଫକୀର ମୋହନଙ୍କ ଭାଷାରେ—

"ସ୍ୱର୍ଗୀୟ ସୁଢ଼ଳଦେବ ପ୍ରଥମ ଉନ୍ନତି
ସୂଚନାର ପତାକାଷ୍ଟା ଲଭିଛି ସଂପ୍ରତି"

ସ୍ୱଭାବକବି ଗଙ୍ଗାଧର ମେହେର ରାଜା ବାସୁଦେବଙ୍କର ପ୍ରଶସ୍ତି ଗାନକଲେ,

"ଧନ୍ୟ ଧନ୍ୟ ବାସୁଦେବ ମହୀପାଳ ମଣି
ଧନ୍ୟ ଧନ୍ୟ କ୍ଷଣଜନ୍ମା ବୁଧ ନୀଳମଣି,
କରିଅଛ ମୋର ଯେତେ ଯେତେ ଉପକାର
ମୋ ହୃଦେ ରହିଛି ସବୁ ସ୍ୱର୍ଣ୍ଣମୟ ଗାର ।

ଜାତୀୟତା ତଥା ଦେଶପ୍ରାଣତାର ପରିଚୟ ଦେବାକୁ ଯାଇ ବର୍ଣ୍ଣନା କଲେ,

ଉତ୍କଳରେ କରି ଶୁଭ ଯଜ୍ଞର ଆରମ୍ଭ,
ସ୍ଥାପିଦେଲ କାଳଦର୍ପ ଧ୍ୱଂସୀ ଯଜ୍ଞସ୍ତମ୍ଭ ।

× × ×

ଯାବତ ଉତ୍କଳ ଥିବ ବାଣୀ ନିକେତନ
ତାବତ ଉଜ୍ଜ୍ୱଳ ତୁମ୍ଭ କୀରତି କେତନ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ତିରୋଧାନରେ ଭକ୍ତକବି ମଧୁସୂଦନ ରାଓଙ୍କ ପ୍ରଣୀତ 'ଶୋକ ଲହରୀ' ସମଗ୍ର ଓଡ଼ିଶାରେ ଶୋକୋଚ୍ଛ୍ୱାସ

ସୃଷ୍ଟି କରିଥିଲେ । ତାଙ୍କର କବିତାଟି ଅତ୍ୟନ୍ତ କରୁଣ, ମର୍ମସ୍ପର୍ଶୀ ଓ ହୃଦୟବିଦାରକ ହୋଇପଡ଼ିଛି । ତେଣୁ କେତେକ ପଂକ୍ତି ନିମ୍ନରେ ଉଦ୍ଧୃତ ହେଲା

ଉତ୍କଳ ଗଗନ ରବି ଦେବ ଶ୍ରୀ ମୁଦୁଲି
ଅସ୍ତମିତ ହେବା କ୍ଷିପ୍ରହରେ,
ଘୋର ଅନ୍ଧକାରେ ମଗ୍ନ କାତର ଉତ୍କଳ
ବିକଳେ କାନ୍ଦଇ ଆର୍ତ୍ତସ୍ୱରେ ।"

"ପ୍ରାଣୀର ଭଲମନ୍ଦ ବାଣୀ
ମରଣ କାଳେ ତାହା ଜାଣି"

ମୃତରେ ଭକ୍ତକବି ତାଙ୍କର ଯାବତୀୟ ଗୁଣାବଳୀ ଉକ୍ତ କବିତାରେ ଗାନ କରିଛନ୍ତି । ତେଣୁ ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ତଥା ଗଠନାଦି କବିତାରେ ରୂପ ଲାଭ କରିଛି ।

ଶାଳ ପ୍ରାଂଶୁ ସେ ମୂରତି ସେ ବକ୍ଷ ବିପୁଳ
ସେ ପ୍ରଶାନ୍ତ କରୁଣ ନୟନ
ସେ ଦିବ୍ୟ ଆକାର ଯହିଁ ଏକାଧାରେ ଠୁଳ
ଶ୍ରମକାନ୍ତ ଗୁଣ ଅଗଣନ ।
ଆକାର ସଦୃଶ ପ୍ରାଜ୍ଞ ଥିଲ ହେ ନମଣି
ଶାସ୍ତ୍ରେ ଅକୁଣ୍ଠିତା ତବ ବୁଦ୍ଧି
ଅନୁସରି ଜ୍ଞାନଗର୍ଭ କର୍ମର ସରଣୀ
ବିବିଧେ ଲଭିଲ ମହାସିଦ୍ଧି ।

ସାର୍ ବାସୁଦେବଙ୍କର ରାଜବଂଶରେ ବିଶେଷତଃ ବାମଣ୍ଡା ପରି ଏକ ନିବିଡ଼ ଅରଣ୍ୟାନୀ ପରିବେଷ୍ଟିତ, ସ୍ୱଳ୍ପ ଆୟ ବିଶିଷ୍ଟ ରାଜ୍ୟରେ ଜନ୍ମ ଲାଭ ପୂର୍ବକ ସ୍ୱୀୟ ବିଦ୍ୟାବୁଦ୍ଧି ବଳରେ ସମଗ୍ର ଭାରତରେ ଉତ୍ସାହ ସୃଷ୍ଟି କରିବା କମ୍ ଅନନ୍ୟ ସାଧାରଣ ଅଲୌକିକ ପ୍ରତିଭାର କାର୍ଯ୍ୟ ନୁହେଁ ।

ତେଣୁ କବି ବର୍ଣ୍ଣନା କଲେ,

"ଧନ୍ୟ ଧନ୍ୟ କ୍ଷଣଜନ୍ମା ଜନ୍ମି ରାଜବଂଶେ
କ୍ଷଣସ୍ଥାୟୀ ମାନବ ଜନମେ
ମଣ୍ଡିଅଛ ମର୍ଯ୍ୟାଦାର ଯେଉଁ ଅବତଂଶ
ଯେଉଁ ମହା ପ୍ରୟାସ ବିକ୍ରମେ ।
ସେହି ମହା ପ୍ରୟାସର ପବିତ୍ର ସଂଯମେ
ଥିଲ ତୁମେ ମହାକର୍ମବୀର,

ଆଡ଼ମ୍ବର ଶୂନ୍ୟ ରାଜ ଲଭି ରାଜ୍ୟାଶ୍ରମେ
ଗୃହାଶ୍ରମେ ଆଦର୍ଶ ଗୃହୀର ।"

ରାଜା ବାସୁଦେବ ସୁଢ଼ଲଦେବଙ୍କ ମହିମା ତଥା ଆଦର୍ଶ ବର୍ଣ୍ଣନା କଲେ,

"ରାଜକର୍ମ କୋଳାହଳ ମଧ୍ୟେ ଥାଇ ସଦା
କେମନ୍ତେ ହେ କହ କର୍ମବୀର
ଭେଟିଲ ସେବଲ ସେହି ଭାରତୀ ବରଦା
ସୌଭାଗ୍ୟେ ଲଭିଲ ତାଙ୍କ ବର
ଭୂଚର ସ୍ୱର୍ଗବ ରାଜ୍ୟେ ହେ ଭପଙ୍କ କବି
ନିସର୍ଗର ସୌନ୍ଦର୍ଯ୍ୟ ନିଳୟେ
ଆନନ୍ଦେ ବିହରି ସେତେ ସୁମନୋଜ୍ଞ ଛବି
ଚିତ୍ରିଲ ହେ କବିତା ନିଚୟେ ।

ତାଙ୍କର ସାହିତ୍ୟକୃତ ସମୂହର ବୈଶିଷ୍ଟ୍ୟ ସମ୍ପର୍କରେ,

ଉତ୍କଳର ସୁରଧୁନୀ ଉତ୍କଳ ପାବନୀ
ମହାନଦୀ 'ଚିତ୍ରୋତ୍ପଳା' ତଟ
ଶ୍ରୀକରେ ଚିତ୍ରିଲ ଚନ୍ଦ୍ର ଧବଳ ରଜନୀ
ମହାନଦୀ ମହିମା ବିଚିତ୍ର ।
ଝାନ୍‌ସୀ ରାଣୀ 'ଲକ୍ଷ୍ମୀବାଈ' ଶୌର୍ଯ୍ୟ ସୁଚରିତ
ଶୁଣି ତବ କ୍ଷତ୍ରିୟ ଶୋଣିତ,
ସଘନେ ଉଠିଲା ନାଚି ତବ ବୀର ଚିତ୍ତ
ଗାଇଲ ହେ 'ବୀରବାମା' ଗୀତ ।

ଓଡ଼ିଆ ସାହିତ୍ୟାକାଶରେ ତାଙ୍କର ଆବିର୍ଭାବ ମଧ୍ୟାହ୍ନ ଅରୁଣ ସଦୃଶ,

ଉତ୍କଳ ସାହିତ୍ୟାକାଶେ ଉଇଁ ଶୁଭ କ୍ଷଣେ
ଭାଷା ଯୋଗେ ଭବିଷ୍ୟ ମିଳନେ
ସୂଚକ ହେ ଦୂରଦର୍ଶୀ ଅରୁଣ ଯେସନେ
ସୂଚେ ମାଧ୍ୟାହ୍ନ ଆଗମନେ ।

ପଣ୍ଡିତମାନଙ୍କ ମଧ୍ୟରେ ସମାଦର ପ୍ରସଙ୍ଗରେ,

ସୁଧୀ କବି ଜନେ ଆହା କେତେ ସମାଦର
କରିଅଛ ହେ ଗୁଣ ଗ୍ରାହକ
ଗୁଣି ଗୁଣି ଗୁଣ ତବ କେତେ ଗୁଣୀଙ୍କର
ବହିଇ ହେ ନୟନୁଁ ଲୋତକ ।

ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ଅସାଧାରଣ ପ୍ରତିଭା ଯୋଗୁଁ ବାମଣ୍ଡାର ମହିମା ତଥା ଗୌରବର ସୌରଭ ଦିଗ ବିଦିଗ ଆମୋଦିତ କରିଥିଲା ।

ତେଣୁ ବର୍ଣ୍ଣନା କଲେ,

ବାମଣ୍ଡା ଗୌରବ ଦେବ ବାମଣ୍ଡା ମହିମା
ରାଜଧାନୀ ଦେବଗଡ଼ ଟେକ,
ଉତ୍କଳ ଗୀର୍ବାଣ ବିଦ୍ୟା ଗୌରବ ଗରିମା
ବଢ଼ାଇଲା ଭୂମିର ବିବେକ ।

ତେଣୁ ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ତିରୋଧାନ ବାମଣ୍ଡା ଓଡ଼ିଶା ତଥା ସମଗ୍ର ଭାରତ ପକ୍ଷେ ଏକ ଅପୂରଣୀୟ କ୍ଷତି । ଏଥିରେ ସନ୍ଦେହ ନାହିଁ ।

## ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ତିରୋଧାନର ପରବର୍ତ୍ତୀ ପ୍ରସଙ୍ଗ

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଜୀବିତାବସ୍ଥାରେ ଟୀକାୟତ ସଚ୍ଚିଦାନନ୍ଦଙ୍କର ଉପଯୁକ୍ତ ଶିକ୍ଷା ଲାଭ ପାଇଁ ଯଥାସମ୍ଭବ ଚେଷ୍ଟିତ ଥିଲେ । ତେଣୁ ସେ ବିଭିନ୍ନ ଭାଷାରେ ତଥା ସଂସ୍କୃତ, ଓଡ଼ିଆ, ବଙ୍ଗଳା, ଇଂରାଜୀ ଓ ହିନ୍ଦିରେ ବ୍ୟୁତ୍ପତ୍ତି ଲାଭ କରିପାରିଥିଲେ । ସାର୍ ବାସୁଦେବ ତାଙ୍କ ଜୀବନର ଶେଷ ଦଶକ ମଧ୍ୟରେ ରାଜ୍ୟ ଶାସନର କେତେକ ପଦ୍ଧତି ସମ୍ପର୍କରେ ଶିକ୍ଷାଦାନ କରିଥିଲେ । ଏହି ଉପଲକ୍ଷରେ ତାଙ୍କୁ କେତେକ ଗୁରୁତ୍ୱପୂର୍ଣ୍ଣ ବିଭାଗ ପ୍ରଦାନ କରିଥିଲେ । ଫଳତଃ ରାଜା ବାସୁଦେବଙ୍କ ଜୀବଦ୍ଦଶାରେ ଟୀକାୟତ ସଚ୍ଚିଦାନନ୍ଦଙ୍କ ରାଜ୍ୟଶାସନ ପଦ୍ଧତି ସମ୍ପର୍କରେ ସମ୍ୟକ୍ ଜ୍ଞାନ ଲାଭ ହୋଇଥିଲା । ରାଜା ବାସୁଦେବଙ୍କ ଶ୍ରେଷ୍ଠ ରାଜକର୍ମଚାରୀ, ଅତ୍ୟନ୍ତ ବିଶ୍ୱସ୍ତ, ନିରଳସ, କାର୍ଯ୍ୟଦକ୍ଷ, ବିଚକ୍ଷଣ ବୁଦ୍ଧିସମ୍ପନ୍ନ, ନ୍ୟାୟପରାୟଣ ବ୍ୟକ୍ତି ଯୋଗେଶଚନ୍ଦ୍ର ଦାସ ଟୀକାୟତ ସଚ୍ଚିଦାନନ୍ଦଙ୍କୁ ପ୍ରଶାସନିକ କାର୍ଯ୍ୟରେ ସାହାଯ୍ୟ କଲେ । ସେ 'ତ୍ରିଭୁବନ' ଆଖ୍ୟା ଧାରଣ କରି ରାଜସିଂହାସନାରୂଢ଼ ହେଲେ । ସେ ରାଜା ବାସୁଦେବଙ୍କ ଭ୍ରାତା ତଥା ତାଙ୍କ ସହାଧ୍ୟାୟୀ ଜଳନ୍ଧର ଦେବଙ୍କୁ 'ଦେଓ୍ୱାନ୍' ରୂପେ ନିଯୁକ୍ତ କଲେ ।

ରାଜା ସଚ୍ଚିଦାନନ୍ଦଙ୍କର ସାହିତ୍ୟ, ସଙ୍ଗୀତ ଓ କଳା ବିଦ୍ୟାପ୍ରତି ଗଭୀର ଅନୁରାଗ ଥିଲା । ତେଣୁ ସେ ପିତୃଦେବଙ୍କ ପଦାଙ୍କ ଅନୁସରଣ କରି ସାହିତ୍ୟ, ସଙ୍ଗୀତ, କଳା ତଥା ସଂସ୍କୃତିର ପରିପ୍ରକାଶ ସାଧନ ଦିଗରେ ଉଦ୍ୟମଶୀଳ ହେଲେ । ରାଜ୍ୟର ଅର୍ଥନୈତିକ, ସାମାଜିକ ତଥା ସାଂସ୍କୃତିକ ବିକାଶ ସାଧନ ଦିଗରେ

ରଖିର ମନୋନିବେଶ କଲେ । ପୂର୍ବେ କେତେକ କାବ୍ୟ ପ୍ରଣୟନ କରିଥିଲେ । ପିତାଙ୍କ ମୃତ୍ୟୁ ପରେ ଆଉ କେତେକ କାବ୍ୟକୃତି ସମ୍ପାଦନ କଲେ । ବୈଷ୍ଣବିକ ତଥ୍ୟ ସମ୍ବଳିତ ବିଶେଷ ସାହିତ୍ୟକୃତି ଯୋଗୁଁ 'ବିଜ୍ଞାନ-ବିନୋଦ' ଉପାଧିରେ ଭୂଷିତ ହେଲେ । 'କାଦମ୍ବରୀ ଓ ପ୍ରେମସ୍ତବକ' (୧୯୦୯), 'ପ୍ରକୃତି', 'ସୁନ୍ଦରୀ ଗୌତଣା' ଓ ଯୌନ ନିର୍ବାଚନ (୧୯୧୨), 'ଆବାହନ' (୧୯୧୩), ନୈତିକ ପ୍ରକୃତି', 'ବୀରଗାଥା', 'ବିବିଧକବିତା', ଚନ୍ଦ୍ର, 'କୃଷି ବିଜ୍ଞାନ', ଭ୍ରମଣବୃତ୍ତାନ୍ତ ପ୍ରାକୃତିକ ସ୍ୱର୍ଗୀୟ ଘଟଣାବଳୀ' ପ୍ରଭୃତି ଗ୍ରନ୍ଥମାନ ରଚନା କରି 'ରାଜକବି' ରୂପେ ବିଦିତ ହେଲେ ।

ପିତା ସାର୍ ବାସୁଦେବ ସୁଢ଼ଳଦେବ ଯେଉଁସବୁ ଅକ୍ଷୟକୀର୍ତ୍ତି ସ୍ଥାପନ କରି-ଯାଇଥିଲେ ତାର ପରିମାର୍ଜନ ଓ ପରିବର୍ଦ୍ଧନ କରି ଉପଯୁକ୍ତ ପୁତ୍ରର ଆଦର୍ଶ ରକ୍ଷା କଲେ, ପୂର୍ବକ ପିତୃସମ୍ମାନ ବୃଦ୍ଧି କଲେ । ତାଙ୍କ ରାଜତ୍ୱ କାଳରେ ବ୍ୟାସକବି ଫକୀରମୋହନଙ୍କୁ 'ସରସ୍ୱତୀ' ଉପାଧି ଓ କାବ୍ୟକାର ଲୋଚନ ପ୍ରସାଦ ପାଣ୍ଡେୟଙ୍କୁ 'କାବ୍ୟ-ବିନୋଦ' ଉପାଧି ପ୍ରଦାନ ବିଶିଷ୍ଟ ଘଟଣା । 'Hitrishin iElectric Machine Press' ଲିହୋର କଲେଜ ଅନୁରୂପ 'ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ଗୃହ ନିର୍ମାଣ, ଟାଉନ୍ ହାଇନ୍ ବ୍ୟବସ୍ଥା, 'ବିଦ୍ୟୁତ୍ ସରବରାହ, 'ମ୍ୟୁନିସିପାଲିଟି' ଆଦି ତାଙ୍କର ଅମଳିନ କୀର୍ତ୍ତି ।

ପିତା ରାଜା ସାର୍ ବାସୁଦେବଙ୍କ ଆଶୀର୍ବାଦ ଫଳରେ ରାଜବଂଶର କେତେକ ପୁତ୍ର କବି ରୂପେ ଆତ୍ମପ୍ରତିଷ୍ଠା ଲାଭ କରି ପିତାଙ୍କର ସମ୍ମାନ ତଥା ଯଶ ପ୍ରତିଷ୍ଠାର ଅଭିବୃଦ୍ଧି ସାଧନ କଲେ । ରାଜକବି ଟୀକାସ୍ୱତ ସଚ୍ଚିଦାନନ୍ଦଙ୍କ ସଦ୍ଗୁଣ ବଡ଼କୁମାର ବଳଭଦ୍ର ଦେବ ଜଣେ ଉଚ୍ଚକୋଟୀର କବି ରୂପେ ପରିଚିତ ହୋଇ ସମ୍ମାନ ଲାଭ କଲେ । ସେ ପରେ ୧୯୨୦ ମସିହା ଆଡ଼କୁ 'Court of Words'ଙ୍କ ରାଜ୍ୟ ଶାସନ କାଳରେ State—Asst-Superintendents ରୂପେ ପ୍ରଶାସନିକ କାର୍ଯ୍ୟ ସମ୍ପାଦନ କଲେ ।

ତାଙ୍କର ବିରଚିତ 'ଶିବରାତ୍ରି' (୧୯୦୯), 'ସୁନାମୁଣ୍ଡା' (୧୯୧୫), ପାର୍ବତୀଉଦ୍ଧାର୍କ, ରଘୁବଂଶ (ଅନୁବାଦ), କାଦମ୍ବରୀ (ଅନୁବାଦ) ଚମ୍ପାରାକା (୧୯୩୬) ବାଲ୍ୟସ୍ମୃତି, କବିତାଗୁଚ୍ଛ ତାଙ୍କର କବିତ୍ୱର ପରିକାଷ୍ଠ ପ୍ରଦର୍ଶନ କରନ୍ତ ।

ଏତଦ୍‌ବ୍ୟତୀତ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଅନ୍ୟ ଏକ ପୁତ୍ର ରାଜୀବଲୋଚନ ଦେବଙ୍କ 'ପାରିଜାତ' ନାମକ କବିତା ପୁସ୍ତକ ଓ ଅନ୍ୟ ଏକ ପୁତ୍ର ଲଲ୍ ଲଳିତ ମୋହନ ଦେବଙ୍କ 'ଲଳିତଲହରୀ କଳାପ' ନାମକ ଏକ କବିତା ପୁସ୍ତକ ସେମାନଙ୍କ କବିତ୍ୱର ପରିଚାୟକ । ସାର୍ ବାସୁଦେବଙ୍କ ବଂଶୀୟ ଭ୍ରାତା

ଜଳନ୍ଧରଦେବ ଶୈଶବାବସ୍ଥାରେ ମାତୃହୀନ ହେତୁ ତାଙ୍କ ମାତାଙ୍କ ଦ୍ୱାରା ଲାଳିତ ପାଳିତ ହୋଇ ଟୀକାୟତ ସଚ୍ଚିଦାନନ୍ଦଙ୍କ ସହାୟାସ୍ଥୀ ରୂପେ ରାଜପରିବାର ପାଳିତ ହେଲେ । ସେ ପରେ ଜଣେ ବିଶିଷ୍ଟ ପ୍ରାବନ୍ଧିକ, ଗାଳ୍ପିକ, ସମ୍ପାଦକ ସୁଦକ୍ଷ ପ୍ରଶାସକ, ପଣ୍ଡିତ ତଥା କବି ରୂପେ ସାହିତ୍ୟ ଜଗତରେ ସ୍ୱନାମଧନ୍ୟ ହୋଇ-ପାରିଥିଲେ । ତାଙ୍କର ପୁତ୍ର ଶଶିଭୂଷଣ ଦେବ ଜଣେ ଦକ୍ଷ ପ୍ରଶାସକ ଓ ରାଜଯୋଗୀ ତଥା କବି ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ରାଜକବି ସଚ୍ଚିଦାନନ୍ଦଙ୍କ ନାତି ରାଜା ଭାନୁଗଙ୍ଗ ତ୍ରିଭୁବନଙ୍କ ସମୟରେ 'ସମ୍ବଲପୁର ହିତୈଷିଣୀ'ର ଅବସାନ (୧୯୨୩) ପରେ ତ୍ରୈମାସିକ ଉପହାର, ଶଙ୍ଖ (ମାସିକ) ପ୍ରଭୃତି ପତ୍ରିକା ଆତ୍ମପ୍ରକାଶ କରି ବାମଣ୍ଡାର ଗୌରବ ବୃଦ୍ଧି କଲେ । ଏତଦ୍‌ବ୍ୟତୀତ ବହୁ ସାହିତ୍ୟିକ, ପ୍ରାବନ୍ଧିକ, ରାଜକୀୟ ପ୍ରଶ୍ରୟ, ପୃଷ୍ଠପୋଷକତା ଲାଭ କରି ବାମଣ୍ଡାର ପୂର୍ବତନ ସାହିତ୍ୟିକ ଗୌରବ ତଥା ସାଂସ୍କୃତିକ ପରମ୍ପରାର ସମ୍ମାନ ବୃଦ୍ଧି କଲେ ବୋଲିବା ବାହୁଲ୍ୟ ମାତ୍ର । ତେଣୁ ପରେ 'ବାସୁଦେବ ଗ୍ରନ୍ଥାବଳୀ', 'ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ', 'ବଳଭଦ୍ର ଗ୍ରନ୍ଥାବଳୀ', 'ଜଳନ୍ଧର ରଚନାବଳୀ ଆତ୍ମପ୍ରକାଶ ବାମଣ୍ଡାର ସାହିତ୍ୟିକ ରାଜବଂଶର ଶ୍ରେଷ୍ଠ ନିଦର୍ଶନ-ଯାହାକି କାଳଜୟୀ ଅକ୍ଷୟକୀର୍ତ୍ତି ରୂପେ ସାହିତ୍ୟ ଜଗତରେ ଚିର ଦେଦୀପ୍ୟମାନ ହୋଇ ରହିବ । କହିବା ବାହୁଲ୍ୟ ଯେ ଏ ସବୁ ପୁଣ୍ୟାତ୍ମା ଯୋଗଜନ୍ମା ସାହିତ୍ୟସାଧକ ପଣ୍ଡିତ ରାଜା ସାର୍ ବାସୁଦେବ ସୁଢ଼ଳ-ଦେବଙ୍କର ପୁଣ୍ୟ ଲତିକା ପୁଷ୍ପର ଦିଗ ବିଦିଗ ଆମୋଦକାରୀ ସୌରଭ ।

ବାସୁଦେବ ଗ୍ରନ୍ଥାବଳୀ (୧୯୫୭) (ଠାକୁର ବୀରେନ୍ଦ୍ର ସିଂରେ ପ୍ରକାଶିତ କେତେକ ସାହିତ୍ୟିକଙ୍କ ଉକ୍ତିରୁ ରାଜା ସାର୍ ବାସୁଦେବଙ୍କର କେତେକ ଗୁଣାବଳୀର ସ୍ପଷ୍ଟ ସୂଚନା :—୧୯୫୭ ମସିହା ବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡ. ପ୍ରାଣକୃଷ୍ଣ ପରିଜା କହନ୍ତି—('ଭୂମିକା')

'ବହୁ କ୍ଳେଶ ସହ୍ୟ କରି ଭାରତର ନାନା ସ୍ଥାନ ଭ୍ରମଣ କରି ସବୁବେଳେ ନିଜ ରାଜ୍ୟର କିପରି ଉନ୍ନତି କରିବେ ସେହି ଚିନ୍ତା ତାଙ୍କ ମନରେ ପ୍ରଥମେ ସ୍ଥାନ ଅଧିକାର କରୁଥିଲା । ତାଙ୍କ କଥା ଭାବିଲେ ରୁଷିଆର ରାଜା ପିଟରଙ୍କ କଥା ମନେ ପଡ଼େ । ପିଟର ଯେପରି ପାଶ୍ଚାତ୍ୟ ଉନ୍ନତଶୀଳ ଦେଶମାନଙ୍କୁ ଯାଇ ନିଜେ ଯାହା ଶିଖିଥିଲେ ସେ ଜ୍ଞାନକୁ ନିଜ ରାଜ୍ୟର ଉନ୍ନତି ପାଇଁ ଖଟାଇଥିଲେ । ବାସୁଦେବ ସୁଢ଼ଳଦେବ ସେହିପରି ନାନା ସ୍ଥାନ ଭ୍ରମଣ କରି ଯାହା ଭଲ ଦେଖୁଥିଲେ, ତାହା କିପରି ତାଙ୍କ ରାଜ୍ୟର ଉନ୍ନତି କଲେ ବ୍ୟବହୃତ ହୋଇ ପାରିବ, ତାହାହିଁ ଭାବୁଥିଲେ । ସେଥିପାଇଁ ତାଙ୍କୁ ସମସ୍ତେ ଆଦର୍ଶ ଶାସକ ବୋଲି ମନେ କରୁଥିଲେ । ଏପରିକି ପଚିଶ ବର୍ଷରୁ ଅଧିକ କାଳ ଆଗରୁ ସେ ଆଦର୍ଶ ଶାସକ, ବିଦ୍ୟାର ପୃଷ୍ଠ-ପୋଷକ ଓ ମହତ୍ତ୍ୱମାନବ ବୋଲି ଓଡ଼ିଶାର ଖ୍ୟାତି ଲାଭ କରିଥିଲେ ।'

ଡଃ ମାୟାଧର ମାନସିଂ—(ନରେନ୍ଦ୍ରମ ସୂଢ଼ଳଦେବ)

"ପରିଶେଷରେ ଓଡ଼ିଆ ଜାତି ଯେ ସାହିତ୍ୟିକ ସୂଢ଼ଳଦେବଙ୍କ ନିକଟରେ ଚିରଋଣୀ ରହିବ ଏକଥା ଦର୍ଶାଇ ଏ ପ୍ରବନ୍ଧ ଶେଷ କରେ । ବୀରବାମା ଓ ଚନ୍ଦ୍ରୋପଳର କବି ହିସାବରେ ଓଡ଼ିଆ ସାହିତ୍ୟର ଇତିହାସରେ ସୂଢ଼ଳଦେବଙ୍କ ସ୍ଥାନ ସୁନିଶ୍ଚିତ × × ।

ଶେଷରେ ସେହି ପଣ୍ଡିତ, ସାହିତ୍ୟିକ, ବୈଜ୍ଞାନିକ, ଦୂରଦ୍ରଷ୍ଟା ଶାସକ ଓ ସଂସ୍କାରକ, ଅକୁତୋଭୟ ଦେଶପ୍ରେମୀ, ଗୁଣୀ ଜନାଗ୍ରହୀ, ଆଫଳୋଦୟକର୍ମୀ ରାଜଶ୍ରେଷ୍ଠ ଓ ପୁରୁଷ ଶ୍ରେଷ୍ଠ ସାର୍ ସୂଢ଼ଳଦେବଙ୍କ କୀର୍ତ୍ତି ପ୍ରତି ମୋ ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରିବାର ସୁଯୋଗ ପାଇ, ମୁଁ ବାମଣ୍ଡା ଦରବାର ପ୍ରତି ଧନ୍ୟବାଦ ଜଣାଉଛି ।"

ରେଭେନ୍ସା ମହାବିଦ୍ୟାଳୟର ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ମନ୍ତବ୍ୟ (ଆଶିଷ)—

"ଜାତିସ୍ମର ସାଧକ ଶେଖର ବାସୁଦେବଙ୍କର ନୈସର୍ଗିକ ପ୍ରତିଭା, ଅଦମ୍ୟ ଉଦ୍ୟମ ଓ ଜ୍ୱଳନ୍ତ ସାଧନାର ଯଥୋଚିତ ପରିଚୟ ଦେବା ଲାଗି ଏଇଭଳି ପଦେ ଅଧେ କହି ବସିବା ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭାର ଅପଲାପ ଭିନ୍ନ ଅନ୍ୟ କିଛି ହୋଇ ନ ପାରେ । ଜାତୀୟ ଜୀବନର ପ୍ରତ୍ୟେକ ଦିଗରେ ସେହି ମହାମନୀଷୀଙ୍କର ଆଶୀର୍ବାଦ ଆଜି ସମଗ୍ର ଜାତିର କଠୋର କର୍ମପଥରେ ପାଥେୟ ହେଉ, ଏହା ହିଁ ଅନ୍ତରର ଏକାନ୍ତ କାମନା ।"

ବରିଷ୍ଠ ପଣ୍ଡିତ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା (ରେଭେନ୍ସା କଲେଜ)ଙ୍କ 'ଅଭିମତ'—

କବିବର ରାଧାନାଥ ମହାଯାତ୍ରାରେ ତାଙ୍କୁ ସମ୍ବୋଧନ କରି କହିଛନ୍ତି;—

ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳ,
ଦେବଦୁର୍ଗ ଦେବ ! ଏବେ ତୀର୍ଥ ସାରସ୍ୱତ
ବୁଧ ହଂସ କେଳିସରଃ, ଅବିଦ୍ୟାଉତ୍ସରେ ।"

ବାସ୍ତବରେ ସୂଢ଼ଳଦେବ ଥିଲେ ବୁଧ ରୂପୀ ହଂସମାନଙ୍କର ଏକାନ୍ତ ଗୁଣଗ୍ରାହୀ ଓ ଏକନିଷ୍ଠ ପରିପାଳକ । ତାଙ୍କର ଚରିତ୍ରବତ୍ତା ଅନନ୍ୟ ସାଧାରଣ । କବି ପ୍ରତିଭାର ଉପାସକ ରୂପେ ତାଙ୍କର ଖ୍ୟାତି ଥିଲା ଉତ୍କଳ ବ୍ୟାପିନୀ × × ।

କବିତ୍ୱ ଓ ଆଲଙ୍କାରିକତାର ଅପୂର୍ବ ସମନ୍ୱୟରେ ସୂଢ଼ଳଦେବଙ୍କର ସାରସ୍ୱତ ସାଧନା ମୂର୍ତ୍ତିମନ୍ତ ହୋଇଥିଲା । ସେ ବାମଣ୍ଡାରେ ଜନ୍ମ ଲାଭ କରିଥିଲେ ହେଁ

ତାଙ୍କ ଉପରେ ସାର ଉତ୍କଳର ଦାବୀ; ସେ ରାଜା ଓ ବିଦ୍ୟା ବିଳାସୀ ଥିଲେ ହେଁ କବିତ୍ୱ, କବିପୋଷକତାର ଥିଲେ ଅଦମ୍ୟ ନିର୍ଝର ।"

ଉପରୋକ୍ତ ମନ୍ତବ୍ୟ ତଥା ଉକ୍ତି ସମୂହରୁ ଆଜି ମଧ୍ୟ ସାର୍ ବାସୁଦେବଙ୍କ ମରଣୋତ୍ତର ସମ୍ମାନ, ଯଶଶ୍ରୀର ସୌରଭ ବିଶ୍ୱବ୍ୟାପୀ ହୋଇ ଦିଗବିଦିଗ ଆମୋଦିତ କରୁଛି ଓ କରୁଥିବ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ-ସାହିତ୍ୟ ଜୀବିତ ଥିବ-ଏଥିରେ ତିଳେମାତ୍ର ସନ୍ଦେହ ନାହିଁ—

ତେଣୁ ଶେଷରେ କବିଙ୍କ ଭାଷାରେ ପଦେ କଥା,

"ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ,
ମାତ୍ର ଯଶୋ ଦେହେ ତୁମ୍ଭେ ଆୟୁଷ୍ମାନ୍ ।"

## ଉପସଂହାର

### ରାଜା ସାର୍ ବାସୁଦେବ ସୁଢ଼ଳଦେବ
### 'ଏକ ଅନନ୍ୟ ସାଧାରଣ ପ୍ରତିଭା'

ଏକାଧାରରେ ସାର୍ ବାସୁଦେବ ସୁଢ଼ଳ ଦେବ ସମଗ୍ର ଓଡ଼ିଶା ତଥା ଭାରତରେ ଜଣେ ସୁଦକ୍ଷ ପ୍ରଶାସକ, ଦୂରଦର୍ଶୀ ଚିନ୍ତାଶୀଳ ବିଚାରକ, ମନସ୍ୱୀ ନରପତି, ଉଚ୍ଚକୋଟୀର ସାହିତ୍ୟିକ, ଭକ୍ତିପ୍ରାଣ କବି, ପ୍ରକୃତି ପ୍ରେମିକ, ରସଜ୍ଞ ପଣ୍ଡିତ, ଉନ୍ନତିକାମୀ ପ୍ରଜାବତ୍ସଳ ରାଜା, ଶୁଭହିତେଚ୍ଛୁ, ବିଜ୍ଞାନପ୍ରେମୀ, ବୈଷ୍ଣବ ଭକ୍ତ, ଶିକ୍ଷା ସଂସ୍କାର ପ୍ରୟାସୀ, ସମାଜ ସଂସ୍କାରକ, ନାରୀଜାତି ସ୍ୱାଭିମାନ ରକ୍ଷକ, ହିନ୍ଦୁଧର୍ମର ପ୍ରଧାନ ପୃଷ୍ଠପୋଷକ, ସର୍ବଧର୍ମପ୍ରିୟ, କର୍ମତତ୍ପର ଦୃଢ଼ପ୍ରତିଜ୍ଞ, ପ୍ରତ୍ୟକ୍ଷ ପରୋପକାରୀ ବ୍ୟକ୍ତି ତଥା ଏକ ଜୀବନ୍ତ ଅନୁଷ୍ଠାନ ।

ତାଙ୍କର ସ୍ୱଳ୍ପ ତେପନ ବର୍ଷ ମାତ୍ର (୧୮୫୦-୧୯୦୩) ଜୀବନ କାଳ ମଧ୍ୟରେ ବିଶେଷତଃ ଊନବିଂଶ ଶତାବ୍ଦୀର ଶେଷ ଦଶକ ବାମଣ୍ଡା, ଓଡ଼ିଶା, ତଥା ଭାରତ ପକ୍ଷରେ ଏକ ଗୌରବୋଜ୍ଜ୍ୱଳ ସମୟ (୧୮୯୦-୧୯୦୦) । ଉକ୍ତ କାଳରେ ବାମଣ୍ଡା ରାଜନୈତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ, ବୈଜ୍ଞାନିକ ସମସ୍ତ କ୍ଷେତ୍ରରେ ଅଗ୍ରାଧିକାର ଲାଭ କରିଥିଲା । ଏଥିରେ ପ୍ରଥମେ ଡାକ ବ୍ୟବସ୍ଥା, ପ୍ରଥମେ ଟେଲିଫୋନ ବ୍ୟବସ୍ଥା, ପ୍ରଥମେ ମଟର ଗାଡ଼ିର ବ୍ୟବହାର, ପ୍ରଥମେ ମାନମନ୍ଦିର ଓ ବିଜ୍ଞାନାଗାର ପ୍ରତିଷ୍ଠା (Observatory), ପ୍ରଥମେ କରତକଳ ପ୍ରତିଷ୍ଠା (Saw Mill), ପ୍ରଥମେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ପ୍ରଥମେ ସାପ୍ତାହିକ ଓ ମାସିକ ପତ୍ରିକାର ପ୍ରଚଳନ, ବହୁ ଦୁଷ୍ପ୍ରାପ୍ୟ ପୁସ୍ତକର ମୁଦ୍ରଣ ଓ

ପ୍ରକାଶନ, ପ୍ରଥମେ ପାଣିକଲ ବ୍ୟବସ୍ଥା, ପ୍ରଥମେ କାଉନ୍‌ସିଲ୍ (ପରିଷଦ) ବ୍ୟବସ୍ଥା, ପ୍ରଥମେ ସର୍ବୋଚ୍ଚ ସମ୍ମାନ ଲାଭ, ପ୍ରଥମେ ଉଚ୍ଚଶିକ୍ଷା ବ୍ୟବସ୍ଥା, ପ୍ରଥମେ ପଣ୍ଡିତସଭା ଓ ସମ୍ବର୍ଦ୍ଧନା ବ୍ୟବସ୍ଥା ଆତ୍ମପ୍ରକାଶ କରି ସମଗ୍ର ଓଡ଼ିଶାରେ ଅନ୍ୟାନ୍ୟ ରାଜ୍ୟମାନଙ୍କ ତୁଳନାରେ ଏକ ଉଚ୍ଚକୋଟୀର ସାଂସ୍କୃତିକ ତଥା ସାମାଜିକ ବାତାବରଣ ସୃଷ୍ଟି କରିଥିଲା । ଯାହାକି ଅନନ୍ୟ ସାଧାରଣ ।

ସାର୍ ବାସୁଦେବ ସୁଢ଼ଳ ଦେବ ପ୍ରଥମ ପ୍ରଶାସକ ଯେ କି ବ୍ରିଟିଶ ସରକାରଙ୍କଠାରୁ ସର୍ବୋଚ୍ଚ ସମ୍ମାନ (K. C. I. E.) ଉପାଧି ଲାଭ କରି ବାମଣ୍ଡା ତଥା ଓଡ଼ିଶାର ଗୌରବ ସମଗ୍ର ଭାରତରେ ବହୁଗୁଣିତ କରିପାରିଥିଲେ, ତାଙ୍କର ବହୁଦୂର ପ୍ରସାରୀ ଅସାଧାରଣ ବ୍ୟକ୍ତିତ୍ୱ ତଥା ମହାନସ୍ଥ ପ୍ରଶାସନିକ ଦକ୍ଷତା ବଳରେ । ପ୍ରଥମେ ବମ୍ବେ, ମାନ୍ଦ୍ରାଜ, ଦିଲ୍ଲୀ ଓ କଲିକତା ଯାତ୍ରା କରି ନୂତନ ଅନୁଷ୍ଠାନମାନ ପରିଦର୍ଶନ, ନୂତନ ତଥ୍ୟ ଆହରଣ ଓ ତଦନୁଯାୟୀ ରାଜଧାନୀ ଦେବଗଡ଼ର ପରିବେଶ ଗଠନ ଏକ ଆଦର୍ଶ ପରିକଳ୍ପନା—ତାଙ୍କର ଦେଶ ପରିଭ୍ରମଣର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ତେଣୁ ଜୀବନ କାଳ ମଧ୍ୟରେ ସମଗ୍ର ଭାରତ ପରିଭ୍ରମଣ କରି ରାମାୟଣ, ମହାଭାରତ, ପୁରାଣ ଇତ୍ୟାଦିରେ ବର୍ଣ୍ଣିତ ବିଶିଷ୍ଟ ଦର୍ଶନୀୟ ସ୍ଥାନ ମାନ ପର୍ଯ୍ୟଟନ ଓ ପୁଣ୍ୟକ୍ଷେତ୍ର କାଶୀ, ଗୟା, ବୃନ୍ଦାବନ, ପୁରୀ, ସିମାଚଳ ପ୍ରଭୃତି ସ୍ଥାନରେ ଧର୍ମ ସଂସ୍କାର ବିଧାନ ଓ ପୁଣ୍ୟ ଅର୍ଜନ ଜୀବନର ଶ୍ରେଷ୍ଠ ଅଭିପ୍ରାୟ ତଥା ଅଭିବ୍ୟକ୍ତି ।

ସାର୍ ବାସୁଦେବ ସୁଢ଼ଳ ଦେବ Feudatory Chief ହେତୁ (ସାମନ୍ତ ରାଜା) ପ୍ରଭୃତି କ୍ଷମତାଶାଳୀ ଥିଲେ ମଧ୍ୟ କେବେହେଁ କ୍ଷମତାର ଅପବ୍ୟବହାର କରି ନାହାଁନ୍ତି । କାରଣ ସେ ବଡ଼ ନ୍ୟାୟବନ୍ତ ଓ ଧର୍ମପରାୟଣ ଥିଲେ । ତେଣୁ ତାଙ୍କର ଚିନ୍ତାଧାରା ସର୍ବଦା ବିବେକାନୁମୋଦିତ ହେତୁ କର୍ମଧାରା ଉଚିତ୍ ମାର୍ଗରେ ପରିଚାଳିତ ହେଉଥିଲା ।

ସେ କେବେହେଁ ଆତ୍ମପ୍ରଶଂସାପ୍ରିୟ ନ ଥିଲେ । ମାତ୍ର ଅପ୍ରତ୍ୟାଶିତ ଭାବେ ବିପୁଳ ଯଶ, ପ୍ରଶଂସା ତଥା ଗୌରବ ସ୍ୱତଃ ତାଙ୍କର କର୍ମପଥକୁ ଅନୁସରଣ କରି ଆସୁଥିଲା ଏହାହିଁ ତାଙ୍କର ଅସାଧାରଣ ପ୍ରତିଭାର ବୈଶିଷ୍ଟ୍ୟ ।

କହିବା ବାହୁଲ୍ୟ ଯେ ସେ ଏକାଧାରରେ ବିଦ୍ୱାନ୍ ଓ ଧନବାନ ଅର୍ଥାତ୍ ବାଗ୍‌ଦେବୀ ସରସ୍ୱତୀ ଓ ଧନଦେବୀ ଲକ୍ଷ୍ମୀ ଉଭୟେ ତାଙ୍କ ପ୍ରତି ପ୍ରସନ୍ନ ଥିଲେ ।

ତେଣୁ ରାଜତ୍ୱର ସ୍ୱଳ୍ପକାଳ ମଧ୍ୟରେ ରାଜ୍ୟରୁ ଅର୍ଥାଭାବ ଓ ବିଦ୍ୟାଭାବ ଦୂର କରିପାରିଥିଲେ । ଶିକ୍ଷାର ପ୍ରସାର ଦିଗରେ ବିଭିନ୍ନ ପଦକ୍ଷେପ ଗ୍ରହଣ କରି ରାଜ୍ୟରୁ ଅଶିକ୍ଷା ଅନ୍ଧକାରକୁ ବିଦୂରିତ କରିପାରିଥିଲେ । ରାଜକନ୍ୟାମାନଙ୍କୁ ବିବାହ ପରେ

ପିନ୍ଧାଳସ୍ଥ ଗମନ ଅଧିକାର ପ୍ରଦାନ ପୂର୍ବକ ନାଗ୍ରିକାଦରର ଅଶେଷ ହିତ ସାଧନ କଲେ । ମୁଖ୍ୟତଃ ବାଲ୍ୟବିବାହ କୁସଂସ୍କାର ଦୂର କରି ନାରୀଙ୍କୁ ଅକାଳ ବୈଧବ୍ୟରୁ ଉଦ୍ଧାର କଲେ । ନିଶା ସେବନ ନିଷେଧ କରି ରାଜ୍ୟରେ ଏକ ଅଲୌକିକ ତଥା ଅଭୂତପୂର୍ବ ସଂସ୍କାର ସାଧନ କରି ପ୍ରଶଂସାଭାଜନ ହୋଇପାରିଥିଲେ ।

ସର୍ବୋପରି ସାର୍ ବାସୁଦେବ ଅତ୍ୟନ୍ତ ସ୍ନେହୀ, ଉଦାରମନା ବ୍ୟକ୍ତି ହେତୁ ସମସ୍ତଙ୍କ ସଙ୍ଗେ ମିଶି ପାରୁଥିଲେ । ଏହା ପ୍ରଶାସକ ପକ୍ଷେ ଅସୁବିଧାଜନକ ହେଲେହେଁ, ତାଙ୍କ ପକ୍ଷରେ ସମ୍ଭବପର ହୋଇପାରିଥିଲା । ତେଣୁ ସମସ୍ତଙ୍କ ସଙ୍ଗେ ସମଭାବ ପ୍ରକଟନ, ଶିଳ୍ପୀ ସଙ୍ଗେ ଶିଳ୍ପୀ, କୃଷକ ସଙ୍ଗେ କୃଷକ, ଶିକ୍ଷକ ସଙ୍ଗେ ଶିକ୍ଷକ, ଶିକ୍ଷିତ ସଙ୍ଗେ ଶିକ୍ଷିତ, ବ୍ୟବସାୟୀ ସଙ୍ଗେ ବ୍ୟବସାୟୀ, ପ୍ରଶାସକ ସଙ୍ଗେ ପ୍ରଶାସକ, ରାଜା ସଙ୍ଗେ ରାଜାର ବ୍ୟବହାର ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱର ଶ୍ରେଷ୍ଠ ପରାକାଷ୍ଠା ।

ମୁଖ୍ୟତଃ ପ୍ରାଚୀନ ସଂସ୍କୃତ ସାହିତ୍ୟ ଓ ଆଧୁନିକ ଓଡ଼ିଆ ସାହିତ୍ୟର ସମନ୍ୱୟ ସମ୍ପାଦନ ପୂର୍ବକ ଅଳଙ୍କାର ଶାସ୍ତ୍ର ଓ କାବ୍ୟାଦି ରଚନା ତାଙ୍କର ରଚନା-ଶୈଳୀର ପ୍ରଧାନ ବୈଶିଷ୍ଟ୍ୟ ।

ତାଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ ସନ୍ଦର୍ଶନ ସ୍ପୃହା ଅତୀବ ପ୍ରବଳ ଥିଲା । ଅଗାଧ ପାଣ୍ଡିତ୍ୟ ଓ ଅସାଧାରଣ ବ୍ୟୁତ୍ପତ୍ତି ସମଗ୍ର ସୁଧୀ ସମାଜକୁ ବିମୋହିତ କରିଥିଲା । ଶିକ୍ଷାନୁଷ୍ଠାନ, ଗରିବ ମେଧାବୀ ଛାତ୍ରଙ୍କ ଶିକ୍ଷା ନିମନ୍ତେ ପ୍ରୋତ୍ସାହନ ନିମିତ୍ତ ସାହାଯ୍ୟ ପ୍ରଦାନ, କୃତୀ ଛାତ୍ରଙ୍କୁ ପୁରସ୍କାର ଓ ମାନପତ୍ର ପ୍ରଦାନରେ ଗଭୀର ଆନନ୍ଦ ନିହିତ ଥିଲା ତାଙ୍କର ମହାନୁଭବ ହୃଦୟରେ । ମୁଖ୍ୟତଃ ସେ ସମସ୍ତ ବିଭାଗର ତତ୍ତ୍ୱ ନିଜେ ହିଁ ନେଉଥିଲେ ଏହା ହିଁ ତାଙ୍କ ପ୍ରଶାସକ ଜୀବନର ପ୍ରଧାନ ଆଦର୍ଶ । ସେ କୌଣସି ବିଷୟରେ କେବେହେଁ ପରମୁଖାପେକ୍ଷୀ ହେଉ ନ ଥିଲେ । ସର୍ବଦା ସେ ସ୍ୱାବଲମ୍ବନଶୀଳ ଥିଲେ । ପ୍ରାଚୀନ ସଂସ୍କୃତର ଉପାସକ ଥାଇ ବାହ୍ୟ ଆଗ୍ରହ, ଦେଶାନ୍ତର ମତରେ ପାଶ୍ଚାତ୍ୟ ଢଙ୍ଗରେ ରଖି ପ୍ରଶାସକଙ୍କ ସହିତ ସମତାଳରେ ଗତି କରିପାରିଥିଲେ ।

ସେ ସମୟରେ ଆତ୍ମନିର୍ଭରଶୀଳ ଭାବେ ବନ୍ଦୀନାଗାର, ଡାକ ବିଭାଗ, ଟେଲିଫୋନ, ଇଂଲଣ୍ଡରୁ କରତକଳ ଓ ସମ୍ବାଦ ପରିବହନ ଆଦିର ବ୍ୟବସ୍ଥା ତାଙ୍କର ଦୂରଦୃଷ୍ଟି ତଥା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିଚାୟକ ।

ଉପରୋକ୍ତ ତଥ୍ୟାବଳୀ ପର୍ଯ୍ୟାଲୋଚନା କଲେ, ଜଣାଯାଏ ଯେ ରାଜା ସାର୍ ବାସୁଦେବ ସୁଢ଼ଳ ଦେବ K. C. I. E. ଏକ ଅନନ୍ୟ ସାଧାରଣ ପ୍ରତିଭା— ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ତେଣୁ ତାଙ୍କର ଦୀକ୍ଷାଗୁରୁ ବକୁଳ କବି ଭୁବନେଶ୍ୱର ବଡ଼ପଣ୍ଡାଙ୍କ "ବାମଣ୍ଡା ରାଜବଂଶାନୁଚରିତ ଚମ୍ପୂ"ରେ ଗୁଣଗାନ କଲେ,

"ତଦ୍ ବଂଶ ପ୍ରବଭୂବ ସର୍ବ ଜନତା ସମ୍ମାନ ନା ସମ୍ପଦା
ଶ୍ରେୟାନ୍ ସୂରିଜନପ୍ରିୟୋ ବହୁବିଧେ ଶାସ୍ତ୍ରେ ରୁ ଦକ୍ଷଃସୁଧୀ
ଶାସ୍ତ୍ରେ ଭାରବତେ କୃତ ଶ୍ରମତୟା ପ୍ରାପ୍ତ ପ୍ରବୋଧୋଦୟଃ
ସୌମ୍ୟ ଶ୍ରୀ ସୁଢ଼ଳାଦଦେବ ପଦଯୁକ୍ ଶ୍ରୀ ବାସୁଦେବ ନୃପଃ ।"

ପଣ୍ଡିତ ସଭାର ଜନୈକ ପଣ୍ଡିତ ଦାମୋଦର ମିଶ୍ର ପଦ୍ମାଳଙ୍କାରଙ୍କ ଭାଷାରେ,

"ଦେଖିଲି ବାମଣ୍ଡା ରାଜଧାନୀ ଶୋଭା,
ଯା ଛବି ଦର୍ଶନେ ଜନମନ ଲୋଭା
ପୂତଗଙ୍ଗ ବଂଶ ନିଷ୍କଳଙ୍କ ରବି
ବାମଣ୍ଡେଶ ବାସୁଦେବ ଭକ୍ତକବି ।"

ବ୍ୟାସକବି ଫକୀର ମୋହନଙ୍କ ଜୀବନ୍ତ ବର୍ଣ୍ଣନା ତାଙ୍କର 'ପ୍ରତିଭା'ର ଆଭାସ ପ୍ରଦାନ କରେ,

"ହେ ସୁଢ଼ଳ ମହାରାଜ କରେ ନମସ୍କାର,
ହିତୈଷିଣୀ ତୁମ୍ଭ ଯଶ କରୁଛି ପ୍ରଚାର

× × ×

ହେ ରାଜନ ମାତୃଭାଷା ଉନ୍ନତିକରଣେ
ଉତ୍ସାହିତ କରୁଅଛ ଗ୍ରନ୍ଥକର୍ତ୍ତାଗଣେ

× × ×

କବିତ୍ୱ ସାହିତ୍ୟଚର୍ଚ୍ଚା ଶିଳ୍ପାଦି ସହିତ,
ଉତ୍କଳର ଉଜ୍ଜ୍ୱଳିମା ବାମଣ୍ଡା ବିଦିତ
ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ ।"

ଅଶାସ୍ତ୍ରୀ ପ୍ରାଣରେ କବିବର ରାଧାନାଥ ଗାଇଉଠିଥିଲେ,

"ଉଦିଲେ ପ୍ରଥମେ ବାମଣ୍ଡା ରାଜନ
ବାସୁଦେବ ବିଶ୍ୱ କଲ୍ୟାଣ ଭାଜନ ।"

କବିବର ରାଧାନାଥ ରାୟଙ୍କ ଭାଷାରେ,

"ରାଜା ସୁଢ଼ଳ ଦେବ ନିଜ ଅସାମାନ୍ୟ ପ୍ରତିଭାର ଅନୁରୂପ କ୍ଷେତ୍ର ଏବଂ ମନର ଅନୁରୂପ ଧନ ପାଇ ନାହାନ୍ତି । ଉପଯୁକ୍ତ କ୍ଷେତ୍ର ପାଇଥିଲେ ତାହାଙ୍କର ପ୍ରତିଭା ଜଗଦ୍‌ବ୍ୟାପିନୀ ହୋଇଥାନ୍ତା—ସନ୍ଦେହ ନାହିଁ ।"

ଶେଷରେ ଅସାଧାରଣ ପ୍ରତିଭାବାନ୍ ରାଜା ସାର୍ ବାସୁଦେବ K. C. I. E. ଅଶେଷ ଗୁଣାବଳୀର ନିଦର୍ଶନ ସ୍ୱରୂପ "ଓଡ଼ିଶା ସାହିତ୍ୟ ଏକାଡ଼େମୀ" ଦ୍ୱାରା ବାମଣ୍ଡାର ଦେବଗଡ଼ଠାରେ ତା ୫-୨-୧୮୭୮ରେ ଅନୁଷ୍ଠିତ 'ବାର୍ଷିକୋତ୍ସବ' ଉପଲକ୍ଷେ ସମ୍ପାଦିତ 'କବିତା ପାଠୋତ୍ସବ'ରେ କବି ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ବ୍ରହ୍ମାଙ୍କ ଦ୍ୱାରା ପଠିତ ରାଜା ସାର୍ ବାସୁଦେବଙ୍କ ଉପରେ ଆଧାରିତ "ଓଡ଼ିଶା-ବିକ୍ରମାଦିତ୍ୟ" ଶୀର୍ଷକ କବିତାରୁ କେତେକ ପଂକ୍ତି ଉଦ୍ଧାର କରି, (କବିଙ୍କ 'ସ୍ମାରକୀ' (୧ମ ଭାଗ) ୧୯୮୭ରେ 'ପ୍ରଣତି' ଶିରୋନାମରେ ପ୍ରକାଶିତ), ଉକ୍ତ ରଚନାର ଉପସଂହାର ହେଲା

ହେ ରାଜର୍ଷି ବାସୁଦେବ : ସାହିତ୍ୟ ରସିକ
ରଚିଛି ତେଜେ ବିଚିତ୍ରିତ ଶୁଭ ଶୃଙ୍ଖଳିକ ।

× × ×

ହେ ବରେଣ୍ୟ କବି ତୁମ ଅନୁପମ କୃତି
'ମାତୃ ଶବଶ୍ୱ', ଅନଙ୍ଗ 'ଛନ୍ଦୋମୃଳା' ପ୍ରୀତି

× × ×

ହେ ପଣ୍ଡିତ କବି ତୁମ ସାହିତ୍ୟ ସାଧନା
ଦେଲା ନବ ଜାଗରଣ ନବ ଉଦ୍ଦୀପନା ।

× × ×

ଗାଇଗଲେ କବିଗଣ ଅମର ଅକ୍ଷରେ
'ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ'

× × ×

ବୁଧ ହଂସ କେଳିସର ଦେବଦୁର୍ଗ ଧାମେ
ବିଚରିଲ ସନ୍ତରିତ ଭାରତ ଭବନେ ।

× × ×

ନିସର୍ଗ ନୃପତି ! ତୁମ ଶୋଭା ଅଭିରୁଚି
ଏ ଦେଶର ବନ ଉପବନେ ଅଛି ବଞ୍ଚି

ବାମଣ୍ଡାର ପ୍ରତି ଧୂଳି କଣା କହେ କଥା
ଢଏ କି ବା ରୂମ ଚର ସ୍ୱର୍ଗୀୟ ବାରତା ।

× × ×

ସେ ସ୍ୱର୍ଗୀୟ ଧାମୁଁ ବାରେ କର ଦୃଷ୍ଟିପାତ
ଫେର ଆସୁ ବାମଣ୍ଡାର ପୂରୁବ ସୁକୃତ
ସାହିତ୍ୟ ସାଧନ ପଥେ ବାରେ କର ଗତି
ନବ ପୁତ୍ରଗଣ ପାନ୍ତୁ ଉତ୍ସାହ ଶକତି ।

× × ×

ଆଜି ଏ ପୁଣ୍ୟ ବାସରେ ଜଣାଏଁ ପ୍ରଣତି
ଦଅ ଶୁଭାଶିଷ ଫେଡ଼ି ସାହିତ୍ୟ ଦୁର୍ଗତି ॥



# ପରିଶିଷ୍ଟ :—

## "ସାର୍ ବାସୁଦେବ ସୁଢ଼ଳ ଦେବ"

### (ମନୋଗ୍ରାଫ୍)

### ସହାୟକ ଗ୍ରନ୍ଥ-ସୂଚୀ


୧ । Administration Report—(1891-1903)
୨ । ସମ୍ବଲପୁର ହିତୈଷିଣୀ– (୧୮୮୯-୧୯୦୩)
୩ । ସାର ବାସୁଦେବେର ଜୀବନୀ (ବଙ୍ଗଳା)
୪ । ବାସୁଦେବ ଗ୍ରନ୍ଥାବଳୀ
୫ । ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ
୬ । ବଳଭଦ୍ର ଗ୍ରନ୍ଥାବଳୀ
୭ । ଆଧୁନିକ ଓଡ଼ିଆ ସାହିତ୍ୟକୁ ବାମଣ୍ଡାର ଦାନ
୮ । ସାହିତ୍ୟ ଦର୍ପଣ
୯ । କୁବଳୟାନନ୍ଦଂ
୧୦ । କାବ୍ୟ ପ୍ରକାଶ
୧୧ । ବିବାହ ବିଗ୍ରହ
୧୨ । ଅଲଙ୍କାର ତତ୍ତ୍ୱ
୧୩ । ବ୍ରହ୍ମ ପୁରାଣ
୧୪ । ନୀଳାଦ୍ରି ମହୋଦୟ
୧୫ । ଭାରତ ଇତିହାସ
୧୬ । ମଧୁସୂଦନ ଗ୍ରନ୍ଥାବଳୀ
୧୭ । ରାଧାନାଥ ଗ୍ରନ୍ଥାବଳୀ
୧୮ । ଫକୀର ମୋହନ ଗ୍ରନ୍ଥାବଳୀ
୧୯ । ଗଙ୍ଗାଧର ଗ୍ରନ୍ଥାବଳୀ
୨୦ । ଉତ୍କଳ ମଧୁପ
୨୧ । ଶ୍ରୀମଦ୍ ଭଗବଦ୍ ଗୀତା
୨୨ । ଉତ୍କଳ ସାହିତ୍ୟ (୧୮୯୭-୧୯୦୩)
୨୩ । ବାମଣ୍ଡା ରାଜବଂଶାନୁ ଚରିତ ଚମ୍ପୂ
୨୪ । ଆବାହନ


